# ଆଉରଙ୍ଗଜେବ

ଅଧ୍ୟାପକ ବିଜୟ କୁମାର ମହାପାତ୍ର

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା
ଭୁବନେଶ୍ୱର

# ଆଉରଙ୍ଗଜେବ

ଲେଖକ

**ଅଧ୍ୟାପକ ବିଜୟ କୁମାର ମହାପାତ୍ର**

ରିଡର, ଇତିହାସ ବିଭାଗ,

ପ୍ରାଣନାଥ ମହାବିଦ୍ୟାଳୟ,

ଖୋର୍ଦ୍ଧା, ପୁରୀ

ପୁନର୍ମୁଦ୍ରଣ

୧୯୮୭



ପ୍ରକାଶକ :

**ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା,**

**ଭୁବନେଶ୍ୱର**

# AURANGZEB

Published by the Orissa State Bureau of Text Book Preparation and Production under the Centrally Sponsored Scheme of production of books and literature in Regional Languages at the University level of the Government of India in the Ministry of Education and Social Welfare (Department of Education), New Delhi.

*Written by :*

**Shri Bijoy Kumar Mohapatra**

Reader in History

**P. N. Mohavidyalaya**

Khurda, Puri

**FIRST EDITION—1974**

**REPRINTED—1987/1000**

*Published by* :

ORISSA STATE BUREAU OF TEXT BOOK PREPARATION AND PRODUCTION
BHUBANESWAR, ORISSA



Publication No. 101

Paper used for printing of this book was made available by the Govt. of Orissa at a concessional rate.

Printed at :
DASH PRINTERS
Cuttack-1

Price—Rs. 7·50

# ଦ୍ୱିତୀୟ ମୁଦ୍ରଣର ମୁଖବନ୍ଧ

ବିଶେଷ ଆନନ୍ଦର କଥା ଯେ, ଅଧ୍ୟାପକ ବିଜୟ କୁମାର ମହାପାତ୍ରଙ୍କ ଦ୍ୱାରା ପ୍ରଣୀତ ବା ଲିଖିତ ଆଉରଙ୍ଗଜେବ ପୁସ୍ତକଟିର ଆଦର ଦିନୁଦିନ ବଢ଼ି ଚାଲିଛି । ଏହି ଘଟଣା ଦ୍ୱାରା ବର୍ତ୍ତମାନ ପୁସ୍ତକଟିର ଦ୍ୱିତୀୟ ମୁଦ୍ରଣ ପ୍ରକାଶିତ ହେବାକୁ ଯାଉଛି ।

ଏଣୁ ଏହା ପାଠକପାଠିକା, ଛାତ୍ରଛାତ୍ରୀ, ଅଧ୍ୟାପକ ଓ ଅଧ୍ୟାପିକାମାନଙ୍କ ମହଲରେ ପୂର୍ବଭଳି ବିଶେଷ ଭାବରେ ଆଦୃତ ହେବ ବୋଲି ଆମର ଆଶା ।

ଭୁବନେଶ୍ୱର
ତା ୪ । ୩ । ୮୭ ଇଖ

ଗିରୀଶବାଳା ମହାନ୍ତି
ନିର୍ଦ୍ଦେଶିକା

# ପ୍ରସ୍ତାବନା

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଓଡ଼ିଆ ଭାଷାରେ ବିଶ୍ୱବିଦ୍ୟାଳୟ ସ୍ତରୀୟ ପାଠ୍ୟପୁସ୍ତକମାନ ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ସାଧାରଣ ପାଠକ-ପାଠିକାମାନଙ୍କ ନିମନ୍ତେ ମଧ୍ୟ କେତେକ ଉପାଦେୟ ଗ୍ରନ୍ଥର ପ୍ରସ୍ତୁତି ଦାୟିତ୍ୱ ଗ୍ରହଣ କରିଛନ୍ତି । ଆଉରଙ୍ଗଜେବଙ୍କ ସମ୍ପର୍କରେ ଏକ ସାଧାରଣ ଧାରଣା ଦେବା ନିମନ୍ତେ ଉକ୍ତ ପୁସ୍ତକଟି ରଚନା କରାଯାଇଅଛି । ପ୍ରାଣନାଥ ମହାବିଦ୍ୟାଳୟର ଇତିହାସ ଅଧ୍ୟାପକ ଶ୍ରୀ ବିଜୟ କୁମାର ମହାପାତ୍ର ଏହାର ଲେଖକ ଓ ଗଙ୍ଗାଧର ମେହେର କଲେଜର ଇତିହାସ ଅଧ୍ୟାପକ ଶ୍ରୀ ବିଷ୍ଣୁ ମୋହନ ଦାସ ଏହାର ସମୀକ୍ଷକ । ଏଣୁ ମୁଁ ସଂସ୍ଥା ପକ୍ଷରୁ ଉଭୟଙ୍କୁ ଧନ୍ୟବାଦ ଜ୍ଞାପନ କରୁଛି ।

'ଆଉରଙ୍ଗଜେବ' ପୁସ୍ତକଟି ଜିଜ୍ଞାସୁ ଗ୍ରନ୍ଥଗ୍ରାହୀ ତଥା ଶିକ୍ଷକ ସମାଜରେ ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଭୁବନେଶ୍ୱର
ତା ୫ । ୭ । ୮୪ ରିଃ

ଶ୍ରୀନିବାସ ସାହୁ
ନିର୍ଦ୍ଦେଶକ

# ଭୂମିକା

ମଧ୍ୟଯୁଗୀୟ ଭାରତରେ ମୋଗଲମାନେ ସାମ୍ରାଜ୍ୟ ପ୍ରତିଷ୍ଠା କରି ଭାରତ ଇତିହାସରେ ଗୌରବମୟ ସ୍ଥାନ ଅଧିକାର କରିଥିଲେ । ସେହି ମୋଗଲ ସମ୍ରାଟମାନଙ୍କ ମଧ୍ୟରେ ଆଉରଙ୍ଗଜେବ ଅନ୍ୟତମ । ଶାଜାହାନଙ୍କ ତୃତୀୟ ପୁତ୍ର ଆଉରଙ୍ଗଜେବ ଜଣେ ନିର୍ଭୀକ ଯୋଦ୍ଧା, ଜ୍ଞାନୀ ଓ ବିଚକ୍ଷଣ ଶାସକ ଥିଲେ । ସମ୍ରାଟ ଆକବର ଭାରତରେ ମୋଗଲ ସାମ୍ରାଜ୍ୟର ପ୍ରକୃତ ଭିତ୍ତିସ୍ଥାପନ କରିଥିଲେ ସତ; କିନ୍ତୁ ଆଉରଙ୍ଗଜେବ ସେହି ସାମ୍ରାଜ୍ୟକୁ ପୂର୍ଣ୍ଣାଙ୍ଗ ଅବସ୍ଥାକୁ ଆଣିଥିଲେ । ତାଙ୍କ ରାଜତ୍ୱର ପ୍ରାରମ୍ଭରୁ ସେ ଯେପରି ବିଭିନ୍ନ ସମସ୍ୟାର ମଧ୍ୟଦେଇ ଗତି କରିଥିଲେ, ଅନ୍ୟ କୌଣସି ମୋଗଲ ସମ୍ରାଟ ସେପରି ସମସ୍ୟାଗୁଡ଼ିକର ସମ୍ମୁଖୀନ ହୋଇ ନ ଥିଲେ । ସେ ଧୈର୍ଯ୍ୟ, ସାହସ ଓ ଦମ୍ଭର ସହିତ ମରହଟ୍ଟା, ଶିଖ, ଜାଠ୍; ବୁନ୍ଦେଲା, ସତ୍‌ନାମୀ ତଥା ରାଜପୁତ୍ରମାନଙ୍କର ବିଦ୍ରୋହର ସମ୍ମୁଖୀନ ହୋଇ ମୋଗଲ ସାମ୍ରାଜ୍ୟର ଅବୟବ ବୃଦ୍ଧି କରାଇଥିଲେ ।

ସାମ୍ରାଜ୍ୟର ଆୟତନ ବୃଦ୍ଧି କରିବା ସଙ୍ଗେ ସଙ୍ଗେ ନିଜର ଧର୍ମପ୍ରତି ସେ ନିଷ୍ଠା, ଆନ୍ତରିକତା ଓ ରକ୍ଷଣଶୀଳ ମନୋଭାବ ଦେଖାଉଥିଲେ । ଫଳତଃ ଅନେକେ ତାଙ୍କ ଧର୍ମନୀତିକୁ ନାପସନ୍ଦ କରୁଥିଲେ । ସେ ଜଣେ ଚରିତ୍ରବାନ, ମିତବ୍ୟୟୀ, ଧାର୍ମିକ ବ୍ୟକ୍ତି ଥିଲେ ଏବଂ ସରଳ ତଥା ନିରାଡ଼ମ୍ବର ଜୀବନଯାପନ କରୁଥିଲେ । ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ମୋଗଲ ରାଜବଂଶରେ ଉପଯୁକ୍ତ ଉତ୍ତରାଧିକାରୀ ନ ଥିବାରୁ କ୍ରମେ କ୍ରମେ ଏହି ସାମ୍ରାଜ୍ୟର ଅବସାନ ଘଟିବାକୁ ଆରମ୍ଭ କଲା ।

ଏହି ପୁସ୍ତକଟି ବି. ଏ. (ପାସ୍ ଓ ଅନର୍ସ) ଛାତ୍ରମାନଙ୍କର ସାଧାରଣ ସହାୟକ (General reference) ଗ୍ରନ୍ଥ ଭାବରେ ଲିଖିତ । ଓଡ଼ିଶାର ସମସ୍ତ ବିଶ୍ୱବିଦ୍ୟାଳୟର ଇତିହାସ ତଥା ଇତିହାସ ଅନୁରାଗୀ ଛାତ୍ରଛାତ୍ରୀମାନଙ୍କ ଦ୍ୱାରା ଏହି ପୁସ୍ତକଟି ଆଦୃତ ହେବ ବୋଲି ମୁଁ ଆଶାପୋଷଣ କରୁଅଛି । ଏହି ପୁସ୍ତକରେ ଯଦି କୌଣସି ପ୍ରକାର ତ୍ରୁଟି ପରିଲକ୍ଷିତ ହୁଏ, ତା'ହେଲେ ପରବର୍ତ୍ତୀ ସଂସ୍କରଣରେ ତାହା ସଂଶୋଧିତ କରାଯିବାର ପ୍ରୟାସ ରହିଛି ।

ପୁସ୍ତକଟି ଯଥା ସମୟରେ ଲେଖି ଶେଷକରି ପାରି ନ ଥିବାରୁ ମୁଁ ଦୁଃଖିତ । "ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା" ମୋତେ ଏହି ପୁସ୍ତକଟିକୁ ରଚନା କରିବାର ସୁଯୋଗ ଓ ସୁବିଧା ଦେଇ ଥିବାରୁ ମୁଁ ଉକ୍ତ ସଂସ୍ଥାଠାରେ ଚିର କୃତଜ୍ଞ । ପ୍ରାଣନାଥ ମହାବିଦ୍ୟାଳୟର ଓଡ଼ିଆ ସାହିତ୍ୟ ବିଭାଗର ଅଧ୍ୟାପକ ବନ୍ଧୁ ଶ୍ରୀ ସୁବୋଧକୁମାର ଚାଟର୍ଜି ପୁସ୍ତକଟିର ଲିପି ପ୍ରମାଦ ସଂଶୋଧନ କ୍ଷେତ୍ରରେ ମୋତେ ସାହାଯ୍ୟ କରିଥିବାରୁ ତାଙ୍କୁ ମଧ୍ୟ ଧନ୍ୟବାଦ ଜଣାଉଛି । ପରିଶେଷରେ ପୁସ୍ତକଟି ଛାତ୍ରସମାଜରେ ଆଦୃତ ହୋଇ ପାରିଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ମନେ କରିବି ।

ଖୋର୍ଦ୍ଧା
ତା ୧୪ । ୪ । ୭୪ ରିଖ

**ଲେଖକ**

## REFERENCE BOOKS


| | | |
|---|---|---|
| 1. | J. N. Sarkar— | History of Aurangzeb |
| 2. | J. N. Sarkar— | India of Aurangzeb |
| 3. | Iswari Prashad— | A short history of Muslim rule in India. |
| 4. | S. Lane-Poole— | Aurangzeb. |
| 5. | S. Lane-Poole— | Mediaeval India under Mohammedan rule. |
| 6 | Sri R. Sharma— | The religious policy of the Mughal emperors. |
| 7. | S. M. Edwards & H. L. O. Garrett— | Mughal rule in India. |
| 8. | Rai Chaudhury, Dutta & R. C. Majumdar— | Ancient India. |
| 9. | S. C. Sarkar & K. K. Dutta— | Modern Indian History |
| 10 | A. L. Srivastav— | The Mughal Empire. |
| 11. | C. A. Kincaid & Rai Bahadur D. B. Parasnis— | History of Marhatha People. |
| 12 | Brijkishore— | Tarabai & her times. |




# ସୂଚୀପତ୍ର

| ଅଧ୍ୟାୟ | ବିଷୟ | ପୃଷ୍ଠା |
|---|---|---|

# ପ୍ରଥମ ଅଧ୍ୟାୟ

## ଉପକ୍ରମଣିକା

ତୁର୍କୀ ଆଫଗାନ ଶାସକମାନଙ୍କ ମଧ୍ୟରେ ବଲବନ୍, ଆଲ୍ଲାଉଦ୍ଦୀନ ଖିଲଜୀ, ମହମ୍ମଦ ତୋଗଲକ ଏବଂ ଫିରୁଜ ତୋଗଲକ୍‌ଙ୍କ ଶାସନ ଉଲ୍ଲେଖଯୋଗ୍ୟ । ଏମାନଙ୍କ ଚେଷ୍ଟାରେ ଭାରତରେ ଏକ ବିଶାଳ ମୁସଲମାନ ରାଜ୍ୟ ସ୍ଥାପିତ ହୋଇଥିଲା । ବିଶେଷତଃ ସୁଲତାନ ମହମ୍ମଦ ତୋଗଲକ୍ ଉତ୍ତର ଓ ଦକ୍ଷିଣ ଭାରତକୁ ଏକତ୍ର କରି ତୁର୍କୀମାନଙ୍କ ଅଧୀନକୁ ଆଣିଥିଲେ । ତୋଗଲକ୍‌ମାନଙ୍କ ପରେ ଏହି ବିଶାଳ ସାମ୍ରାଜ୍ୟର ଅଧଃପତନ ଆରମ୍ଭ ହେଲା । ଫିରୁଜ ତୋଗଲକଙ୍କ ପରେ ତୈମୁରଙ୍କ ଭାରତ ଆକ୍ରମଣ ଫଳରେ ଏହି ସାମ୍ରାଜ୍ୟର ପରିସମାପ୍ତି ଘଟିଲା ଏବଂ ସମଗ୍ର ଭାରତବର୍ଷରେ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟମାନ ପୁନର୍ବାର ମୁଣ୍ଡଟେକି ଉଠିଲା ।

ଏହି ତୁର୍କୀ ଆଫଗାନମାନେ ହିନ୍ଦୁବହୁଳ ଭାରତରେ ଏକ ସୁଦୃଢ଼ ମୁସଲମାନ ରାଜ୍ୟ ସ୍ଥାପନ ଏବଂ ଧର୍ମର ପ୍ରତିଷ୍ଠା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ସେମାନେ ରାଜ୍ୟ ପରେ ରାଜ୍ୟ ଜୟ କରି ହିନ୍ଦୁଶକ୍ତିକୁ ଦମନ କରିବା ଏବଂ ମନ୍ଦିରରୁ ଧନରତ୍ନ ଅପହରଣ କରିବା ସେମାନଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ହିନ୍ଦୁମାନଙ୍କଠାରୁ ସେମାନେ ମଧ୍ୟ ବିଭିନ୍ନ ପ୍ରକାର କର ଆଦାୟ କରୁଥିଲେ । ଏଥିରୁ ରକ୍ଷା ପାଇବା ପାଇଁ ବାଧ୍ୟ ହୋଇ ଅନେକ ହିନ୍ଦୁ ମୁସଲମାନ ଧର୍ମ ଗ୍ରହଣ କରୁଥିଲେ । ପାର୍ଶୀ ଓ ଆରବୀ ଭାଷାର ପ୍ରାଧାନ୍ୟ ଯୋଗୁ ସଂସ୍କୃତ ଭାଷାର ଯଥେଷ୍ଟ ଆଦର କମିଯାଇଥିଲା । ଫଳରେ ହିନ୍ଦୁମାନଙ୍କର ଆର୍ଥିକ ଓ ଆଧ୍ୟାତ୍ମିକ ଅବନତି ଘଟିଲା ।

ଶାସନ କ୍ଷେତ୍ରରେ ମଧ୍ୟ ସେମାନେ ସୁଦକ୍ଷ ଶାସକ ନଥିଲେ । କେନ୍ଦ୍ର ଓ ପ୍ରାଦେଶିକ ଶାସନ କ୍ଷେତ୍ରରେ କୌଣସି ସାମଞ୍ଜସ୍ୟ ନଥିଲା । ସୁଲତାନ ମୁଖ୍ୟ ଶାସକ ହୋଇଥିଲେ ମଧ୍ୟ ରାଜ୍ୟର ଚତୁଃପାର୍ଶ୍ୱରେ କେନ୍ଦ୍ର ଶାସନର କର୍ତ୍ତୃତ୍ୱ ନଥିଲା କହିଲେ ଚଳେ । ଏଣୁ ସାମ୍ରାଜ୍ୟର ବହୁ ରାଜ୍ୟ ପ୍ରାଦେଶିକ ଶାସନକର୍ତ୍ତାଙ୍କର ଇଚ୍ଛାରେ ଶାସିତ ହେଉଥିଲା । ସେମାନେ ଯେ ପର୍ଯ୍ୟନ୍ତ ରାଜ କର ଦେଉଥିଲେ ସେ ପର୍ଯ୍ୟନ୍ତ ସେମାନଙ୍କର ଶାସନରେ କୌଣସି ହସ୍ତକ୍ଷେପ କରାଯାଉ ନଥିଲା । ଏଣୁ ଫିରୁଜ ତୋଗଲକଙ୍କର ପରେ ଏହି ତୁର୍କୀ ଆଫଗାନମାନେ ଯେତେବେଳେ ଦୁର୍ବଳ ହୋଇ ପଡ଼ିଲେ ସେତେବେଳେ ଚତୁଃପାର୍ଶ୍ୱ

ବିଦ୍ରୋହ, ଅଶାନ୍ତି ଓ ଅରାଜକତା ଦେଖାଗଲା ଓ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟମାନ ସ୍ଥାପିତ ହେଲା । ଏହା ସଙ୍ଗେ ସଙ୍ଗେ ମଧ୍ୟ ଧର୍ମଜଗତରେ ହିନ୍ଦୁ ମୁସଲମାନମାନଙ୍କ ମଧ୍ୟରେ ସାମ୍ୟଭାବ ଆଣିବା ପାଇଁ ଅନେକ ହିନ୍ଦୁ ଧର୍ମ ପ୍ରବର୍ତ୍ତକ, ଧର୍ମ ସଂସ୍କାର କରିବା ଉଦ୍ଦେଶ୍ୟରେ ପ୍ରଚାର କାର୍ଯ୍ୟ ଆରମ୍ଭ କଲେ । ଏମାନଙ୍କ ମଧ୍ୟରେ ରାମାନୁଜ, ରାମାନନ୍ଦ, ବଲ୍ଲଭାଚାର୍ଯ୍ୟ, ଚୈତନ୍ୟ, କବୀର ଓ ନାନକ ପ୍ରଭୃତି ପ୍ରଧାନ ।

## ମୋଗଲ ସାମ୍ରାଜ୍ୟର ସ୍ଥାପୟିତା ବାବର :

୧୫୨୬ ଖ୍ରୀ: ଅ: ରେ ବାବର ଯେତେବେଳେ ଭାରତ ଆକ୍ରମଣ କଲେ, ସେତେବେଳେ ଭାରତର ରାଜନୈତିକ ଓ ଆଭ୍ୟନ୍ତରୀଣ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ହୋଇ ପଡ଼ିଥିଲା । ବାବରଙ୍କର ଆଗମନ ପୂର୍ବରୁ ଦିଲ୍ଲୀସ୍ଥିତ କେନ୍ଦ୍ରୀୟ ରାଜଶକ୍ତିର ଦୁର୍ବଳତାର ସୁଯୋଗ ନେଇ, ଭାରତର ଉତ୍ତରରେ ଏବଂ ଦକ୍ଷିଣରେ ସ୍ୱାଧୀନ ମୁସଲମାନ ଓ ହିନ୍ଦୁ ରାଜ୍ୟମାନ ସ୍ଥାପିତ ହୋଇଥିଲା । କିନ୍ତୁ ଏହି ରାଜ୍ୟଗୁଡ଼ିକ ମଧ୍ୟରେ ସର୍ବଦା କଳହ ଓ ଯୁଦ୍ଧ ଲାଗି ରହିଥିବାରୁ ଦେଶର ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାମରିକ ଅବସ୍ଥା ମଧ୍ୟ ଦୁର୍ବଳ ହୋଇ ପଡ଼ିଥିଲା ।

ଏହି ଆଭ୍ୟନ୍ତରୀଣ ଶୋଚନୀୟ ଅବସ୍ଥାର ସୁଯୋଗ ନେଇ ବାବର ଭାରତ ଆକ୍ରମଣ କରି ଅତି ସହଜରେ ଶକ୍ତିଶାଳୀ ଜାତି ରାଜପୁତମାନଙ୍କୁ ପରାସ୍ତ କରି ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କଲେ । ସାମ୍ରାଜ୍ୟବାଦୀ ବାବର, ସମୟର ଅଭାବ ଯୋଗୁ ଏହି ଶିଶୁ ମୋଗଲ ସାମ୍ରାଜ୍ୟକୁ ସୁଦୃଢ଼ କରିପାରି ନଥିଲେ । ସେହିପରି ହୁମାୟୁନ ବିଳାସବ୍ୟସନ ଓ ଆଳସ୍ୟରେ ସମୟ ଅତିବାହିତ କରିଥିବାରୁ , ସେ ମଧ୍ୟ ତାଙ୍କ ପିତାଙ୍କର ଏହି ନବନିର୍ମିତ ଶିଶୁ ସାମ୍ରାଜ୍ୟକୁ ଶକ୍ତିଶାଳୀ କରିପାରିଲେ ନାହିଁ । ବରଂ ସେହି ସମୟରେ ଆଫଗାନମାନଙ୍କର ଘାତ ପ୍ରତିଘାତରେ ଏହି ସାମ୍ରାଜ୍ୟ ପତନୋନ୍ମୁଖୀ ହୋଇ ଉଠିଲା ।

## ମୋଗଲ ସମ୍ରାଟ୍ ଅକବର :

ହୁମାୟୁନଙ୍କ ପୁତ୍ର ଜଲାଲୁଦ୍ଦିନ ମୁହମ୍ମଦ ଆକବର ଏହି ପତନୋନ୍ମୁଖୀ ଶିଶୁ ସାମ୍ରାଜ୍ୟକୁ ପୁନରୁଦ୍ଧାର ଓ ପୁନର୍ନିର୍ମାଣ କରି ଦୃଢ଼ୀଭୂତ କରିଥିଲେ । ଆକବର ମୋଗଲ ସାମ୍ରାଜ୍ୟର ନିର୍ମାତା । ସେ ତାଙ୍କର ସାମରିକ ଦକ୍ଷତା, କୂଟନୀତି, ରାଜନୈତିକ ଦୂରଦୃଷ୍ଟି ଓ କର୍ମପଟୁତା ଯୋଗୁ ମୋଗଲ ସାମ୍ରାଜ୍ୟକୁ ସୁଦୃଢ଼ କରିପାରିଥିଲେ । ୧୬୦୫ ଖ୍ରୀ: ଅ: ରେ ତାଙ୍କର ମୃତ୍ୟୁ ବେଳକୁ ମୋଗଲ ସାମ୍ରାଜ୍ୟର ସୀମା ପଶ୍ଚିମରେ କାବୁଲ, ପୂର୍ବରେ ବଙ୍ଗଦେଶ, ଉତ୍ତରରେ କାଶ୍ମୀର ଏବଂ ଦକ୍ଷିଣରେ କାନ୍ଦାହାର ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ଏହା ବ୍ୟତୀତ ସେ ଭାରତରେ ଥିବା ବିଭିନ୍ନ ଜାତି ଓ ଉପଜାତି, ହିନ୍ଦୁ ଓ ମୁସଲମାନ, ସିଆ ଓ ସୁନ୍ନୀ ଏବଂ ରାଜପୁତ୍ର ଓ ଆଫଗାନମାନଙ୍କୁ ଏକ ସୁଦୃଢ଼ ଶାସନ

ଅଧୀନରେ ଏକତ୍ରିତ କରି ରଖି ପାରିଥିଲେ । ସେ ଭଲ ଭାବରେ ବୁଝିପାରିଥିଲେ ଯେ ହିନ୍ଦୁ-ବହୁଳ ଭାରତରେ ହିନ୍ଦୁମାନଙ୍କର ସାହାଯ୍ୟ ବିନା ଏକ ସୁଦୃଢ଼ ସାମ୍ରାଜ୍ୟ ପ୍ରତିଷ୍ଠା କରିବା ଅସମ୍ଭବ । ଭାରତର ସଂହତି ରକ୍ଷା ନିମନ୍ତେ ସେ ଗୋଟିଏ ଜାତୀୟ ଧର୍ମ ସାହାଯ୍ୟରେ ଭାରତୀୟମାନଙ୍କ ହୃଦୟରେ ମହାଭାରତୀୟ ଭାବ ଜାଗ୍ରତ କରି ଗୋଟିଏ ସ୍ଥାୟୀ ସାମ୍ରାଜ୍ୟ ସ୍ଥାପନ କରିବା ତାଙ୍କର ଲକ୍ଷ୍ୟ ଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଥିପାଇଁ ସେ ଗୋଟିଏ ସାର୍ବଜନୀନ ଧର୍ମ ସ୍ଥାପନ କରିଥିଲେ । ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ଏହି ଧର୍ମ ଗ୍ରହଣ କରିବାର ଅଧିକାର ଥିଲା ଏବଂ ତାଙ୍କର ସହନଶୀଳତା ଯୋଗୁ ସେ ଭବିଷ୍ୟତ ଭାରତ ପାଇଁ ଧର୍ମ ନିରପେକ୍ଷ ରାଷ୍ଟ୍ରର ପଥପ୍ରଦର୍ଶକ ହୋଇଅଛନ୍ତି । ଏହା ଫଳରେ ତାଙ୍କ ରାଜଦରବାରରେ ହିନ୍ଦୁ, ମୁସଲମାନ, ପର୍ତ୍ତୁଗୀଜ, ଖ୍ରୀଷ୍ଟିଆନ ପ୍ରଭୃତି ସବୁଶ୍ରେଣୀର ଲୋକମାନେ ସମାନ ବୋଲି ବିବେଚିତ ହେଉଥିଲେ । ଅଣମୁସଲମାନମାନଙ୍କର ବିଶ୍ୱାସ ଓ ଶ୍ରଦ୍ଧାଭାଜନ ହେବା ପାଇଁ ସେ ହିନ୍ଦୁ ପରିବାରରେ ବିବାହ କରିଥିଲେ, ଘୃଣିତ ଜିଜିୟା କର ରାଜ୍ୟରୁ ଉଠାଇ ଦେଇଥିଲେ ଏବଂ ହିନ୍ଦୁ, ପାର୍ଶୀ, ଆଫଗାନମାନଙ୍କୁ ସାମରିକ ବିଭାଗରେ ନିଯୁକ୍ତ କରିଥିଲେ; କିନ୍ତୁ ଆକବରଙ୍କର ଏହି ସବୁ ସଦ୍‌ଗୁଣ ତାଙ୍କର ଉତ୍ତରାଧି-କାରୀମାନଙ୍କଠାରେ ବିଶେଷ ଭାବରେ ଆଉରଙ୍ଗଜେବଙ୍କଠାରେ ପୂର୍ଣ୍ଣମାତ୍ରାରେ ପରିଲକ୍ଷିତ ନ ହେବାରୁ ମୋଗଲ ସାମ୍ରାଜ୍ୟର ପତନ ହେଲା ।

**ମୋଗଲ ସମ୍ରାଟ ଜାହାଙ୍ଗୀର :**

ଆକବରଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ସେଲିମ ୧୬୦୫ ଖ୍ରୀ: ଅ: ରେ ଜାହାଙ୍ଗୀର ନାମ ଧାରଣ କରି ମୋଗଲ ସିଂହାସନ ଆରୋହଣ କଲେ ମଧ୍ୟ ସେ ଆକବରଙ୍କର ଜୀବିତାବସ୍ଥାରେ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହାଚରଣ କରିଥିଲେ । ପିତା ଓ ପୁତ୍ର ମଧ୍ୟରେ ଚରିତ୍ରର ବହୁ ଅସାମଞ୍ଜସ୍ୟ ପରିଲକ୍ଷିତ ହୁଏ; କିନ୍ତୁ ଶାସନ କ୍ଷେତ୍ରରେ ତାଙ୍କ ପିତାଙ୍କ ପରି ସେ ଅତ୍ୟନ୍ତ ବିଚକ୍ଷଣ ଶାସକ ଥିଲେ । ସେ ଚତୁରତା ଓ ଦକ୍ଷତାର ସହିତ ସମଗ୍ର ରାଜ୍ୟରେ ନିଜର ପ୍ରଭୁତ୍ୱ ପ୍ରତିଷ୍ଠା କରିପାରି ଥିଲେ । ସେ ଆକବରଙ୍କର ନୀତି ଅନୁସରଣ କରିଥିବାରୁ ହିନ୍ଦୁମାନଙ୍କର ବିଶ୍ୱାସଭାଜନ ହୋଇପାରିଥିଲେ । ତାଙ୍କ ରାଜତ୍ୱର ଶେଷଭାଗରେ ସାମ୍ରାଜ୍ଞୀ ନୁରଜାହାନ ଶାସନ କ୍ଷେତ୍ରରେ ପ୍ରତିପତ୍ତି ହାସଲ କରି, ନିଜର ଭାଇ ଆସଫ୍ ଖାଁ ଏବଂ ଅନ୍ୟାନ୍ୟ ଲୋକଙ୍କ ଦ୍ୱାରା ଶାସନ କାର୍ଯ୍ୟ ପରିଚାଳନା କଲେ । ତାଙ୍କର ଏ ପ୍ରକାର ମତିଗତି ଯୋଗୁ ସାହଜାହାନ ଖୁରମ ତାଙ୍କ ବିରୁଦ୍ଧରେ ତଥା ନୁରଜାହାନଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ବାଧ୍ୟ ହୋଇଥିଲେ । ଏହା ଫଳରେ ପ୍ରାଦେଶିକ ଶାସନକର୍ତ୍ତାମାନେ ଧୀରେ ଧୀରେ ସ୍ୱାଧୀନତା ଘୋଷଣା କଲେ ଓ ରାଜ୍ୟର ବିଭିନ୍ନ ସ୍ଥାନରେ ଅତ୍ୟାଚାର ଏବଂ ଲୁଣ୍ଠନ ଆରମ୍ଭ ହେଲା ।

**ମୋଗଲ ସମ୍ରାଟ ଶାହାଜାହାନ :**

୧୬୨୭ ଖ୍ରୀ: ଅ: ରେ ଜାହାଙ୍ଗୀରଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ଖୁରମ ୧୬୨୮

ଖ୍ରୀ: ଅ: ରେ ସିଂହାସନ ଆରୋହଣ କଲେ । ଏହାପରେ ସେ ଶାଜାହାନ ନାମରେ ନାମିତ ହେଲେ । ଶାଜାହାନ ରାଜପୁତ୍ର କନ୍ୟା ଗର୍ଭରୁ ଜନ୍ମ ହୋଇଥିଲେ । ଏଣୁ ତାଙ୍କ ଧମନୀରେ ହିନ୍ଦୁ ରକ୍ତ ପ୍ରବାହିତ ହେଉଥିଲେ ହେଁ, ରାଜ୍ୟଲାଭ ପରେ ସେ ତାଙ୍କ ପିତା ଓ ପିତାମହଙ୍କର ଉଦାର ନୀତି ତ୍ୟାଗକରି ହିନ୍ଦୁମାନଙ୍କ ପ୍ରତି ବିଦ୍ୱେଷ ଭାବ ପୋଷଣ କଲେ । ପରେ ସେ ରାଜପୁତ ଦାରାଙ୍କର ସମ୍ପର୍କରେ ଆସି ଉଦାର ନୀତି ଅବଲମ୍ବନ କରିଥିଲେ ମଧ୍ୟ, ନିଜ ବ୍ୟକ୍ତିଗତ ଜୀବନରେ ସେ ରକ୍ଷଣଶୀଳ ମନୋଭାବ ପୋଷଣ କରିଥିଲେ । ସାମରିକ କ୍ଷେତ୍ରରେ ସେ ହିନ୍ଦୁମାନଙ୍କୁ ନିଯୁକ୍ତି ଦେଇଥିଲେ ହେଁ, ସାମରିକ କୌଶଳ ପ୍ରତି ଆଦୌ ଲକ୍ଷ୍ୟ ଦେଉ ନ ଥିବାରୁ, ମୋଗଲ ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିଲା । ଫଳରେ ଦାକ୍ଷିଣାତ୍ୟରେ ସଦା ସର୍ବଦା ଗଣ୍ଡଗୋଳ ଓ ବିଦ୍ରୋହ ଲାଗି ରହିଲା । ଗୋଲକୁଣ୍ଡା ଓ ବିଜାପୁର ସାମୟିକ ଭାବରେ ତାଙ୍କର ବଶ୍ୟତା ସ୍ୱୀକାର କରିଥିଲେ; କିନ୍ତୁ ଦାକ୍ଷିଣାତ୍ୟରେ ସୁଶାସନ ପ୍ରତିଷ୍ଠା ପାଇଁ ରାଜପୁତ୍ର ଆଉରଙ୍ଗଜେବଙ୍କର ଦାନ ଅତୁଳନୀୟ । ଏହାଛଡ଼ା ତାଙ୍କ ସାମ୍ରାଜ୍ୟର ଆଡ଼ମ୍ବରର ଆବରଣ ତଳେ ଦାରିଦ୍ର୍ୟ ସ୍ପଷ୍ଟତର ହୋଇ ଉଠୁଥିଲା । ଦାକ୍ଷିଣାତ୍ୟ ଓ ଗୁଜରାଟର ଦାରୁଣ ଦୁର୍ଭିକ୍ଷ ସେ ସମୟର ଅର୍ଥନୈତିକ ଦୁର୍ଗତିର ପରିଚୟ ଦିଏ । ଶାଜାହାନଙ୍କ ରାଜତ୍ୱ କାଳରେ ମୋଗଲ ସାମ୍ରାଜ୍ୟର ଗୌରବ ଚରମ ସୀମାରେ ଉପନୀତ ହୋଇଥିଲା । ମୋଗଲ ରାଜକୋଷ ପୂର୍ଣ୍ଣ ଥିବାରୁ ଏବଂ ବୈଦେଶିକ ଆକ୍ରମଣର ଆଶଙ୍କା ନ ଥିବାରୁ ରାଜ୍ୟରେ ଶାନ୍ତି ବିରାଜମାନ କରୁଥିଲା । ଏହାଛଡ଼ା ସେ ଅତ୍ୟଧିକ ବିଳାସପ୍ରିୟ ଥିବାରୁ କଳା, ଶିଳ୍ପ, ସ୍ଥାପତ୍ୟ, ବ୍ୟବସାୟ ବାଣିଜ୍ୟରେ ରାଜକୋଷରୁ ବହୁ ଅର୍ଥ ବ୍ୟୟକରି ଉନ୍ନତି କରିଥିବାରୁ ତାଙ୍କ ରାଜତ୍ୱ କାଳକୁ ମୋଗଲ ଇତିହାସରେ ସୁବର୍ଣ୍ଣ ଯୁଗ ବୋଲି କୁହାଯାଏ । ଏପରିକି ବାର୍ଦ୍ଧକ୍ୟର ଗତି ସଙ୍ଗେ ସଙ୍ଗେ ତାଙ୍କର ଲୋକପ୍ରିୟତା ଏବଂ ଜନହିତକର କାର୍ଯ୍ୟପାଇଁ ସ୍ପୃହା କମି ଯାଇ ନଥିଲା । ୧୬୩୧ ଖ୍ରୀ: ଅ: ରେ ମମତାଜଙ୍କ ମୃତ୍ୟୁପରେ ସେ କ୍ରମଶଃ ଦୁର୍ବଳ ହୋଇ ପଡ଼ିଲେ ଓ ତାଙ୍କର ଜ୍ୟେଷ୍ଠା କନ୍ୟା ଜାହାନାରାଙ୍କୁ ଅତ୍ୟଧିକ ଭଲ ପାଇଲେ । ନିଜର ସୁଖସ୍ୱାଚ୍ଛନ୍ଦ୍ୟକୁ ଅବ୍ୟାହତ ରଖିବା ପାଇଁ ସେ ତାଙ୍କର ଚାରି ପୁଅଙ୍କୁ ଚାରୋଟି ସୁଦୂରବର୍ତ୍ତୀ ରାଜ୍ୟରେ ଶାସନକର୍ତ୍ତା ରୂପେ ନିଯୁକ୍ତ କରିଥିଲେ ।

ମୁସଲମାନ ସାମ୍ରାଜ୍ୟର ପରମ୍ପରା ଏହି ଯେ, ମୋଗଲ ସମ୍ରାଟମାନେ, ଜୀବନରେ ଅପରାହ୍ନର ବିପନ୍ନ ମୁହୂର୍ତ୍ତରେ ନିଜର ପୁତ୍ରମାନଙ୍କର ବିଦ୍ରୋହାଚରଣରେ ଶେଷ ନିଃଶ୍ୱାସ ତ୍ୟାଗ କରିଥାନ୍ତି । ସମ୍ରାଟ ଆକବର ତାଙ୍କର ବିଦ୍ରୋହୀ ପୁତ୍ର ଖୁରମଙ୍କୁ ମୃତ୍ୟୁ ଶଯ୍ୟାରେ କ୍ଷମା ଦେଇଥିଲେ । ସେହିପରି ଶାଜାହାନ ମଧ୍ୟ ଜାହାଙ୍ଗୀରଙ୍କର ଜୀବନର ଶେଷ ମୁହୂର୍ତ୍ତରେ ବିଦ୍ରୋହାଚରଣ କରିଥିଲେ । ଏଣୁ ବର୍ତ୍ତମାନ ଶାଜାହାନଙ୍କର ପାଳି ପଡ଼ିଲା । ସେ ୧୬୫୭ ଖ୍ରୀ: ଅ: ରେ ମୋଗଲ ସିଂହାସନ ପାଇଁ ପୁତ୍ରମାନଙ୍କ ମଧ୍ୟରେ ଭ୍ରାତୃଯୁଦ୍ଧ ପରିଲକ୍ଷିତ କରିଥିଲେ ଏବଂ ଶେଷରେ ଆଉରଙ୍ଗଜେବଙ୍କ ଦ୍ୱାରା ବନ୍ଦୀ ହୋଇ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

# ଦ୍ୱିତୀୟ ଅଧ୍ୟାୟ

## ରାଜପୁତ୍ର ଆଉରଙ୍ଗଜେବ

ସମ୍ରାଟ ଶାଜାହାନଙ୍କର ଚାରି ପୁତ୍ର ଏବଂ ଦୁଇ କନ୍ୟା ଥିଲେ । ଯଥା:— ଦାରା, ସୁଜା, ଆଉରଙ୍ଗଜେବ ଓ ମୁରାଦ-ବକ୍ସ ଏବଂ ଜାହାନାରା ଓ ରୋସନାରା । ତାଙ୍କର ମୃତ୍ୟୁ ବେଳକୁ ଦାରାଙ୍କୁ ୪୦ ବର୍ଷ, ସୁଜାଙ୍କୁ ୪୧ ବର୍ଷ, ଆଉରଙ୍ଗଜେବଙ୍କୁ ୩୯ ବର୍ଷ ଏବଂ ମୁରାଦଙ୍କୁ ୩୪ ବର୍ଷ ହୋଇଥିଲା ।

**ଦାରା-ସୋଖ :**

ଦାରା ଜଣେ ଶାସ୍ତ୍ରଜ୍ଞ ଥିଲେ ଏବଂ ଧର୍ମ ସମ୍ବନ୍ଧରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ଆକବରଙ୍କ ପରି ଉଦାରଚେତା ଥିଲେ ଏବଂ ସୁଫି ଓ ହିନ୍ଦୁ ପଣ୍ଡିତମାନଙ୍କ ସହିତ ସୁସମ୍ପର୍କ ରଖୁଥିଲେ । ତାଙ୍କର ପ୍ରଗାଢ଼ ବିଦ୍ୟାନୁରାଗ ଯୋଗୁଁ ବ୍ରାହ୍ମଣ ପଣ୍ଡିତ-ମାନଙ୍କ ସାହାଯ୍ୟରେ ହିନ୍ଦୁ ବେଦ ଓ ଉପନିଷଦକୁ ପାର୍ସୀ ଭାଷାରେ ଅନୁବାଦ କରାଇ-ଥିଲେ । ସେ ସବୁ ଧର୍ମକୁ ସମାନ ଦୃଷ୍ଟିରେ ଦେଖୁଥିଲେ ଏବଂ ସବୁ ଧର୍ମର ସାରତତ୍ତ୍ୱ ଏକ ବୋଲି ତାଙ୍କର ବିଶ୍ୱାସ ଥିଲା । ଏହାଦ୍ୱାରା ସୁନ୍ନୀ ସମ୍ପ୍ରଦାୟର ମୁସଲମାନମାନେ ତାଙ୍କୁ ଘୃଣା ଚକ୍ଷୁରେ ଦେଖୁଥିଲେ ଏବଂ ତାଙ୍କ ପ୍ରତି ସେମାନେ ଶତ୍ରୁତା ଆଚରଣ କଲେ ।

ଦାରା ଶାଜାହାନଙ୍କର ପ୍ରିୟତମ ପୁତ୍ର ଥିବାରୁ ସେ ନ୍ୟାୟାଳୟରେ ସର୍ବଦା ତାଙ୍କ ନିକଟରେ ଉପସ୍ଥିତ ରହୁଥିଲେ ଏବଂ ଶାଜାହାନ ପୀଡ଼ିତ ଥିବାବେଳେ ଶାସନ କାର୍ଯ୍ୟ ମଧ୍ୟ ପରିଚାଳନା କରୁଥିଲେ । ଶାଜାହାନଙ୍କର ବାର୍ଦ୍ଧକ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଦାରାଙ୍କର ପ୍ରଭାବ ରାଜ୍ୟରେ ବଢ଼ି ଚାଲିଲା । କାନ୍ଦାହାର ଆକ୍ରମଣ ପରେ ତାଙ୍କୁ "ସାହା ବାଲନ୍ଦ ଇକବାଲ୍" **( Lord of exalted fortune)** ବୋଲି ଆଖ୍ୟା ଦିଆଗଲା । ରାଜପରିବାର ଭିତରୁ କେବଳ ଦାରା ରାଜସିଂହାସନର ଠିକ୍ ନିମ୍ନରେ ଏକ ସ୍ୱର୍ଣ୍ଣାସନ ଉପରେ ସମ୍ରାଟଙ୍କ ସମ୍ମୁଖରେ ବସି ପାରୁଥିଲେ । ଏଣୁ ସମସ୍ତଙ୍କର ବିଶ୍ୱାସ ହେଉଥିଲା ଯେ ସମ୍ରାଟଙ୍କ ପରେ ଦାରା ମୋଗଲ ସିଂହାସନ ଆରୋହଣ କରିବେ । ସମ୍ରାଟ ମଧ୍ୟ ତାଙ୍କୁ ନିଜର ଉତ୍ତରାଧି-କାରୀରୂପେ ମନୋନୀତ କରିଥିଲେ ।

ରାଜନୀତିଜ୍ଞ ହିସାବରେ ଦାରାଙ୍କର କୌଣସି ଅଭିଜ୍ଞତା ନ ଥିଲା । ସେ ମଧ୍ୟ ବାସ୍ତବ ଅଭିଜ୍ଞତା ଓ କର୍ମଦକ୍ଷତା ଅର୍ଜନ କରିବା ପାଇଁ ସମର୍ଥ ହୋଇପାରି ନ ଥିଲେ । ଯୁଦ୍ଧ କୌଶଳରେ ସେ ଅନଭିଜ୍ଞ ଥିଲେ । ମୋଗଲ ସାମ୍ରାଜ୍ୟର ଐଶ୍ୱର୍ଯ୍ୟ ପିତାଙ୍କର ଅଗାଧ ସ୍ନେହ ମମତା ଏବଂ ଗୃହୁକାରମାନଙ୍କର ତୋଷାମଦ ଦ୍ୱାରା ସେ ନିଜର ଭୁଲ୍ ଜାଣିପାରୁ ନଥିଲେ । ଉନ୍ମୁକ୍ତ ରଣାଙ୍ଗନରେ ଅବତୀର୍ଣ୍ଣ ହୋଇ ବିଜୟ ଲାଭ କରିବା ତାଙ୍କ ପକ୍ଷରେ ଯେପରି ଦୁରୂହ ବ୍ୟାପାର ଥିଲା, ଠିକ୍ ସେହିପରି କୂଟନୀତିଜ୍ଞ ଆଉରଙ୍ଗଜେବଙ୍କୁ ଯୁଦ୍ଧରେ ପରାସ୍ତ କରିବା ଅସମ୍ଭବ ହୋଇପଡ଼ିଥିଲା ।

## ସୁଜା :

ସୁଜା ଅତ୍ୟନ୍ତ ବୁଦ୍ଧିମାନ୍, ଧୂର୍ତ୍ତ, ଚତୁର, ସାହସୀ ଓ କୂଟନୀତିଜ୍ଞ ଥିଲେ; କିନ୍ତୁ ସେ ଆମୋଦପ୍ରିୟ ଓ ମଦ୍ୟାସକ୍ତ ଥିଲେ । ସର୍ବଦା ଅନ୍ତଃପୁରରେ ସମୟ ଅତିବାହିତ କରୁଥିବା ଯୋଗୁ ଦୁର୍ବଳ ହୋଇ ପଡ଼ୁଥିଲେ । ରାଜ୍ୟର ଶାସନ କାର୍ଯ୍ୟ ପାଇଁ ସେ ଆଦୌ ଧ୍ୟାନ ଦେଉ ନଥିଲେ ଏବଂ ସେଥିପାଇଁ ତାଙ୍କର ପ୍ରଗାଢ଼ ଚେଷ୍ଟା ବା କଠୋର ଅଧ୍ୟବସାୟ ନଥିଲା; କିନ୍ତୁ ରାଜ୍ୟର ସଙ୍କଟାପନ୍ନ ଅବସ୍ଥାବେଳେ ସେ ଖୁବ୍ ସାହସର ସହିତ ତାହାର ସମ୍ମୁଖୀନ ହୋଇ ପାରୁଥିଲେ । ହିନ୍ଦୁ ମୁଖ୍ୟମାନଙ୍କୁ ଲାଞ୍ଚ ଦେଇ ନିଜ ପକ୍ଷଭୁକ୍ତ କରି-ପାରୁଥିଲେ । ସେ ସିହା ସମ୍ପ୍ରଦାୟର ମୁସଲମାନମାନଙ୍କୁ ଭଲ ପାଉଥିଲେ ।

## ମୁରାଦ-ବକ୍ସ :

ମୁରାଦ ବିଚକ୍ଷଣ ରାଜନୀତିଜ୍ଞ ନ ଥିଲେ । ସେ ଆଳସ୍ୟପଟ୍ୟୁଣ ଥିଲେ ଏବଂ ନିଜର ଈପ୍ସିତ ଇଚ୍ଛାକୁ ପୂରଣ କରିବା ପାଇଁ ସମସ୍ତ ଅସାଧ୍ୟକୁ ସହଜରେ ସାଧନ କରିପାରୁ-ଥିଲେ । ସେ ସରଳ, ନିରାଡ଼ମ୍ବର ଓ ସାହସୀ ପ୍ରକୃତିର ଲୋକଥିଲେ । ସେ ତାଙ୍କର ଅନ୍ୟ ଭାଇମାନଙ୍କ ପରି ବୁଦ୍ଧିମାନ୍ ନଥିଲେ କି ମ୍ୱା ନେତା ହେବା ପାଇଁ ଯେଉଁ ଗୁଣ ଆବଶ୍ୟକ ତାହା ତାଙ୍କଠାରେ ଆଦୌ ନଥିଲା । ଅତ୍ୟଧିକ ମଦ୍ୟପାନ କରୁଥିବା ଯୋଗୁ ସେ ନିଜର ସମସ୍ତ ସଦ୍‌ଗୁଣ ହରାଇ ବସିଥିଲେ; କିନ୍ତୁ ସେ ଜଣେ ବିଚକ୍ଷଣ ଯୋଦ୍ଧା ଥିଲେ ଏବଂ ଯୁଦ୍ଧକ୍ଷେତ୍ରରେ ନିଜର ସମରକୌଶଳ ଯୋଗୁ ଆତଙ୍କ ସୃଷ୍ଟି କରିପାରୁଥିଲେ ।

## ଜାହାନାରା ଓ ରୋସନାରା :

ଦୁଇ ଜଣ ରାଜକୁମାରୀଙ୍କ ମଧ୍ୟରେ ଜ୍ୟେଷ୍ଠା କନ୍ୟା ଜାହାନାରା "ବେଗମ୍ ସାହେବା" ବୋଲି ପରିଚିତ ଥିଲେ । ଶାଜାହାନଙ୍କର ବାର୍ଦ୍ଧକ୍ୟ କାଳରେ ତାଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ଆତ୍ମନିୟୋଗ କରିଥିଲେ ଏବଂ ପିତାଙ୍କର ଅତ୍ୟନ୍ତ ବିଶ୍ୱାସୀ ଥିବାରୁ

ମୋଗଲ ଦରବାରରେ ତାଙ୍କର ଖୁବ୍ ପ୍ରତିପତ୍ତି ଥିଲା । ସମ୍ରାଟଙ୍କଠାରୁ କାର୍ଯ୍ୟ ହାସଲ କରାଇ ଦେବା ପାଇଁ ସେ ପ୍ରଜାମାନଙ୍କଠାରୁ ଅତି ମୂଲ୍ୟବାନ ଉପହାର ଓ ଅଳଙ୍କାରମାନ ଗ୍ରହଣ କରୁଥିଲେ । ରାଜନୀତି କ୍ଷେତ୍ରରେ ସେ ଦାରାଙ୍କୁ ଖୁବ୍ ଭଲ ପାଉଥିଲେ ଏବଂ ସବୁ-କ୍ଷେତ୍ରରେ ତାଙ୍କୁ ସାହାଯ୍ୟ କରୁଥିଲେ । ପିତାଙ୍କ ନିକଟରେ ଦାରାଙ୍କ ପାଇଁ ସେ ସର୍ବଦା ଯୁକ୍ତି କରୁଥିଲେ ।

ଅନ୍ୟ ପକ୍ଷରେ ରୋସନାରା ଆଉରଙ୍ଗଜେବଙ୍କୁ ଅତ୍ୟଧିକ ଭଲ ପାଉଥିଲେ ଓ ସେ ତାଙ୍କର ସମର୍ଥକ ଥିଲେ । ସେ ତାଙ୍କର ବଡ଼ ଭଉଣୀ ଓ ବଡ଼ ଭାଇଙ୍କୁ ସର୍ବଦା ଘୃଣା କରୁଥିଲେ । ରାଜପ୍ରାସାଦରେ ରହି ମୋଗଲ ଦରବାରର ସମସ୍ତ ଘଟଣା ସେ ବହୁଦୂରରେ ଥିବା ଆଉରଙ୍ଗଜେବଙ୍କୁ ଜଣାଇ ଦେଉଥିଲେ । ଶାଜାହାନ ଯେତେବେଳେ ପୀଡ଼ିତ ହୋଇ ପଡ଼ିଲେ, ସେତେବେଳେ ରାଜପ୍ରାସାଦରେ ରାଜସିଂହାସନ ପାଇଁ ଷଡ଼ଯନ୍ତ୍ର ଆରମ୍ଭ ହେଲା ଏବଂ ଏହି ଦୁଇ ଜଣ ରାଜକନ୍ୟା ସେହି ଚକ୍ରାନ୍ତର ସୂତ୍ରଧର ହେଲେ ।

**ଆଉରଙ୍ଗଜେବ :**

ଶାଜାହାନଙ୍କର ତୃତୀୟ ପୁତ୍ର ଆଉରଙ୍ଗଜେବ ୧୬୧୮ ଖ୍ରୀ: ଅ: ନଭେମ୍ବର ମାସ ୩ ତାରିଖରେ ମାଳବ ରାଜ୍ୟ ସୀମାରେ ଥିବା ଦୋହାଦ୍‌ଠାରେ ଜନ୍ମଗ୍ରହଣ କରିଥିଲେ । ସେତେବେଳେ ଶାଜାହାନ ଦାକ୍ଷିଣାତ୍ୟର ଶାସନକର୍ତ୍ତା । ୧୬୨୨ ଖ୍ରୀ: ଅ:ରେ ଶାଜାହାନ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରୁ ଜାହାଙ୍ଗୀର ତାଙ୍କୁ ରାଜ୍ୟରୁ ବିତାଡ଼ିତ କଲେ । ଏହା ଫଳରେ ସେ ଦାରା ଓ ଆଉରଙ୍ଗଜେବଙ୍କ ସହିତ ମସଲି-ପଟ୍ଟନକୁ ଓ ପରେ ବଙ୍ଗଦେଶକୁ ପଳାୟନ କଲେ; କିନ୍ତୁ ୧୬୨୫ ଖ୍ରୀ: ଅ:ରେ ସେ ଜାହାଙ୍ଗୀରଙ୍କର ଅଧୀନତା ସ୍ୱୀକାର କରିବାରୁ ଜାହାଙ୍ଗୀର ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ଗୋଟିଏ ସର୍ତ୍ତରେ ତାଙ୍କୁ ପୁଣି ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ । ଏହି ସର୍ତ୍ତାନୁସାରେ ଦାରା ଓ ଆଉରଙ୍ଗଜେବ ଆଗ୍ରା ରାଜଦରବାରରେ ପିତାମହଙ୍କ ତତ୍ତ୍ୱାବ-ଧାନରେ ରହିଲେ ।

ଏହିସବୁ ଗଣ୍ଡଗୋଳ ଯୋଗୁ ୧୦ ବର୍ଷ ବୟସରେ ଶିକ୍ଷା ଆରମ୍ଭ କରିଥିଲେ ମଧ୍ୟ ସେ ତାଙ୍କ ପିତାଙ୍କର ଯୋଗ୍ୟତମ ସନ୍ତାନ ଥିଲେ । ଦାରାଙ୍କଠାରେ ଯେଉଁ ସଦ୍‌ଗୁଣ ଥିଲା ତାଙ୍କଠାରେ ତାହା ନଥିଲା । ସେ ବୁଦ୍ଧିମାନ୍, ବିଚକ୍ଷଣ ଓ ମେଧାବୀ ଛାତ୍ର ଥିଲେ ଏବଂ କୋରାନ ଓ ହଦିସ୍ (Hadis) କୁ ଆୟତ୍ତ କରିଥିଲେ । ଖୁବ୍ ଅଳ୍ପ ବୟସରେ ସେ ଆରବୀ ଓ ପାର୍ସୀ ଭାଷାରେ ଦକ୍ଷତା ହାସଲ କରିବା ସଙ୍ଗେ ସଙ୍ଗେ ହିନ୍ଦୀ ଓ ତୁର୍କୀ ଭାଷା ମଧ୍ୟ ଶିକ୍ଷା କରିଥିଲେ । ତାଙ୍କର ବିଚାର ଶକ୍ତି ଅତି ପ୍ରଖର ଓ ଉଚ୍ଚକୋଟୀର ଥିଲା । କେଉଁ ବ୍ୟକ୍ତି ସହିତ କିପରି ଭାବରେ ବ୍ୟବହାର କରିବାକୁ ହେବ ତାହା ତାଙ୍କ ଚରିତ୍ରର ଗୋଟିଏ

ଅବିଚ୍ଛେଦ୍ୟ ଅଙ୍ଗ ଥିଲା । ସେ ଏତେ କପଟୀ ଥିଲେ ଯେ ତାଙ୍କର ଅତିପ୍ରିୟ ଲୋକ ମଧ୍ୟ ତାଙ୍କ ହୃଦୟର କଥା ଜାଣିପାରୁ ନଥିଲେ । ସେ ରାଜନୀତି ଏବଂ ଶାସନକ୍ଷେତ୍ରରେ ବହୁ ଅଭିଜ୍ଞତା ହାସଲ କରିଥିଲେ ।

ସାମରିକ ବିଦ୍ୟାରେ ସେ ଅତ୍ୟନ୍ତ ନିପୁଣ ଥିଲେ ଏବଂ ଶୀଘ୍ର ଜଣେ ସୁଦକ୍ଷ ସୈନିକ ଭାବରେ ପରିଗଣିତ ହେଲେ । ସାମରିକ ଦକ୍ଷତା, ଅସାଧାରଣ କର୍ମକୁଶଳତା ଏବଂ କୂଟନୀତି ଇତ୍ୟାଦି ରାଜୋଚିତ ଗୁଣାବଳୀ ତାଙ୍କଠାରେ ଦେଖିବାକୁ ମିଳେ ।

ସେ ଜଣେ ଅତ୍ୟନ୍ତ ଧର୍ମବିଶ୍ୱାସୀ ନୈଷ୍ଠିକ ସୁନ୍ନୀ ସମ୍ପ୍ରଦାୟର ମୁସଲମାନ ଥିଲେ । ଏଣୁ ମୁସଲମାନମାନେ ତାଙ୍କୁ ଅତି ଆଦର ଓ ଭକ୍ତି କରୁଥିଲେ । ଏଥିପାଇଁ ମୁସଲମାନ ସୈନ୍ୟମାନେ ତାଙ୍କ ପ୍ରତି ବିଶ୍ୱାସୀ ଓ ଯଥେଷ୍ଟ ଭାବରେ ଅନୁରକ୍ତ ହୋଇ ପଡ଼ିଥିଲେ । ଗୀତ, ବାଦ୍ୟ ଓ ଚିତ୍ରକଳା ପ୍ରତି ତାଙ୍କର ଅନୁରାଗ ନଥିଲା ।

୧୬୩୪ ଖ୍ରୀ: ଅ:ରେ ସମ୍ରାଟ ଶାଜାହାନ ତାଙ୍କୁ ମାନସବାଦାର ପଦରେ ନିଯୁକ୍ତ କଲେ ଏବଂ ତାଙ୍କ ଅଧୀନରେ ୧୦,୦୦୦ ସୈନ୍ୟ ଓ ୪,୦୦୦ ଅଶ୍ୱାରୋହୀ ରହିଲେ । ତା'ପରେ ସେ ପ୍ରଥମଥର ପାଇଁ ବୁନ୍ଦେଲଖଣ୍ଡରେ ଜୁଝାର ସିଂହଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । ୧୬୩୬ ଖ୍ରୀ: ଅ:ରେ ଶାଜାହାନ ଆଓରଙ୍ଗଜେବଙ୍କୁ ୧୮ ବର୍ଷ ବୟସରେ ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ । ଏହି ସମୟରେ ସେ ନାସିକ ନିକଟରେ ଥିବା ବାଗଲନା (Bagalna) ଅଧିକାର କରି ସାହାଜୀଙ୍କର କ୍ଷମତା କ୍ଷୁଣ୍ଣ କରିଥିଲେ । ସେତେବେଳେ ଖାନ୍ ଜମାନ୍ ତାଙ୍କର ମୁଖ୍ୟ ଉପଦେଷ୍ଟା ଥିଲେ । ଦଉଲତାବାଦ, ଅହମଦ୍‌ନଗର, ତେଲେଙ୍ଗାନା, ଖାନ୍ଦେସ ଏବଂ ବେରାର ପ୍ରଦେଶଗୁଡ଼ିକ ତାଙ୍କ ଅଧୀନରେ ଶାସିତ ହେଲା । ଏହି ଚାରୋଟି ପ୍ରଦେଶରେ ୬୪ଟି ଦୁର୍ଗ ଥିଲା ଏବଂ ଏହି ରାଜ୍ୟଗୁଡ଼ିକରୁ ପ୍ରାୟ ୫ କୋଟି ଟଙ୍କା ସେ ରାଜସ୍ୱ ରୂପରେ ପାଉଥିଲେ । ୧୬୩୭ ଖ୍ରୀ: ଅ: ମେ ମାସ ୧୮ ତାରିଖରେ ସେ ପାରସ୍ୟ ରାଜପରିବାରରୁ ସାହା ନୱାଜ (Shah Nawaz)ଙ୍କ କନ୍ୟା ଦିଲରସ ବାନୁ ବେଗମଙ୍କର ପାଣିଗ୍ରହଣ କରିଥିଲେ । ଦାକ୍ଷିଣାତ୍ୟରେ ସେ ଜଣେ ସୁଶାସକ ହିସାବରେ ନିଜର ଦକ୍ଷତା ପ୍ରମାଣିତ କରିଇ ପାରିଥିଲେ ।

କିନ୍ତୁ ଆଠ ବର୍ଷ ପରେ ରାଜଧାନୀ ଦିଲ୍ଲୀରେ ଏକ ଦୁର୍ଘଟଣା ଯୋଗୁଁ ତାଙ୍କୁ ଇସ୍ତଫା ଦେବାକୁ ପଡ଼ିଥିଲା । ୧୬୬୪ ଖ୍ରୀ: ଅ: ରେ ତାଙ୍କ ଭଗ୍ନୀ ଜାହାନାରା ପୋଡ଼ି ହୋଇଯିବା ଦ୍ୱାରା ବହୁତ ଯନ୍ତ୍ରଣା ପାଇଲେ । ବହୁ ଚିକିତ୍ସକ ନିଯୁକ୍ତ ହୋଇ ସୁଦ୍ଧା ଆରୋଗ୍ୟର କୌଣସି ସୂଚନା ଦେଖାଗଲା ନାହିଁ । ଶାଜାହାନ ନିଜେ ତାଙ୍କ ପ୍ରିୟ କନ୍ୟାର ଦେଖାଶୁଣା କରୁଥିଲେ । ଜାହାନାରାଙ୍କର ଆରୋଗ୍ୟ ପାଇଁ ଭଗବାନଙ୍କ ନିକଟରେ ପ୍ରାର୍ଥନା କରିବା ସଙ୍ଗେ ସଙ୍ଗେ ଗରିବ ଲୋକମାନଙ୍କୁ ଅର୍ଥ ଦାନ କରୁଥିଲେ । ପରିଶେଷରେ ଅରିଫ ନାମକ

ଏକ ଜୀତଦାସ ଦ୍ୱାରା ଜାହାନାରା ଆରୋଗ୍ୟ ଲାଭ କଲେ । ଏଣୁ ଆଉରଙ୍ଗଜେବ ତାଙ୍କ ଭଗ୍ନୀ ଜାହାନାରାଙ୍କୁ ଦେଖିବାକୁ ଆଗ୍ରା ଯାତ୍ରାକଲେ । ସେଠାରେ ପହଞ୍ଚିବାର ସପ୍ତାହ ପରେ ଶାଜାହାନ ତାଙ୍କୁ ତାଙ୍କ ଜାଗିରଦାର ପଦବୀରୁ ବହିଷ୍କାର କଲେ । କେତେକ କହନ୍ତି ଯେ ଯେହେତୁ ସେ ଜଣେ ନୈଷ୍ଠିକ ମୁସଲମାନ ଥିଲେ ଏବଂ ଫକୀର ଭାବରେ ସାରାଜୀବନ କଟାଇବା ପାଇଁ ଚେଷ୍ଟା କରୁଥିଲେ, ଏଣୁ ତାଙ୍କୁ ଏହି ଶାସ୍ତି ଦିଆଯାଇଥିଲା; କିନ୍ତୁ ପ୍ରକୃତ ଘଟଣା ତାହା ନୁହେଁ । ଦାରା ସମ୍ରାଟଙ୍କର ଦକ୍ଷିଣହସ୍ତ ସ୍ୱରୂପ କାର୍ଯ୍ୟ କରୁଥିଲେ । ସେ ଆଉରଙ୍ଗଜେବଙ୍କର ବୁଦ୍ଧି, ଯୁଦ୍ଧ କୌଶଳ ଓ ଶାସନଦକ୍ଷତା ଦେଖି ଈର୍ଷାପରାୟଣ ହୋଇ ପଡ଼ିଲେ । ଏଣୁ ସେ ସମ୍ରାଟଙ୍କଠାରେ ତାଙ୍କ ବିରୁଦ୍ଧରେ ନାନାପ୍ରକାର କୁତ୍ସାରଟନା କରି ସମ୍ରାଟଙ୍କ ମନକୁ ବକ୍ର କରଦେଲେ । ଶେଷରେ ସେ ଆଉରଙ୍ଗଜେବଙ୍କୁ ସମ୍ରାଟଙ୍କ ଦ୍ୱାରା ଦାକ୍ଷିଣାତ୍ୟରୁ ବହିଷ୍କାର କଲେ । ଆଉରଙ୍ଗଜେବ ତାଙ୍କ ଭାଇଙ୍କର ଏ ପ୍ରକାର ଅଶୋଭନୀୟ ଏବଂ ଅନ୍ୟାୟ ବ୍ୟବହାରରେ ଅତିଶୟ ଦୁଃଖିତ ଓ ମ୍ରିୟମାଣ ହୋଇପଡ଼ିଲେ । ଶେଷରେ ଏ ପ୍ରକାର ଦୟନୀୟ ଅବସ୍ଥାରେ ଦାକ୍ଷିଣାତ୍ୟର ଶାସନଭାର ଆଉ ବହନ ନ କରି ସେଥିରୁ ୧୬୪୪ ଖ୍ରୀ: ଅ: ରେ ଅପସରି ଗଲେ ।

କିନ୍ତୁ ଜାହାନାରାଙ୍କ ପ୍ରରୋଚନାରେ ସେ ପୁଣି ୧୬୪୫ ଖ୍ରୀ: ଅ: ରେ ଗୁଜରାଟର ଶାସକ ମୁଖ୍ୟରୂପେ ନିଯୁକ୍ତ ପାଇଲେ ଏବଂ ନିଜର ସାମର୍ଥ୍ୟ ଓ ଦକ୍ଷତା ଯୋଗୁ ଦୁଇ ବର୍ଷ ପରେ ହିନ୍ଦୁକୁଶର ଉତ୍ତର ପୂର୍ବରେ ଥିବା ବାଲାଖ୍ ଓ ବାଧକସାନର ଶାସନ ଭାର ଗ୍ରହଣ କଲେ । କିନ୍ତୁ ସେ ଏହି ଦୁଇ ରାଜ୍ୟକୁ କରାୟତ୍ତ କରିପାରିଲେ ନାହିଁ । କାରଣ ହିନ୍ଦୁକୁଶ ପର୍ବତମାଳା ସର୍ବଦା ବରଫାଚ୍ଛନ୍ନ ଥିବାରୁ ଏବଂ ଉଜ୍‌ବେକ୍‌ମାନେ ପରାକ୍ରମଶାଳୀ ଥିବାରୁ, ସେ ସେମାନଙ୍କୁ ପରାସ୍ତ କରି ରଖି ପାରିଲେ ନାହିଁ ।

ସେହିପରି ସେ ତାଙ୍କର କାନ୍ଦାହାର ଅଭିଯାନରେ ମଧ୍ୟ ଅକୃତକାର୍ଯ୍ୟ ହୋଇଥିଲେ । ୧୬୩୮ ଖ୍ରୀ: ଅ: ରେ ପାରସ୍ୟର ଜନୈକ ରାଜ୍ୟପାଳ ଆଲିମର୍ଦ୍ଦାନ ଖାଁ ଶାଜାହାନଙ୍କ ହସ୍ତରେ କାନ୍ଦାହାର ସମର୍ପଣ କରିଥିଲେ; କିନ୍ତୁ ପାରସ୍ୟର ଶାହା ଏହାକୁ ପୁଣି ଅଧିକାର କରିନେବା ପାଇଁ ଆଶାପୋଷଣ କରି ଯୁଦ୍ଧ ଅଭିଯାନ ଆରମ୍ଭ କଲେ । ଶୀତ ଦିନ ଯୋଗୁ ଶାଜାହାନଙ୍କ ପକ୍ଷରୁ କୌଣସି ପ୍ରତିରୋଧ ନ ହେବାରୁ, ମୋଗଲ ଦୁର୍ଗରକ୍ଷୀମାନେ ୫୭ ଦିନକାଳ ଯୁଦ୍ଧ କରି ପାରସ୍ୟ ସୈନ୍ୟମାନଙ୍କ ଦ୍ୱାରା ୧୬୪୯ ଖ୍ରୀ: ଅ: ରେ ପରାସ୍ତ ହେଲେ ଏବଂ କାନ୍ଦାହାର ପାରସ୍ୟର ଅଧୀନସ୍ଥ ହୋଇ ରହିଲା । ସେହିବର୍ଷ ଠିକ୍ ଶୀତଋତୁ ପରେ - ଶାଜାହାନ ବହୁ ସୈନ୍ୟସାମନ୍ତ ସହ କାନ୍ଦାହାର ପୁନରୁଦ୍ଧାର ପାଇଁ ଆଉରଙ୍ଗଜେବଙ୍କୁ ପଠାଇଲେ । ଆଉରଙ୍ଗଜେବ ୩ ମାସ ୨୦ ଦିନକାଳ ଯୁଦ୍ଧ କଲାପରେ କୌଣସି ଉନ୍ନତି ଦେଖା ନ ଯିବାରୁ ଏବଂ ପୁଣି ଶୀତଦିନ ଆସିଯିବାରୁ ସମ୍ରାଟଙ୍କ ଆଦେଶରେ ତାଙ୍କୁ ପୁଣି ଫେରି ଆସିବାକୁ ପଡ଼ିଥିଲା । ଏହା ଦ୍ୱାରା ଆଉରଙ୍ଗଜେବଙ୍କର ସମ୍ମାନ କ୍ଷୁଣ୍ଣ ହେଲା ।

ପୁନଶ୍ଚ ଆଉରଙ୍ଗଜେବ ୧୬୫୨ ଖ୍ରୀ: ଅ: ରେ କାନ୍ଦାହାର ଅଭିମୁଖେ ଯୁଦ୍ଧଯାତ୍ରା କଲେ । ଏହି ଯୁଦ୍ଧ ଦୁଇ ମାସ ଆଠ ଦିନରୁ ଅଧିକ ଦିନ ହୋଇଥିଲା । ମୋଗଲମାନଙ୍କର ତୋପ-ଗୋଳା-କମାଣବାହିନୀ ପାରସର ସହିତ ଯୁଦ୍ଧ କରି ନ ପାରିବାରୁ ଏବଂ କେତେ-କାଂଶରେ ଖାଦ୍ୟଦ୍ରବ୍ୟ ଶେଷ ହୋଇ ଆସିବାରୁ ସମ୍ରାଟ ଯୁଦ୍ଧ ଛାଡ଼ି ଚାଲିଆସିବା ପାଇଁ ଆଉରଙ୍ଗଜେବଙ୍କୁ ନିର୍ଦ୍ଦେଶ ଦେଲେ । ଆଉରଙ୍ଗଜେବ ତାଙ୍କ ସମ୍ମାନକୁ ବଜାୟ ରଖିବା ପାଇଁ ଆଉ କିଛି ଦିନ ଯୁଦ୍ଧ ଚାଲୁରଖିବା ପାଇଁ ସମ୍ରାଟଙ୍କୁ ବହୁତ କାକୁତି ମିନତି କଲେ ପୁଣି କୌଣସି ଫଳ ହେଲନାହିଁ । ଶାଜାହାନ ଆଉରଙ୍ଗଜେବଙ୍କୁ କହିଥିଲେ—"କାନ୍ଦାହାର ଅଧିକାର କରିବାରେ ତୁମର ସାମର୍ଥ୍ୟରେ ମୋର ଯଦି ବିଶ୍ୱାସ ଥାଆନ୍ତା, ତା'ହେଲେ ମୁଁ ତୁମର ସୈନ୍ୟବାହିନୀକୁ ପ୍ରତ୍ୟାହାର କରିନଥାନ୍ତି । ପ୍ରତ୍ୟେକ ବ୍ୟକ୍ତି କିଛି-ନା କିଛି କାର୍ଯ୍ୟ କରିପାରେ । ଏଣୁ ପଣ୍ଡିତମାନେ କହନ୍ତି—ଯିଏ ଅଭିଜ୍ଞ ସେ କୌଣସି ଉପଦେଶ ଆବଶ୍ୟକ କରେ ନାହିଁ ।" ଆଉରଙ୍ଗଜେବ ବାଧ୍ୟହୋଇ ସମ୍ରାଟଙ୍କର ଆଦେଶ ପାଳନ କଲେ; କିନ୍ତୁ ଏହାପରେ ଆଉରଙ୍ଗଜେବଙ୍କର ସେନାଧକ୍ଷତ୍ୱ ଓ ସାମରିକ ଶକ୍ତିରେ ସମ୍ରାଟଙ୍କର ବିଶ୍ୱାସ କମିଗଲା ।

୧୬୫୨ ଖ୍ରୀ: ଅ: ଅଗଷ୍ଟ ମାସରେ ଆଉରଙ୍ଗଜେବ ଦ୍ୱିତୀୟଥର ପାଇଁ ଦାକ୍ଷିଣାତ୍ୟର ଶାସନକର୍ତ୍ତାରୂପେ ନିଯୁକ୍ତି ପାଇଲେ । ସେ ୧୬୫୩ ମସିହା ନଭେମ୍ବର ମାସରେ କାର୍ଯ୍ୟଭାର ଗ୍ରହଣ କଲେ । ଦାକ୍ଷିଣାତ୍ୟର ଅବସ୍ଥା ୧୬୪୪ ଖ୍ରୀ: ଅ: ଠୁ ୧୬୫୩ ଖ୍ରୀ: ଅ: ମଧ୍ୟରେ ଅତ୍ୟନ୍ତ ଖରାପ ହୋଇଯାଇଥିଲା । ଏହି ସମୟରେ ଯେଉଁ ଶାସନକର୍ତ୍ତାମାନେ ନିଯୁକ୍ତ ହୋଇଥିଲେ, ସେମାନେ ପ୍ରଜାମାନଙ୍କଠାରୁ ନିର୍ଦ୍ଦୟ ଭାବରେ ଅର୍ଥ ଆଦାୟ କରିଥିଲେ ପୁଣି କୃଷିର ଉନ୍ନତି ପାଇଁ କୌଣସି ପଦକ୍ଷେପ ନେଇ ନଥିଲେ । ଏହି ଜନପୀଡ଼କମାନଙ୍କର ଶାସନରେ ଦାକ୍ଷିଣାତ୍ୟର ବହୁସ୍ଥାନ ଜନଶୂନ୍ୟ ହୋଇ ଯାଇଥିଲା । ଫଳରେ ରାଜକୋଷର ଆୟ କମିଗଲା । ଦାକ୍ଷିଣାତ୍ୟର ଏହି ଅବସ୍ଥା ଯୋଗୁ ମୋଗଲ ସାମ୍ରାଜ୍ୟକୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ଶାସନ କାର୍ଯ୍ୟ ଏବଂ ସୈନ୍ୟ ପରିଚାଳନା ପାଇଁ ରାଜକୋଷରୁ ବହୁ ଅର୍ଥ ବ୍ୟୟିତ ହେଉଥିଲା । ଦାକ୍ଷିଣାତ୍ୟର ଏହି ଚାରୋଟି ପ୍ରଦେଶରୁ ୩ କୋଟି ୬୨ ଲକ୍ଷ ଟଙ୍କା ଟଙ୍କଣା ଆଦାୟ ହେବା ପରିବର୍ତ୍ତେ କେବଳ ଏକ କୋଟି ଟଙ୍କା ରାଜସ୍ୱ ଆଦାୟ ହେଉଥିଲା । ଯେତିକି ମଧ୍ୟ ଆୟ ହେଉଥିଲା, ତାହା ରାଜକୋଷକୁ ଯାଉ ନଥିଲା । ସେଠାକାର ରାଜ୍ୟପାଳମାନେ ଏହି ସରକାରୀ ଟଙ୍କା ତୋଷରପାତ କରୁଥିଲେ । ଫଳରେ ପ୍ରଦେଶଗୁଡ଼ିକର ଅବନତି ଘଟିଲା ଏବଂ ଏହି ଅଭାବ କ୍ରମଶଃ ବଢ଼ି ଚାଲିଲା । ଆଉରଙ୍ଗଜେବ ଦାକ୍ଷିଣାତ୍ୟର ଏହି ସଂକଟାପନ୍ନ ଆର୍ଥିକ ଅବସ୍ଥାରେ ଶାସନଭାର ଗ୍ରହଣ କଲେ । ଏହି ପରିପ୍ରେକ୍ଷୀରେ ସେ ଶାସନ କାର୍ଯ୍ୟ ଚଳାଇବା ପାଇଁ ଅତ୍ୟନ୍ତ ଅସୁବିଧାର ସମ୍ମୁଖୀନ ହେବା ସଙ୍ଗେ ସଙ୍ଗେ ଦାକ୍ଷିଣାତ୍ୟର ଏତେ ଅଳ୍ପ ଆୟ ହେତୁ ବଡ଼ ଉଦ୍‌ବିଗ୍ନ ହୋଇପଡ଼ିଲେ । ଜାଗିରଦାରମାନେ ଯେତିକି ଆୟ କଲେ, ସେତିକିରେ ଚଳିବା ସେମାନଙ୍କ ପକ୍ଷରେ ମଧ୍ୟ

ଅସମ୍ଭବ ହୋଇପଡ଼ିଲା । କାରଣ ସେମାନେ ନିଷ୍ଠାପର ଭାବରେ କାର୍ଯ୍ୟ କରୁ ନଥିଲେ । ଏଣୁ ରାଜ୍ୟର ଆୟ ବଢ଼ାଇବା ପାଇଁ, ସେ ରାଜ୍ୟର ଉତ୍ପାଦିକା ଜାଗିରମାନ ତାଙ୍କ ଅଧୀନରେ ରଖିବା ପାଇଁ ସମ୍ରାଟଙ୍କର ଅନୁମତି ନେଇଥିଲେ । ସମ୍ରାଟ ଏଥିରେ ସମ୍ମତି ପ୍ରଦାନ କରିବାରୁ, ଜାଗିରଦାରମାନେ ଈର୍ଷାରେ ତାଙ୍କଠାରେ ଆଉରଙ୍ଗଜେବଙ୍କ ନାମରେ ବହୁ କୁତ୍ସାରଟନା କଲେ । ଶାଜାହାନ ମଧ୍ୟ ଏମାନଙ୍କ ଦ୍ୱାରା ପ୍ରଭାବିତ ହୋଇ କ୍ରୋଧୀ ଆଉରଙ୍ଗଜେବଙ୍କ ନିକଟକୁ ରାଗାନ୍ୱିତ ହୋଇ ଖଣ୍ଡିଏ ଚିଠି ଲେଖିଥିଲେ । ଆଉରଙ୍ଗଜେବ ମଧ୍ୟ ଅତି ଭଦ୍ର ଭାବରେ ଏହାର ପ୍ରତିରୋଧ କରି ପିତାଙ୍କ ନିକଟକୁ ଉତ୍ତର ଦେଇଥିଲେ ଏବଂ ଏ ପ୍ରକାର ଆକ୍ଷେପ ଦ୍ୱାରା ତାଙ୍କ ପ୍ରତି ଅନ୍ୟାୟ ହେଉଛି ବୋଲି ଦର୍ଶାଇଥିଲେ । ସେ ସର୍ବଦା କର୍ତ୍ତବ୍ୟପରାୟଣ ଏବଂ ନିଜେ ରାଜଭକ୍ତି ପ୍ରଦର୍ଶନ କରୁଥିବାର ଏ ପ୍ରକାର ମିଥ୍ୟା ଆକ୍ଷେପରେ ଆଦୌ ପଛ ଘୁଞ୍ଚି ଯାଇ ନ ଥିଲେ ।

ଆର୍ଥିକ ସ୍ୱଚ୍ଛଳତା ବୃଦ୍ଧି ହେବା ସଙ୍ଗେ ସଙ୍ଗେ ଆଉରଙ୍ଗଜେବ ଦାକ୍ଷିଣାତ୍ୟର କୃଷି ଓ ଅନ୍ୟାନ୍ୟ ସର୍ବାଙ୍ଗୀନ ଉନ୍ନତି ପାଇଁ ଉଦ୍ୟମ କଲେ । ଏହାଛଡ଼ା ତାଙ୍କର ଏହି କାର୍ଯ୍ୟରେ ସେ ମୁର୍ଶୀଦ କୁଲି ଖାଁ ନାମକ ଜଣେ ଅଭିଜ୍ଞ କର୍ମଚାରୀଙ୍କର ସାହାଯ୍ୟ ଓ ସମର୍ଥନ ପାଇଥିଲେ । ମୁର୍ଶୀଦ କୁଲି ଖାଁଙ୍କର ଶାସନ କ୍ଷେତ୍ରରେ ଖୁବ୍ ଦକ୍ଷତା ଥିଲା । ରାଜସ୍ୱ ବିଭାଗର ସୁଶାସନ ପାଇଁ ଦାକ୍ଷିଣାତ୍ୟକୁ ଦୁଇ ଭାଗରେ ବିଭକ୍ତ କରାଗଲା—ପାଇନଘାଟ (Painghat) ଏବଂ ବାଲାଘାଟ (Balaghat) । ରାଜସ୍ୱ ଆଦାୟ ପାଇଁ ଏବଂ ଆର୍ଥିକ ସ୍ୱଚ୍ଛଳତା ଦେଖିବା ପାଇଁ ପ୍ରତ୍ୟେକ ବିଭାଜନରେ ଜଣେ ଲେଖାଏଁ ଦିୱାନ ରହିଲେ । ମୁର୍ଶୀଦ କୁଲି ଖାଁ ବାଲାଘାଟରେ ଦିୱାନ ଦାୟିତ୍ୱ ବହନ କଲେ ।

ସେ ଦାକ୍ଷିଣାତ୍ୟର ତୋଡ଼ରମଲ୍ଲଙ୍କର ରାଜସ୍ୱ ପ୍ରଣାଳୀ ପ୍ରବର୍ତ୍ତନ କଲେ । ଜମି-ଗୁଡ଼ିକୁ ଠିକ୍‌ରୂପେ ଏବଂ ସୀମା ନିର୍ଦ୍ଧାରଣ ପାଇଁ ଅମୀନ୍ ଓ ଅମିଲ୍‌ମାନଙ୍କୁ ନିଯୁକ୍ତ ଦିଆ-ଗଲା ଏବଂ ରାଜସ୍ୱର ପରିମାଣ ସ୍ଥିର କରାଗଲା । ରାଜସ୍ୱ ଆଦାୟ ଏବଂ କୃଷକମାନଙ୍କର ତତ୍ତ୍ୱାବଧାନ ପାଇଁ ମକଦମ୍‌ମାନେ ନିଯୁକ୍ତ ହେଲେ । ଗରିବ କୃଷକମାନଙ୍କୁ ବିହନ ଓ ଗୋ-ମେଷାଦି କିଣିବା ପାଇଁ ଋଣ ଦିଆ ଯାଉଥିଲା । ସେମାନେ କିସ୍ତି ହିସାବରେ ଏହି ଋଣ ଶୁଝୁଥିଲେ । ଏହା ପୂର୍ବରୁ ଭୂରାଜସ୍ୱର କୌଣସି ପ୍ରକାର ନିର୍ଦ୍ଦିଷ୍ଟ ନିୟମ ନ ଥିବାରୁ ରାଜସ୍ୱର ବହୁତ କ୍ଷତି ହେଉଥିଲା ।

ଭୂରାଜସ୍ୱର ଏହି ସବୁ ଅସୁବିଧା ଦୂର କରିବା ପାଇଁ ମୁର୍ଶୀଦ୍ କୁଲି ଖାଁ ତିନୋଟି ପ୍ରଣାଳୀ ପ୍ରୟୋଗ କଲେ । ଯଥା— ପ୍ରଥମରେ ବର୍ଷାପାଣି ଉପରେ ନିର୍ଭର କରି ଯେଉଁ କୃଷିଜାତ ଦ୍ରବ୍ୟ ଉତ୍ପନ୍ନ କରାଯାଉଥିଲା, ସେଥିରୁ ଅର୍ଦ୍ଧେକ ସରକାର ରାଜସ୍ୱ ବାବଦରେ ପାଉଥିଲେ । ଦ୍ୱିତୀୟରେ, କୂପଦ୍ୱାରା ଜଳସେଚିତ ଜମିରୁ ଏକ ତୃତୀୟାଂଶ ରାଜସ୍ୱ ଆଦାୟ ହେଉଥିଲା; କିନ୍ତୁ ପୋଖରୀ, ନଦୀ ଏବଂ କେନାଲ ଜଳସେଚିତ ଜମିରୁ ଉତ୍ପନ୍ନ ଅନୁସାରେ

କେତେବେଳେ ବେଶି ବା କମ୍ ରାଜସ୍ୱ ଆଦାୟ ହେଉଥିଲା । କୃଷୀସ୍ୱରେ ଜଣବ ପ୍ରଣାଳୀ ମଧ୍ୟ ପ୍ରୟୋଗ କରାଯାଉଥିଲା । ଏହାର ଅର୍ଥ ହେଲା ଯେ ଜମିଗୁଡ଼ିକ ସର୍ଭେକରି ପ୍ରତ୍ୟେକ ବିଘାକୁ କେତେ ରାଜସ୍ୱ ହେବ ତାହାର ନିର୍ଦ୍ଧାରଣ କରାଯାଉଥିଲା । ଶସ୍ୟର ଆକାର ଓ ଗୁଣ ଅନୁସାରେ ଏହି କର ଧାର୍ଯ୍ୟ କରା ଯାଉଥିଲା ।

ଏହି ପ୍ରଣାଳୀ ଦ୍ୱାରା ରାଜ୍ୟର କୃଷିଜାତ ଦ୍ରବ୍ୟର ଉତ୍ପନ୍ନ ବଢ଼ିଗଲା । କୃଷକମାନେ ସୁଖସ୍ୱାଚ୍ଛନ୍ଦ୍ୟରେ ଏବଂ ସନ୍ତୋଷରେ ଜୀବନ ଅତିବାହିତ କରିବାକୁ ଲାଗିଲେ । ଫଳରେ ରାଜସ୍ୱ କର୍ମଚାରୀମାନଙ୍କର ଅତ୍ୟାଚାରରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ ଦାକ୍ଷିଣାତ୍ୟର ସମୃଦ୍ଧି ବଢ଼ିବାକୁ ଲାଗିଲା ।

ଅଉରଙ୍ଗଜେବ ଜଣେ ନୈଷ୍ଠିକ ସୁନ୍ନୀ ସମ୍ପ୍ରଦାୟର ମୁସଲମାନ ଥିଲେ । ଦାକ୍ଷିଣାତ୍ୟର ଗୋଲକୁଣ୍ଡା ଓ ବିଜାପୁରର ସୁଲତାନମାନେ ସିହା ସମ୍ପ୍ରଦାୟର ମୁସଲମାନ ଥିଲେ । ଏହି ଦୁଇ ରାଜ୍ୟକୁ କରାୟତ୍ତ କରିବା ମୋଗଲମାନଙ୍କ ଦାକ୍ଷିଣାତ୍ୟ ନୀତିର ଗୋଟିଏ ପ୍ରଧାନ ଅଙ୍ଗ ଥିଲା । ସେମାନେ ମୋଗଲମାନଙ୍କର ପ୍ରାଧାନ୍ୟ ସ୍ୱୀକାର କରିଥିଲେ ମଧ୍ୟ ନିଜ ନିଜ ରାଜ୍ୟରେ ସ୍ୱାଧୀନ ଥିଲେ । ଏହି ଧର୍ମଗତ ପାର୍ଥକ୍ୟ ଛଡ଼ା ସେମାନେ ସବୁବେଳେ ରାଜକର ଖଜଣା ଦେଉନଥିଲେ । ଏଣୁ ଅଉରଙ୍ଗଜେବ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ଧ୍ୱଂସ କରିଦେବା ପାଇଁ ଆଗ୍ରହ ପ୍ରକାଶ କଲେ ।

୧୬୩୬ ଖ୍ରୀ: ଅ: ରେ ଗୋଲକୁଣ୍ଡାର ସୁଲତାନ ଅବଦୁଲ୍ଲା କୁତବସାହ ମୋଗଲମାନଙ୍କୁ ବାର୍ଷିକ ରାଜ କର ଦେବେ ବୋଲି ସ୍ୱୀକାର କରିଥିଲେ ମଧ୍ୟ ସେ ତାହା ଦେଉ ନଥିଲେ । ଏଣୁ ଅଉରଙ୍ଗଜେବ ସୁଲତାନଙ୍କୁ ଜଣାଇ ଦେଲେ ଯେ ରାଜ କର ପରିବର୍ତ୍ତେ ସେ ତାଙ୍କର ରାଜ୍ୟର କିଛି ଅଂଶ ମୋଗଲମାନଙ୍କୁ ଛାଡ଼ି ଦିଅନ୍ତୁ । କିନ୍ତୁ ଏଥିରେ ସୁଲତାନ କୌଣସି କାର୍ଯ୍ୟାନୁଷ୍ଠାନ କଲେ ନାହିଁ । ଏହି ସମୟରେ ତାଙ୍କର ମୁଖ୍ୟମନ୍ତ୍ରୀ ମିରଜୁମଲାଙ୍କ ସହାୟତାରେ ସେ ନିଜ ରାଜ୍ୟର ପରିସୀମା ବର୍ଦ୍ଧିତ କରାଇ କର୍ଣ୍ଣାଟକ ରାଜ୍ୟକୁ ନିଜ ରାଜ୍ୟରେ ମିଶାଇ ଦେଲେ ଏବଂ ମିରଜୁମଲାଙ୍କ କାର୍ଯ୍ୟକୁଶଳତାରେ ସନ୍ତୁଷ୍ଟ ହୋଇ କର୍ଣ୍ଣାଟକ ରାଜ୍ୟକୁ ମିରଜୁମଲାଙ୍କୁ ଜାଗିର ହିସାବରେ ଦାନ କଲେ । ସମ୍ରାଟ ଶାହାଜାହାନ ସୁଲତାନଙ୍କର ଏହି କାର୍ଯ୍ୟ ପସନ୍ଦ କଲେ ନାହିଁ ଏବଂ ତାଙ୍କଠାରୁ ବହୁ ପରିମାଣରେ ଅର୍ଥ ଦାବୀ କଲେ । କିନ୍ତୁ ଠିକ୍ ଏହି ସମୟରେ ମିରଜୁମଲାଙ୍କ ପ୍ରତି ସୁଲତାନ ଅତିଶୟ ଈର୍ଷାନ୍ୱିତ ହୋଇପଡ଼ିଲେ । କାରଣ କର୍ଣ୍ଣାଟକ ରାଜ୍ୟ ମିରଜୁମଲାଙ୍କ ତତ୍ତ୍ୱାବଧାନରେ ଅତିଶୟ ଉନ୍ନତି ଲାଭ କରିବାରୁ ଏବଂ ସେ ବିଶେଷ କ୍ଷମତାପନ୍ନ ହୋଇପଡ଼ିଥିବାରୁ, ସୁଲତାନ ତାଙ୍କୁ ଦମନ କରିବା ପାଇଁ ସର୍ବତୋଭାବେ ଚେଷ୍ଟା କଲେ । ଏପରିକି ସେ ତାଙ୍କୁ ଅନ୍ଧ କରିଦେବା ପାଇଁ ଚେଷ୍ଟା କରି ବିଫଳ ହୋଇଥିଲେ । ମିରଜୁମଲା ଏହା ଜାଣିପାରି ଅଉରଙ୍ଗଜେବଙ୍କର ଆଶ୍ରୟ ନେଲେ ଏବଂ ସେ ଏହାର ସୁଯୋଗ ନେଲେ । କିନ୍ତୁ ମିରଜୁମଲାଙ୍କ ପରିବାରବର୍ଗ ସମସ୍ତେ

ସୁଲତାନଙ୍କ ଦ୍ୱାରା ବନ୍ଦୀ ହେଲେ । ଏହି ସଙ୍କଟପୂର୍ଣ୍ଣ ସମୟରେ ମିରଜୁମଲାଙ୍କ ପୁତ୍ର ମୁହାମ୍ମଦ ଅମୀନ ଅତ୍ୟନ୍ତ ଲଜ୍ଜିତ ହେବାରୁ ଏବଂ ଖୋଲା ଦରବାରରେ ସୁଲତାନଙ୍କୁ ଅପମାନିତ କରିବାରୁ, ସେ ତାଙ୍କୁ ବନ୍ଦୀ କରିବା ପାଇଁ ଆଦେଶ ଦେବା ସଙ୍ଗେ ସଙ୍ଗେ ତାଙ୍କର ସମସ୍ତ ସମ୍ପତ୍ତିକୁ ବାଜ୍ୟାପ୍ତ କଲେ । ଆଉରଙ୍ଗଜେବ ଏହି ମୁହୂର୍ତ୍ତରେ ଗୋଲକୁଣ୍ଡା ଆକ୍ରମଣ ପାଇଁ ସମ୍ରାଟଙ୍କର ଅନୁମତି ଲୋଡ଼ିଲେ । ଏଣୁ ଶାଜାହାନ ମିରଜୁମଲାଙ୍କ ପରିବାରବର୍ଗଙ୍କୁ ମୁକ୍ତ କରିଦେବା ପାଇଁ ସୁଲତାନଙ୍କୁ ଆଦେଶ ଦେଲେ ଏବଂ ଯଦି ସେ ତାହା ନ କରନ୍ତି ତାହାହେଲେ ଆଉରଙ୍ଗଜେବ ଗୋଲକୁଣ୍ଡା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବେ ବୋଲି ଜଣାଇ ଦେଲେ । ଆଉରଙ୍ଗଜେବ କିନ୍ତୁ ସୁଲତାନଙ୍କର ଉତ୍ତରକୁ ଅପେକ୍ଷା ନ କରି ଯୁଦ୍ଧ ଘୋଷଣା କଲେ ।

୧୬୫୬ ଖ୍ରୀ: ଅ: ରେ ଆଉରଙ୍ଗଜେବ ତାଙ୍କ ପୁତ୍ର ମୁହାମ୍ମଦଙ୍କୁ ବିରାଟ ସୈନ୍ୟବାହିନୀ ସହିତ ଗୋଲକୁଣ୍ଡା ବିରୁଦ୍ଧରେ ଯୁଦ୍ଧ ଯାତ୍ରା ପାଇଁ ଆଦେଶ ଦେଲେ ଏବଂ ପରେ ସେ ମଧ୍ୟ ନିଜେ ଯୁଦ୍ଧରେ ଯୋଗଦେଲେ । ଏ ଖବର ପାଇ ସୁଲତାନ ମିରଜୁମଲାଙ୍କ ପୁତ୍ର ଓ ସ୍ତ୍ରୀଙ୍କୁ ମୁକ୍ତ କରି ଦେଲେ । ସେ ମଧ୍ୟ ସମ୍ରାଟଙ୍କୁ ଲିଖିତ ଭାବରେ ଜଣାଇ ଦେଲେ ଯେ ସେ ତାଙ୍କର ବଶ୍ୟତା ସ୍ୱୀକାର କରିବା ସଙ୍ଗେ ସଙ୍ଗେ ତାଙ୍କର ଅଧୀନତା ସ୍ୱୀକାର କରୁଛନ୍ତି । କିନ୍ତୁ ସେ ଅମୀନଙ୍କର ସମ୍ପତ୍ତି ଫେରାଇ ଦେଲେ ନାହିଁ ।

ଏଣୁ ରାଜପୁତ୍ର ମୁହାମ୍ମଦ ଗୋଲକୁଣ୍ଡା ଅଭିମୁଖେ ଅଗ୍ରସର ହେଲେ । କୁତବଶାହ ଏ ସମ୍ବାଦ ପାଇ ରାଜଧାନୀର ପ୍ରତିରକ୍ଷା ପାଇଁ ୧୬,୦୦୦ ସୈନ୍ୟଙ୍କୁ ମୁତୟନ କଲେ ଏବଂ ସୈନ୍ୟ ବାହିନୀର କର୍ମଚାରୀମାନଙ୍କୁ ନିର୍ଭୟରେ ଯୁଦ୍ଧ କରିବା ପାଇଁ ପ୍ରେରଣା ଦେଇ ନିଜ ପରିବାରବର୍ଗଙ୍କ ସହ ରାଜଧାନୀ ଛାଡ଼ି ଗୋଲକୁଣ୍ଡାକୁ ଯାତ୍ରା କଲେ । ଯିବାବେଳେ ସେ ସମସ୍ତ ଧନସମ୍ପତ୍ତି ମଧ୍ୟ ସଙ୍ଗରେ ନେବାକୁ ଭୁଲିଲେ ନାହିଁ ।

ମୋଗଲ ସୈନ୍ୟମାନେ ଗୋଲକୁଣ୍ଡାର ନିକଟବର୍ତ୍ତୀ ହେବାରୁ ସେ ଅତିଶୟ ଭୟଭୀତ ହୋଇ ପଡ଼ିଲେ । ଗୋଟିଏ ବାଳକ ବା ସ୍ତ୍ରୀ ଯେପରି ଭୟରେ ଆଶ୍ରୟଶୂନ୍ୟ ଓ ହତୋତ୍ସାହ ହୋଇପଡ଼େ, ସେ ସେହିପରି ନିଜକୁ ଅନୁଭବ କଲେ । ସେ ମୋଗଲମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ବହୁ ଧନରତ୍ନ ଦେଲେ । କିନ୍ତୁ ଏହାଦ୍ୱାରା କିଛି ଫଳ ହେଲନାହିଁ । ମୋଗଲମାନେ ତାଙ୍କ ରାଜ୍ୟକୁ ଲୁଣ୍ଠନ କରି ତାଙ୍କର ପୂର୍ବପୁରୁଷ ଧରି ରଖିଥିବା ଧନରତ୍ନ ସବୁ ବୋହିନେଲେ । ଏହି ସମୟରେ ସେ ମଧ୍ୟ ବିଜାପୁର ସୁଲତାନଙ୍କ ନିକଟକୁ ମୋଗଲମାନଙ୍କ ବିରୁଦ୍ଧରେ ଲଢ଼ିବା ପାଇଁ ସାହାଯ୍ୟ ପ୍ରାର୍ଥନା କଲେ । ଆଉରଙ୍ଗଜେବ ଗୋଲକୁଣ୍ଡାର ଧନସମ୍ପଦ ଦେଖି ମୁଗ୍ଧ ହୋଇ ଯାଇଥିଲେ ଏବଂ ଏହାକୁ ସମ୍ପୂର୍ଣ୍ଣ ରୂପେ ଅଧିକାର କରିବା ପାଇଁ ଦୃଢ଼ପରିକର ହେଲେ । ସେ ସମ୍ରାଟଙ୍କୁ ଜଣାଇ ଦେଲେ ଯେ ଏହି ଧନଶାଳୀ ରାଜ୍ୟ ଗୋଲକୁଣ୍ଡା, ମୋଗଲ ସାମ୍ରାଜ୍ୟ ସହିତ ମିଶିବା ଉଚିତ ଏବଂ କୁତବଶାହଙ୍କର

ଅନୁରୋଧରେ ବା ଦାରାଙ୍କର ପ୍ରପାଗଣରେ ସେ କେବେହେଲେ ସୁଲତାନଙ୍କ ସହିତ ଶାନ୍ତି-ସ୍ଥାପନ ପାଇଁ କୌଣସି ପ୍ରସ୍ତାବ ବା ଆଦେଶ ଦେବେ ନାହିଁ ।

ଏହି ସଙ୍କଟାପନ୍ନ ମୁହୂର୍ତ୍ତରେ ଆଉରଙ୍ଗଜେବଙ୍କର ମାମୁଁ ଶାୟସ୍ତା ଖାଁ ତାଙ୍କ ସହିତ ଆସି ଯୋଗଦେଲେ । ଏହା ଫଳରେ ମୋଗଲମାନେ ସୁଲତାନଙ୍କର ପ୍ରତିରୋଧକୁ ଖୁବ୍ ସାହସର ସହିତ ବିରୋଧ କଲେ । ଶେଷରେ ସୁଲତାନ ଆଉ ପ୍ରତିରୋଧ କରିବା ଅସମ୍ଭବ ମନେ କରି ଆଉରଙ୍ଗଜେବଙ୍କର ବଶ୍ୟତା ସ୍ୱୀକାର କଲେ, ଶାନ୍ତିସ୍ଥାପନ ପାଇଁ ପ୍ରାର୍ଥନା କଲେ ଏବଂ ବକେୟା ଖଜଣା ସବୁ ମଧ୍ୟ ଦେଇଦେଲେ ।

ଇତିମଧ୍ୟରେ କୁତବସାହଙ୍କର ଏଜେଣ୍ଟମାନେ ସମ୍ରାଟଙ୍କର ରାଜଦରବାରରେ ସୁଲତାନଙ୍କ ପ୍ରତି ସମବେଦନା ଜ୍ଞାପନ କରିବା ପାଇଁ ଦାରା ଓ ଜାହାନାରାଙ୍କୁ ପ୍ରଭାବିତ କରିବାକୁ ଚେଷ୍ଟା କଲେ । ସେଠାରେ ସେମାନେ ସୁଲତାନଙ୍କର ଦୟନୀୟ ଅବସ୍ଥା ଏବଂ ଆଉରଙ୍ଗଜେବଙ୍କର ବିଶ୍ୱାସଘାତକତା ବିଷୟରେ ସମ୍ରାଟଙ୍କୁ ଜଣାଇଲେ । ସମ୍ରାଟ ନିଜ ପୁତ୍ରର ନିଷ୍ଠୁରତା ଦେଖି ସଙ୍ଗେ ସଙ୍ଗେ ଯୁଦ୍ଧ ବନ୍ଦ କରିବା ପାଇଁ ନିର୍ଦ୍ଦେଶ ଦେଲେ । ଏଣୁ ଆଉରଙ୍ଗଜେବ ସମ୍ରାଟଙ୍କର ଏହି ଆଦେଶକୁ ସ୍ୱୀକାର କରି ସୁଲତାନଙ୍କ ସହିତ ଶାନ୍ତି-ସ୍ଥାପନ କଲେ । ସୁଲତାନ କୋରାନ୍ ଛୁଇଁ ଶପଥ କଲେ ଯେ ଭବିଷ୍ୟତରେ ସମ୍ରାଟଙ୍କର ଆଦେଶକୁ କେବେହେଲେ ଅବମାନନା କରିବେ ନାହିଁ ଏବଂ ନିୟମିତ ଭାବରେ ସମସ୍ତ ରାଜସ୍ୱ ଦେଉଥିବେ । ଏହି ସମୟଠାରୁ ଗୋଲକୁଣ୍ଡା ମୋଗଲ ସାମ୍ରାଜ୍ୟର ବଶ୍ୟତା ସ୍ୱୀକାର କରି ସାମନ୍ତ ରାଜ୍ୟ ରୂପେ ପରିଗଣିତ ହେଲା । ମିରଜୁମଲା ଏବଂ ତାଙ୍କ ପୁତ୍ର ପ୍ରଭୃତି ସମସ୍ତେ ରାଜଦରବାରରେ ରହିଲେ ଏବଂ ସମ୍ରାଟଙ୍କ ଆଦେଶରେ ସେମାନଙ୍କର ପଦୋନ୍ନତି ହୋଇଥିଲା ।

ବିଜାପୁରର ସୁଲତାନ ମହମ୍ମଦ ଆଦିଲ ସାହା ଦାରାଙ୍କର ସମର୍ଥକ ଥିବାରୁ ଆଉରଙ୍ଗଜେବ ତାଙ୍କୁ ଭଲ ପାଉ ନ ଥିଲେ । ୧୬୫୬ ଖ୍ରୀ: ଅ: ରେ ସୁଲତାନଙ୍କର ମୃତ୍ୟୁ ହେବାରୁ ତାଙ୍କର ନାବାଳକ ପୁତ୍ର ଦ୍ୱିତୀୟ ଆଲି ଆଦିଲ ସାହା ୧୮ ବର୍ଷ ବୟସରେ ବିଜାପୁରର ସୁଲତାନ ହେଲେ । ଆଉରଙ୍ଗଜେବ ଏହା ଶୁଣିଲା ମାତ୍ରେ ବିଜାପୁର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବା ପାଇଁ ସମ୍ରାଟଙ୍କର ଅନୁମତି ଲୋଡ଼ିଲେ । ସେ ସମ୍ରାଟଙ୍କୁ ଲିଖିତ ଭାବରେ ଜଣାଇ ଦେଲେ ଯେ ବିଜାପୁରର ନୂତନ ସୁଲତାନ ପ୍ରକୃତରେ ମୃତ ସୁଲତାନ ଆଦିଲ ସାହାଙ୍କର ପୁତ୍ର ନୁହନ୍ତି ଏବଂ ସେ ନାଜି କରିନ ଓ ସଭାସଦ୍‌ବର୍ଗମାନଙ୍କର ଷଡଯନ୍ତ୍ରରେ ସିଂହାସନ ଆରୋହଣ କରିଥାନ୍ତି । ଏହାଛଡ଼ା ଆଦିଲ ସାହାଙ୍କ ମୃତ୍ୟୁପରେ ତାଙ୍କ ରାଜ୍ୟରେ ବିଶୃଙ୍ଖଳା ଦେଖାଗଲା । ଫଳରେ ଆଉରଙ୍ଗଜେବ ଏହାର ସୁଯୋଗ ନେଇ ବିଜାପୁର ଅଧିକାର କରିବା ପାଇଁ ସ୍ଥିର କଲେ । ଶାଜାହାନ ମଧ୍ୟ ବିଜାପୁର ରାଜ୍ୟ ସମସ୍ୟାର ସମାଧାନ ଆଉରଙ୍ଗଜେବଙ୍କ ଉପରେ ଛାଡ଼ି ଦେଲେ ଏବଂ ସେନାପତି ମିରଜୁମଲାଙ୍କୁ ବିଜାପୁର

ଆକ୍ରମଣ ପାଇଁ ଆଉରଙ୍ଗଜେବଙ୍କୁ ସାହାଯ୍ୟ କରିବା ନିମିତ୍ତ ନିର୍ଦ୍ଦେଶ ଦେଲେ, କାରଣ ମିରଜୁମଲା ଦାକ୍ଷିଣାତ୍ୟର ରାଜ୍ୟମାନଙ୍କ ସହିତ ବିଶେଷ ଭାବରେ ପରିଚିତ ଥିଲେ । ଆଉରଙ୍ଗଜେବ ବିଜାପୁରକୁ ଅଧିକାର କରି ସମ୍ପୂର୍ଣ୍ଣ ଭାବେ ମୋଗଲ ସାମ୍ରାଜ୍ୟ ସହିତ ମିଶାଇ ଦେବା ପାଇଁ ଇଚ୍ଛା କରିଥିଲେ; କିନ୍ତୁ ସମ୍ରାଟ ଏହି ପରିକଳ୍ପନା ପାଇଁ ରାଜି ନଥିଲେ । ଏହାଛଡ଼ା ସମ୍ରାଟ ଜଣାଇ ଦେଇଥିଲେ ଯେ ଯଦି ସୁଲତାନ ତାଙ୍କୁ ଦେଢ଼କୋଟି ଟଙ୍କା କ୍ଷତିପୂରଣ ବାବଦ ଦିଅନ୍ତି ଏବଂ ମୋଗଲ ସମ୍ରାଟଙ୍କର ପ୍ରଭୁତ୍ୱ ସ୍ୱୀକାର କରନ୍ତି, ତାହାଲେ ଆଉରଙ୍ଗଜେବ ତାଙ୍କ ପ୍ରତି କୋହଳ ନୀତି ପ୍ରଦର୍ଶନ କରିବେ ।

ଏହି ଯୁଦ୍ଧର ବିଶେଷ କାରଣ ଥିବା ଜଣାଯାଏ ନାହିଁ । ବିଜାପୁର ଗୋଟିଏ ସ୍ୱାଧୀନ ରାଜ୍ୟ ଏବଂ ମୋଗଲମାନଙ୍କର ଗୋଟିଏ ବନ୍ଧୁରାଷ୍ଟ୍ର ଥିଲା । ତେଣୁ ବିଜାପୁର ସିଂହାସନ ଆରୋହଣ ବିଷୟରେ ହସ୍ତକ୍ଷେପ କରିବା ମୋଗଲ ସମ୍ରାଟଙ୍କର କୌଣସି ଆଇନଗତ ଅଧିକାର ନ ଥିଲା । କିନ୍ତୁ ନାବାଳକ ସୁଲତାନଙ୍କର ଦୁର୍ବଳତା ଏବଂ ସ୍ୱାର୍ଥାନ୍ୱେଷୀ ବର୍ଗମାନଙ୍କର ମନୋମାଳିନ୍ୟ ଯୋଗୁ ଆଉରଙ୍ଗଜେବ ବିଜାପୁର ଆକ୍ରମଣ କରିବାପାଇଁ ସୁଯୋଗ ପାଇଲେ । ଏହାପରେ ଆଉରଙ୍ଗଜେବ ଓ ମିରଜୁମଲା ବିଜାପୁର ଆକ୍ରମଣ କଲେ ଏବଂ ବିଦାର ଦୁର୍ଗ ଅବରୋଧ କଲେ ।

ବିଦାର ଦୁର୍ଗ ୪୧୬୩୧ ମିଟର ପରିମିତ ଏବଂ ୧୧ ମିଟର ଉଚ୍ଚ ପ୍ରାଚୀର ପରିବେଷ୍ଟିତ । ଏହାର ଚାରିପଟେ ୨୩ ମିଟର ଗଭୀରତା ବିଶିଷ୍ଟ ଗଡ଼ଖାଇ ଥିଲା । ଏହା ମଧ୍ୟରେ ରାଜପ୍ରାସାଦ, ସରକାରୀ ଅଫିସ ଓ ଅସ୍ତ୍ରଶସ୍ତ୍ର ଭଣ୍ଡାର ଥିଲା । ସିଦି ମରଜନ ଏହି ଦୁର୍ଗର କିଲ୍ଲାଦାର ବା ତତ୍ତ୍ୱାବଧାରକ ଥିଲେ । ସେ ଭୀଷଣ ଭାବରେ ମୋଗଲମାନଙ୍କ ସହିତ ଯୁଦ୍ଧକଲେ । କିନ୍ତୁ ଦୁର୍ଭାଗ୍ୟକୁ ଦୁର୍ଗ ମଧ୍ୟରେ ଏକ ଭୟଙ୍କର ବିସ୍ଫୋରଣ ହେବା ଫଳରେ ସିଦି ମରଜନ ଏବଂ ତାଙ୍କର ଦୁଇ ପୁତ୍ର ପୋଡ଼ି ହୋଇଗଲେ ଏବଂ ସେମାନଙ୍କୁ ଅର୍ଦ୍ଧଦଗ୍ଧ ଅବସ୍ଥାରେ ଉଦ୍ଧାର କରାଗଲା । ଏହି ଦୁର୍ଘଟଣା ପରେ ତାଙ୍କ ସୈନ୍ୟମାନେ ହତୋତ୍ସାହ ହୋଇ ପଡ଼ିଲେ ଏବଂ ମୋଗଲମାନଙ୍କ ନିକଟରେ ଆତ୍ମସମର୍ପଣ କରିବା ଛଡ଼ା ଅନ୍ୟ କିଛି ଉପାୟ ପାଇଲେ ନାହିଁ । ଦୀର୍ଘ ୨୭ ଦିନ ଯୁଦ୍ଧ ପରେ ଦୁର୍ଗର ଚାବି ଆଉରଙ୍ଗଜେବଙ୍କ ନିକଟକୁ ପଠାଇ ଦିଆଗଲା । ଆଉରଙ୍ଗଜେବ ଦୁର୍ଗ ଅଧିକାର କରିବା ସଙ୍ଗେ ସଙ୍ଗେ ବହୁ ଧନରତ୍ନ ମଧ୍ୟ ହସ୍ତଗତ କଲେ । ସେ ଏହି ବିଜୟ ଉତ୍ସାହରେ ନଗର ପରିକ୍ରମା କରିଥିଲେ ଏବଂ ସେଠାରେ ସମ୍ରାଟଙ୍କ ନାମରେ ମୁଦ୍ରା ପଢ଼ାଇଲେ ।

ବିଜାପୁରବାସୀମାନେ ଏହି ପରାଜୟର ଗ୍ଳାନିକୁ ଏଡ଼ିଦେବାପାଇଁ ପ୍ରଧାନମନ୍ତ୍ରୀ ଖୁଲବାର୍ଗଠାରେ ସେନାପତି ଖାଁ ମୁହାମ୍ମଦ ଓ ଅଫଜଲଙ୍କ ନେତୃତ୍ୱରେ ସୈନ୍ୟବାହିନୀ ଠୁଳ କରାଇଲେ । ଆଉରଙ୍ଗଜେବ ଏ ସମ୍ବାଦ ପାଇ ମହାବତ ଖାଁଙ୍କୁ ଏହାର ପ୍ରତିରୋଧ କରିବା ପାଇଁ ପଠାଇଲେ । ମୋଗଲମାନେ ବହୁତ୍ ସାହସର ସହିତ ସେମାନଙ୍କୁ ମୁକାବିଲା ପରାସ୍ତ କଲେ ଏବଂ ବହୁ ସୈନ୍ୟ ଓ ସାଧାରଣ ଲୋକେ ଏଥିରେ ନିହତ ହେଲେ ।

ଏହାପରେ ଆଉରଙ୍ଗଜେବ ବିଦାରଠାରୁ ୭୫ କିଲୋମିଟର ଦୂରରେ ଥିବା ପ୍ରାଚୀନ ଚାଲୁକ୍ୟମାନଙ୍କର ରାଜଧାନୀ କଲ୍ୟାଣୀଠାରେ ପହଞ୍ଚି ତାକୁ ଅବରୋଧ କଲେ । ଏଠାରେ ସାମ୍ରାଜ୍ୟବାଦୀମାନଙ୍କ ଉପରେ ସୁଲତାନଙ୍କର ସୈନ୍ୟମାନେ ଦିଲୱାର ଖାଁଙ୍କର ଅଧୀନରେ ଦିନରାତି ଗୋଳାବର୍ଷଣ କଲେ । ଉଭୟ ପକ୍ଷରୁ ଖୁବ୍ ଭୀଷଣ ଭାବରେ ଯୁଦ୍ଧ ହେଲା । କିନ୍ତୁ ଶେଷରେ ଦିଲୱାର ଖାଁ ପରାସ୍ତ ହେଲେ ଏବଂ ମୋଗଲମାନେ ୧୬୫୭ ଖ୍ରୀ: ଅ: ରେ କଲ୍ୟାଣୀ ଅଧିକାର କଲେ । ତା'ପରେ ସେମାନେ ବିଜାପୁର ଆକ୍ରମଣ କରି-ଥିଲେ । କିନ୍ତୁ ଠିକ୍ ଏହି ସମୟରେ ଯୁଦ୍ଧ ବନ୍ଦ କରିବା ପାଇଁ ସମ୍ରାଟଙ୍କଠାରୁ ଆଦେଶ ଆସିଲା । କାରଣ ସୁଲତାନଙ୍କର ଲୋକମାନେ ଏବଂ ଦାରାଙ୍କର ପ୍ରଭାବ ଯୋଗୁ ସମ୍ରାଟ ନିଜର ମତ ପରିବର୍ତ୍ତନ କରି ଏହି ନିର୍ଦ୍ଦେଶ ଦେଇଥିଲେ । ଏହାଦ୍ୱାରା ସମ୍ରାଟ କିନ୍ତୁ ଗୋଟିଏ ଭୁଲ କରିବସିଲେ । ଦାକ୍ଷିଣାତ୍ୟରେ ଆଉରଙ୍ଗଜେବଙ୍କର ଚତୁରତା, ସାହସ ଓ କୂଟନୀତି କି ପ୍ରକାର ପ୍ରଭାବ ପକାଇଥିଲା ତାହା ସେ ବୁଝିପାରି ନ ଥିଲେ ।

ଶେଷରେ ବିଜାପୁର ସୁଲତାନଙ୍କ ସହିତ ଶାନ୍ତି ସ୍ଥାପିତ ହେଲା । ସେ ଦେଢ଼ କୋଟି ଟଙ୍କା କ୍ଷତିପୂରଣ ଦେଲେ ଏବଂ ମୋଗଲମାନଙ୍କୁ ବିଦାର, କଲ୍ୟାଣୀ ଓ ପରେଣ୍ଡା ଦୁର୍ଗ ସମର୍ପଣ କଲେ । ଶାଜାହାନ କିନ୍ତୁ ଏହି କ୍ଷତିପୂରଣ ଅଧକୋଟିକୁ କମାଇ ଦେଇଥିଲେ ଏବଂ ଉଲ୍ଲାସର ସହିତ ଏହି ଶାନ୍ତି ଚୁକ୍ତିକୁ ଅନୁମୋଦନ କରିଥିଲେ । ପରେ ପରେ ସେ ଆଉରଙ୍ଗଜେବଙ୍କୁ ବିଦାର ଫେରି ଆସିବା ପାଇଁ ଆଦେଶ ଦେଇଥିଲେ ।

ଏହି ସମୟରେ ଶାଜାହାନ ପୀଡ଼ିତ ହୋଇପଡ଼ିବାରୁ ମୋଗଲ ସିଂହାସନ ଲାଭ ପାଇଁ ଭାଇମାନଙ୍କ ମଧ୍ୟରେ ପ୍ରତିଯୋଗିତା ଆରମ୍ଭ ହେଲା ଏବଂ ଶେଷରେ ତାହା ଭ୍ରାତୃ ଯୁଦ୍ଧରେ ପରିଣତ ହେଲା ।



# ତୃତୀୟ ଅଧ୍ୟାୟ

## ସିଂହାସନ ପାଇଁ ଭ୍ରାତୃ ବିବାଦ

୧୬୫୭ ଖ୍ରୀ: ଅ: ରେ ହଠାତ୍ ଶାଜାହାନ ଗୁରୁତର ଭାବରେ ପୀଡ଼ିତ ହୋଇ-ପଡ଼ିଲେ। ଏହି ସମ୍ବାଦ ପ୍ରଚାରିତ ହେବା ମାତ୍ରେ ତାଙ୍କ ପୁତ୍ରମାନେ ଗୃହ ଯୁଦ୍ଧରେ ଲିପ୍ତ ହେଲେ। ତାଙ୍କର ଚାରି ଜଣ ପୁତ୍ର ପ୍ରାପ୍ତ ବୟସ୍କ ଥିଲେ। କିନ୍ତୁ ପ୍ରତ୍ୟେକଙ୍କର ଚରିତ୍ର ଓ ଲକ୍ଷ୍ୟ ଅନ୍ୟଠାରୁ ଭିନ୍ନ ଥିଲା। ପ୍ରତ୍ୟେକେ ପ୍ରତ୍ୟେକଙ୍କ ପ୍ରତି ପ୍ରତିଦ୍ୱନ୍ଦ୍ୱୀ-ମନୋଭାବ ପରିପୋଷଣ କରୁଥିଲେ। ଏକ ମାତୃଗର୍ଭରୁ ଜାତ ହୋଇ ମଧ୍ୟ ସେମାନଙ୍କ ମଧ୍ୟରେ ସୁସମ୍ପର୍କ ନ ଥିଲା ଏବଂ ପ୍ରତ୍ୟେକେ ରାଜସିଂହାସନ ପାଇଁ ଲାଳାୟିତ ଥିଲେ। ଅନ୍ୟ ରାଜ-ପୁତ୍ରମାନେ ଦାରାଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ପଡ଼ିଥିଲେ। ଶାଜାହାନ ନିଜ ପିତା ଜାହାଙ୍ଗୀରଙ୍କ ବିରୁଦ୍ଧରେ ବିଦ୍ରୋହ କରିଥିଲେ। ସୁଜା ମୋଗଲ ସାମ୍ରାଜ୍ୟର ପୂର୍ବରେ ଥିବା ବଙ୍ଗଦେଶର ଶାସନକର୍ତ୍ତା ରୂପେ ଏବଂ ମୁରାଦ-ବକ୍ସ ଗୁଜରାଟର ଶାସନକର୍ତ୍ତା ଭାବରେ ନିଯୁକ୍ତ ହୋଇଥିଲେ। ଜ୍ୟେଷ୍ଠ ପୁତ୍ର ଦାରା, ମୁଲତାନ ଏବଂ କାବୁଲର ଶାସକ ରୂପେ କାର୍ଯ୍ୟ ଚଲାଉଥିଲେ। କିନ୍ତୁ ସେ ଏହି ଦୁଇ ରାଜ୍ୟର ଶାସନ ଭାର ଅନ୍ୟମାନଙ୍କ ଉପରେ ନ୍ୟସ୍ତ କରି ସମ୍ରାଟଙ୍କର ଇଚ୍ଛା ଅନୁସାରେ ଦିଲ୍ଲୀରେ ରହି ପିତାଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ। ଆଉରଙ୍ଗଜେବ ଦାକ୍ଷିଣାତ୍ୟର ଶାସନକର୍ତ୍ତାରୂପେ ନିଯୁକ୍ତ ହୋଇଥିଲେ। ଏହାବ୍ୟତୀତ ପିତାଙ୍କ ପ୍ରତି ସେମାନଙ୍କର ସର୍ବଦା ବିଦ୍ରୋହ ମନୋଭାବ ଥିଲା। ଏଣୁ ପ୍ରତ୍ୟେକ ରାଜପୁତ୍ର ସମ୍ରାଟଙ୍କର ନିମ୍ନପଦସ୍ଥ କର୍ମଚାରୀ ବୋଲି ନ ଭାବି, ନିଜକୁ ସ୍ୱାଧୀନ ଓ ସାର୍ବଭୌମ ଶାସକ ବୋଲି ବିଚାର କରୁଥିଲେ। ସେମାନେ ରାଜ୍ୟର ଶାସନ ପରିଚାଳନା କରିବା ସଙ୍ଗେ ସଙ୍ଗେ ଖଜଣା ଆଦାୟ କରି ସେଥିରେ ସୈନ୍ୟ ବିଭାଗକୁ ସୁଦୃଢ଼ କରୁଥିଲେ। ଆଗରୁ ସେମାନେ ଜାଣିପାରିଥିଲେ ଯେ ଭବିଷ୍ୟତରେ ଶାଜାହାନଙ୍କର ମୃତ୍ୟୁ ପରେ ସିଂହାସନ ପାଇଁ ଭ୍ରାତୃ ବିବାଦ ଅବଶ୍ୟମ୍ଭାବୀ।

ଶାଜାହାନ ଯେତେବେଳେ ୧୬୫୭ ଖ୍ରୀ: ଅ: ସେପ୍ଟେମ୍ବର ମାସ ୬ ତାରିଖରେ ପୀଡ଼ିତ ହେଲେ, ସେତେବେଳେ ଦାରା ତାଙ୍କ ନିକଟରେ ଉପସ୍ଥିତ ରହି ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ। ଚିକିତ୍ସକଙ୍କ ପରାମର୍ଶ ଅନୁସାରେ ସେ ଅକ୍ଟୋବର ମାସ ୧୮ ତାରିଖରେ ଜଳବାୟୁ ପରିବର୍ତ୍ତନ ପାଇଁ ଆଗ୍ରା ଯାଇଥିଲେ ଏବଂ ଆଗ୍ରା ଦୁର୍ଗରେ ଅବସ୍ଥାନ କଲେ। କିନ୍ତୁ ଆଉରଙ୍ଗଜେବଙ୍କ ନିଷ୍ଠୁର ନିର୍ଦ୍ଦେଶ ଅନୁସାରେ ସେ ତାଙ୍କ ଜୀବନର ଅବଶିଷ୍ଟ ସମୟ ବନ୍ଦୀ ହିସାବରେ ଆଗ୍ରା ଦୁର୍ଗର କାରାଗାରରେ କଟାଇବାକୁ ବାଧ୍ୟ ହୋଇଥିଲେ। ଯେତେ-ବେଳେ ସମ୍ରାଟ ଜାଣିପାରିଲେ ଯେ, ସେ ଏହି ପୀଡ଼ିତ ଅବସ୍ଥାରୁ ଭଲ ହେବେ ନାହିଁ,

ଯେତେବେଳେ ଦାରାଙ୍କୁ ସାର୍ବଭୌମ ଶାସକରୂପେ ଗ୍ରହଣ କରିନେବା ପାଇଁ ଉଚ୍ଚ କର୍ମଚାରୀ ଏବଂ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କୁ ପରାମର୍ଶ ଦେଇଥିଲେ । ପ୍ରଜା ଓ ସୈନ୍ୟମାନଙ୍କର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେବା ପାଇଁ ଦାରାଙ୍କୁ ମଧ୍ୟ ଉପଦେଶ ଦେଇଥିଲେ । ଏଣୁ ଦାରା ସମ୍ରାଟଙ୍କ ନାମରେ ନାମକୁ ମାତ୍ର ଶାସନ ପରିଚାଳନା କରିବାକୁ ଲାଗିଲେ । କିନ୍ତୁ ଶାଜାହାନଙ୍କର ଶାରୀରିକ ଅସୁସ୍ଥତା ଯୋଗୁ ସେ ରାଜଦରବାରରେ ବହୁଦିନ ପର୍ଯ୍ୟନ୍ତ ଅନୁପସ୍ଥିତ ରହିବାରୁ, ସମସ୍ତ ବାୟୁମଣ୍ଡଳ ବିଷାକ୍ତ ହୋଇ ଉଠିଲା । ଦାରାଙ୍କର ଦୃଢ଼ ପ୍ରତିଶ୍ରୁତି ସତ୍ତ୍ୱେ, ସମ୍ରାଟଙ୍କର ଯେ ମୃତ୍ୟୁ ହୋଇଛି ଏବଂ ଦାରା ସିଂହାସନ ଅଧିକାର କରିବା ପାଇଁ ଏହି ସମ୍ବାଦକୁ ଲୁଚାଇ ରଖିଛନ୍ତି ବୋଲି ସମସ୍ତେ ସନ୍ଦେହ କଲେ । ଏହି ସମ୍ବାଦ ରାଜ୍ୟର ଦୂରଦୂରାନ୍ତକୁ ମଧ୍ୟ ବିଦ୍ୟୁତ୍ ବେଗରେ ବ୍ୟାପିଗଲା । ଏଣୁ ରାଜ୍ୟରେ ଯେ ଆସନ୍ନ ଭବିଷ୍ୟତରେ ଗୋଟିଏ ବିଦ୍ରୋହର ବହ୍ନି ଜଳି ଉଠିବ, ତାହା ସମସ୍ତେ ଚିନ୍ତା କରିବା ସଙ୍ଗେ ସଙ୍ଗେ ଏହାର ସମ୍ମୁଖୀନ ହେବା ପାଇଁ ପ୍ରସ୍ତୁତ ହୋଇ ରହିଲେ ।

ଏହି ସମୟରେ ଦାରା ମଧ୍ୟ ଦିଲ୍ଲୀ, ଆଗ୍ରା ଏବଂ ଅନ୍ୟାନ୍ୟ ରାଜ୍ୟରୁ ଶକ୍ତିଶାଳୀ ସୈନ୍ୟ ସଂଗ୍ରହ କରି ସାରିଥିଲେ । ପ୍ରତ୍ୟେକ ଭାଇମାନେ ନିଜ ନିଜର ବନ୍ଧୁ, ସହୋଦର, ସାହାଯ୍ୟକାରୀମାନଙ୍କ ପାଖକୁ ସାହାଯ୍ୟ ପାଇଁ ପତ୍ର ଲେଖିଲେ ଏବଂ ଏହି ଅନ୍ତର୍ଯୁଦ୍ଧରେ ନିୟୁକ୍ତ ହେଲେ, ସେମାନଙ୍କର ଏହି ସାହାଯ୍ୟ ପାଇଁ ସେମାନଙ୍କୁ ବିଭିନ୍ନ ପ୍ରକାର ପ୍ରତିଶ୍ରୁତିମାନ ଦେଇଥିଲେ ।

ସମ୍ରାଟଙ୍କ ମୃତ୍ୟୁ ହୋଇଛି ବୋଲି ଯେତେବେଳେ ଗୁଜବ ପ୍ରଚାରିତ ହୋଇଗଲା, ଯେତେବେଳେ ମୋଗଲ ସିଂହାସନ ଅଧିକାର ପାଇଁ ଉତ୍ତରାଧିକାରୀମାନେ ସଶସ୍ତ୍ର ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ମୋଗଲ ସମ୍ରାଟମାନଙ୍କ ମୃତ୍ୟୁ ପରେ ପୁତ୍ରମାନଙ୍କ ମଧ୍ୟରେ ସିଂହାସନ ଆରୋହଣ କରିବାର ଅଧିକାର ସାବ୍ୟସ୍ତ କରିବା ପାଇଁ କୌଣସି ପ୍ରକାର ନିୟମ ପ୍ରଣୟନ କରାଯାଇ ନ ଥିଲା । ଏଣୁ ସମ୍ରାଟଙ୍କ ମୃତ୍ୟୁ ପରେ ସିଂହାସନ ଅଧିକାର କରିବା ପାଇଁ ଭ୍ରାତୃ ଯୁଦ୍ଧ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା । ମୋଗଲ ଦରବାରରେ ମଧ୍ୟ ନାନା ପ୍ରକାର ବିଶୃଙ୍ଖଳା ଦେଖାଗଲା ଓ ଦୋକାନ ବଜାର ବହୁଦିନ ପର୍ଯ୍ୟନ୍ତ ବନ୍ଦ ହୋଇରହିଲା । ଫଳରେ ଆଗ୍ରାର ଜନସାଧାରଣ ଆତଙ୍କିତ ହୋଇପଡ଼ିଲେ ।

ଦାରା ସମ୍ରାଟଙ୍କର ପୀଡ଼ିତାବସ୍ଥାରେ ରାଜ୍ୟର ଶାସନ କାର୍ଯ୍ୟ ପରିଚାଳନା କରୁଥିବାରୁ, ନିଜର ସ୍ୱାର୍ଥ ସାଧନ ପାଇଁ ନିଜର ଉଦ୍ଦେଶ୍ୟକୁ ପ୍ରକାଶ ନ କରିବାକୁ ସର୍ବଦା ଚେଷ୍ଟା କରୁଥିଲେ । ସେ ବଙ୍ଗଦେଶ, ଗୁଜରାଟ ଓ ଦାକ୍ଷିଣାତ୍ୟକୁ ଦୂତ ପ୍ରେରଣ ନ କରିବା ପାଇଁ ରାସ୍ତା ବନ୍ଦ କରିଦେଲେ । ଦାରାଙ୍କର ଏହି ପ୍ରକାର କଠୋର ବୁଦ୍ଧି ଯୋଗୁ ଜମିଦାର, ଅମୀର ଏବଂ ଉମ୍ରାଓମାନେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଉଠିଲେ । ଦାରାଙ୍କର ଆଉରଙ୍ଗଜେବଙ୍କୁ କେବଳ ମାତ୍ର ଭୟ ଥିଲା, ଏଣୁ ନିଜକୁ ଶକ୍ତିଶାଳୀ କରିବା ପାଇଁ ଯେଉଁ ସେନାଧ୍ୟକ୍ଷ

ଓ କର୍ମଚାରୀମାନେ ଆଉରଙ୍ଗଜେବଙ୍କୁ ବିଜାପୁର ଅବରୋଧ ସମୟରେ ସାହାଯ୍ୟ କରିଥିଲେ, ସେମାନଙ୍କୁ ରାଜଧାନୀକୁ ଡକାଇ ଆଣିବା ପାଇଁ ସେ ସମ୍ରାଟଙ୍କୁ ବହୁତ ବାଧ୍ୟ କରିଥିଲେ ।

ସୁଜା ଏହି ସମ୍ବାଦ ଶୁଣିବା ମାତ୍ରେ ପ୍ରଚାର କଲେ ଯେ ଦାରା ସମ୍ରାଟଙ୍କୁ ବିଷ ଦେଇ ହତ୍ୟା କରିଛନ୍ତି । ଏଣୁ ସେ ନିଜକୁ ବଙ୍ଗଦେଶର ସମ୍ରାଟ ବୋଲି ତତ୍‌କ୍ଷଣାତ୍ ଘୋଷଣା କରି ସଙ୍ଗେ ସଙ୍ଗେ ଆଗ୍ରାଆଡ଼କୁ ଅଗ୍ରସର ହେଲେ ଏବଂ ନିଜ ନାମାଙ୍କିତ ମୁଦ୍ରାମାନ ପ୍ରଚଳନ କଲେ । ଏହାଛଡ଼ା ନିଜ ନାମରେ ଖୁତ୍‌ବା ପଢ଼ିବା ପାଇଁ ଆଦେଶ ଦେଲେ ।

ମୁରାଦ ତେଣେ ଏହି ଗୁଜବ ସମ୍ବାଦ ଶୁଣି ନିଜକୁ ଗୁଜରାଟର ସମ୍ରାଟ ବୋଲି ଘୋଷଣା କରି ନିଜ ନାମାଙ୍କିତ ମୁଦ୍ରା ପ୍ରଚଳନ କଲେ । ଏହାଛଡ଼ା ବେଗମ ଜାହାନାରାଙ୍କୁ ଯେଉଁ ସୁରାଟ ବନ୍ଦର ସମର୍ପଣ କରାଯାଇଥିଲା ତାକୁ ସେ ଲୁଣ୍ଠନ କଲେ । ଜାହାନାରାଙ୍କର ଦେଓ୍ବାନ, ମିରଅଲି ନାକଙ୍କୁ ସେ ହତ୍ୟା କଲେ । ଏହାପରେ ମୁରାଦ ଆଗ୍ରା ଆଡ଼କୁ ଅଗ୍ରସର ହେଲେ ।

ଆଉରଙ୍ଗଜେବ ଜଣେ ଅତି ଉଚ୍ଚକୋଟିର ରାଜନୀତିଜ୍ଞ ଥିବାରୁ, ସେ ଏହି ସମ୍ବାଦ ପାଇ ଆଦୌ ଅସ୍ଥିରତା ପ୍ରକାଶ କଲେ ନାହିଁ । ସେ ଧୀରସ୍ଥିର ଭାବରେ ଏହି ଖେଳ ଖେଳିବାକୁ ଲାଗିଲେ । ସେ ନିଜେ ପ୍ରସ୍ତୁତ ହୋଇ ଠିକ୍ ସମୟରେ ଏହାର ମୁକାବିଲା ପାଇଁ ଅପେକ୍ଷା କରି ରହିଲେ । ସେ ଜାଣି ଜାଣି ଦାରା, ଆଳସ୍ୟପରାୟଣ ତଥା ଆମୋଦପ୍ରିୟ ସୁଜା ଏବଂ ନିର୍ଭୀକ, ନିର୍ବୋଧ ମୁରାଦଙ୍କୁ ସମ୍ମୁଖକୁ ପଠାଇ ଦେଇ ନିଜେ ପରିଣାମର ଫଳ ପାଇଁ ଅପେକ୍ଷା କରି ରହିଲେ । ଦାରା ଆଗ୍ରାରେ ନିଜର ଆଧିପତ୍ୟ ବିସ୍ତାର କରିବାର ଶୁଣି ପାରିଥିଲେ ମଧ୍ୟ, ଆଉରଙ୍ଗଜେବ ନିଜ ତରଫରୁ କୌଣସି ବିଷୟ ଘୋଷଣା କରି ନ ଥିଲେ ବା କୌଣସି ପ୍ରତିକ୍ରିୟା ପ୍ରକାଶ କରି ନ ଥିଲେ । କାରଣ ସେ ଜାଣି ପାରିଥିଲେ ଯେ, ଯଦି ତାଙ୍କର କୌଣସି ଭାଇ ସିଂହାସନ ଆରୋହଣ କରନ୍ତି, ତାହେଲେ ତାଙ୍କର ମୃତ୍ୟୁ ସୁନିଶ୍ଚିତ । ସୁଜା ଓ ମୁରାଦ ସାହସର ସହିତ ଦାରାଙ୍କ ବିରୁଦ୍ଧରେ ପ୍ରତ୍ୟକ୍ଷ ଯୁଦ୍ଧ ଘୋଷଣା କରିଦେଲେ । ତେଣୁ ଆଉରଙ୍ଗଜେବ ତାହା ନ କରି ପରୋକ୍ଷ ଉପାୟରେ ଶେଷରେ ସିଂହାସନ ଆରୋହଣ କଲେ ।

**ସୁଜା ଓ ମୁରାଦଙ୍କ ଅଗ୍ରସର :**

ଦାରା ଅତି ଅଳ୍ପ ସମୟ ମଧ୍ୟରେ ନିଜର କ୍ଷମତା ଦୃଢ଼ ଭାବରେ ପ୍ରତିଷ୍ଠିତ କରି ସୁଜା ଓ ମୁରାଦଙ୍କ ବିରୁଦ୍ଧରେ ସୈନ୍ୟ ପ୍ରେରଣ କଲେ । ସୁଜା "ରାଜମହଲ" ଠାରେ ନିଜକୁ ମୁକୁଟମଣ୍ଡିତ କରି ଦିଲ୍ଲୀ ଅଭିମୁଖେ ଏକ ବିରାଟ ସୈନ୍ୟବାହିନୀ ସହ ଅଗ୍ରସର ହେଲେ । ସେ ପାଟରେ ବିହାର ରାଜାଙ୍କୁ ଧ୍ୱଂସ ବିଧ୍ୱସ୍ତ କରି ୧୬୫୮ ଖ୍ରୀ: ଅ: ରେ

ବାରାଣସୀଠାରେ ପହଞ୍ଚିଲେ । ଏହାଦେଖି ଦାରା ନିଜ ପୁତ୍ର ସୁଲେମାନ ସୁକୋ ଏବଂ ରାଜା ଜୟସିଂହଙ୍କ ଅଧୀନରେ ଏକ ସୈନ୍ୟଦଳ ପଠାଇଲେ । ଅନ୍ୟ ପକ୍ଷରେ ସମୟ ନଷ୍ଟ ନ କରି ସେ ମେବାରର ରାଜା ଯଶୋବନ୍ତ ସିଂହ ଏବଂ କାଶିମ ଖାଁଙ୍କ ଅଧୀନରେ ଏକ ସୈନ୍ୟ ଦଳ ମୁରାଦଙ୍କ ବିରୁଦ୍ଧରେ ପଠାଇଲେ । ମୁରାଦଙ୍କ ସହ ଆଉରଙ୍ଗଜେବଙ୍କର ସମସ୍ତ ସମ୍ପର୍କ ଛିନ୍ନ କରିଦେବା ପାଇଁ ସେ ସେମାନଙ୍କୁ ଆଦେଶ ଦେଇଥିଲେ । ଦାରା ଅନ୍ୟ ଭାଇମାନଙ୍କ ଅପେକ୍ଷା ଆଉରଙ୍ଗଜେବଙ୍କର ଗତିବିଧିକୁ ଅତି ଉତ୍କଣ୍ଠିତ ହୃଦୟରେ ଲକ୍ଷ୍ୟ କରୁଥିଲେ । କିନ୍ତୁ ଦାରା ଯଦି ପ୍ରଥମେ ତାଙ୍କର ସମସ୍ତ ଶକ୍ତି ମୁରାଦଙ୍କ ପରିବର୍ତ୍ତେ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ନିୟୋଜିତ କରିଥାନ୍ତେ, ତାହାଲେ ସେ ଏହି ଭ୍ରାତୃ ଯୁଦ୍ଧରେ ଅବଶ୍ୟ ଜୟଯୁକ୍ତ ହୋଇଥାନ୍ତେ । ରାଜା ଜୟସିଂହ ବାରାଣସୀଠାରୁ ଆଠ କିଲୋମିଟର ଦୂରରେ ଥିବା ବାହାଦୂରଗଡ଼ଠାରେ ଅତି ସହଜରେ ସୁଜାଙ୍କୁ ପରାସ୍ତ କଲେ । କାରଣ ଜୟସିଂହ ଯେତେବେଳେ ସୁଜାଙ୍କୁ ସୂର୍ଯ୍ୟୋଦୟ ପୂର୍ବରୁ ଆକ୍ରମଣ କରନ୍ତି, ସେତେବେଳେ ସେ ଅତ୍ୟଧିକ ସୁରାପାନ ଯୋଗୁ ଅଣାୟତ୍ତ ଥିଲେ । ଏଣୁ ସେ ଯୁଦ୍ଧ ନ କରିପାରି ଜୀବନ ରକ୍ଷା ପାଇଁ ବଙ୍ଗଦେଶକୁ ପଳାୟନ କଲେ ।

**ଆଉରଙ୍ଗଜେବଙ୍କ ଚକ୍ରାନ୍ତ :**

ଆଉରଙ୍ଗଜେବ ଖୁବ୍ ରାଜନୈତିକ କୌଶଳ ପ୍ରୟୋଗକରି ଏଣେ ମୁରାଦଙ୍କ ସହ ସମ୍ପର୍କ ସ୍ଥାପନ କଲେ ଏବଂ ସୁରାଟ ଅଧିକାର କରିଥିବା ଯୋଗୁ ମୁରାଦଙ୍କୁ ଅଭିନନ୍ଦନ ଜଣାଇଥିଲେ । ଶାହାଜାହାନଙ୍କ ମୃତ୍ୟୁ ସମ୍ବାଦ ନିର୍ଧାରିତ ଭାବରେ ଜାଣିବା ପର୍ଯ୍ୟନ୍ତ ଅପେକ୍ଷା କରି ରହିବା ପାଇଁ ସେ ମୁରାଦଙ୍କ ନିକଟକୁ ଖବର ପଠାଇଲେ । ଏହାଛଡ଼ା ସେ ପ୍ରଥମେ ନିଜର ରାଜ୍ୟ ଲାଭ କରିବାର କୌଣସି ଅଭିଳାଷ ନ ଥିବାର ଛଳନା ଦେଖାଇ ମୁରାଦଙ୍କ ପକ୍ଷ ସମର୍ଥନ କରି ଯୁଦ୍ଧ କରିବା ପାଇଁ ପ୍ରସ୍ତୁତ ହେଲେ ଏବଂ ମୁରାଦଙ୍କୁ ନିଜ ପକ୍ଷଭୁକ୍ତ କରିପାରିଲେ ଦାରାଙ୍କୁ ପରାସ୍ତ କରିବା ଅତି ସହଜ ହେବ ବୋଲି ଚିନ୍ତା କଲେ । ଏଣୁ ସେ ଈଶ୍ୱର ଏବଂ କୋରାନ୍‌କୁ ସାକ୍ଷୀ ରଖି ମୁରାଦଙ୍କ ସହ ଚୁକ୍ତିବଦ୍ଧ ହୋଇ ତାଙ୍କୁ ନିଜ ପକ୍ଷଭୁକ୍ତ କଲେ । ଏହି ଚୁକ୍ତିରେ ଉଭୟେ ରାଜ୍ୟ ବଣ୍ଟନ ପାଇଁ ମଧ୍ୟ ସ୍ୱୀକୃତି ପ୍ରଦାନ କଲେ । ଚୁକ୍ତି ଅନୁସାରେ, ମୁଗଲ ରାଜ୍ୟର ଉତ୍ତରରେ ଥିବା ପଞ୍ଜାବ, ଆଫଗାନିସ୍ଥାନ, କାଶ୍ମୀର ଓ ସିନ୍ଧୁପ୍ରଦେଶ ପାଇଲେ ଏବଂ ଅବଶିଷ୍ଟ ରାଜ୍ୟ ଆଉରଙ୍ଗଜେବଙ୍କ ଅଧୀନରେ ରହିଲା । ଏହା ବ୍ୟତୀତ ଏହି ଯୁଦ୍ଧରେ ଜୟଯୁକ୍ତ ହେଲେ, ସେ ମୁରାଦଙ୍କୁ ଧର୍ମଯାତ୍ରା ପାଇଁ ମକ୍‌କାକୁ ପଠାଇ ଦେବେ ବୋଲି ଆଭାସ ଦେଇଥିଲେ । ଦାରା ଉଦାରପ୍ରିୟ ଏବଂ ହିନ୍ଦୁମାନଙ୍କ ପ୍ରତି ସହନଶୀଳ ଥିବାରୁ, ତାଙ୍କୁ କାଫେର ବୋଲି କହି ଦୁହେଁ ଦୋଷାରୋପ କରିଥିଲେ ।

ଏହି ସମସ୍ତ ଯୋଜନା କରିସାରି ଆଉରଙ୍ଗଜେବ ଗୋଲକୁଣ୍ଡା ଓ ବିଜାପୁର ଶାସନଭାର ନିଜର ଜଣେ ଅନ୍ତରଙ୍ଗ ବନ୍ଧୁଙ୍କ ହସ୍ତରେ ଅର୍ପଣ କଲେ ଏବଂ ଶିବାଜୀଙ୍କୁ

ଦାକ୍ଷିଣାତ୍ୟରେ କିଛି ଅଂଶ ଛାଡ଼ି ଦେଇ, ମୁରାଦଙ୍କ ସହ ଯୋଗ ଦେବା ପାଇଁ ଅଗ୍ରସର ହେଲେ । ଦାରାଙ୍କୁ ଲକ୍ଷ୍ୟ ଭ୍ରଷ୍ଟ କରିବା ପାଇଁ ସେ ପାରସ୍ୟର ସାହାଙ୍କୁ "ଅଫଗାନିସ୍ଥାନ" ଆକ୍ରମଣ ପାଇଁ ଉତ୍ସାହିତ କଲେ । ଆଉରଙ୍ଗଜେବ ମଧ୍ୟ ଦାରାଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ କେତେକ ଇଉରୋପୀୟ ବନ୍ଧୁକଧାରୀମାନଙ୍କୁ ନିଯୁକ୍ତ କରିଥିଲେ ।

ଏହି ସମୟରେ ମୁରାଦ ଗୁଜରାଟରୁ ଆସି ଉଜ୍ଜୟିନୀ ନିକଟରେ ଥିବା ଦିନାଜପୁର-ଠାରେ ଆଉରଙ୍ଗଜେବଙ୍କ ସହିତ ମିଳିତ ହେଲେ । ତତ୍ପରେ ଉଭୟେ ମିଳିତ ଭାବରେ ଉଜ୍ଜୟିନୀ ଆଡ଼କୁ ଅଗ୍ରସର ହେଲେ ଏବଂ ଧର୍ମାଟ୍ ବୋଲି ଗୋଟିଏ ଗ୍ରାମରେ ଶିବିର ସ୍ଥାପନ କରି ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ରହିଲେ । ଦାରାଙ୍କ ଉପରେ ଆଉରଙ୍ଗଜେବଙ୍କର ସମସ୍ତ ରାଗ ଠୁଳ ହୋଇଥିଲା । କାରଣ ଦାରା ଶାଜାହାନଙ୍କର ପୀଡ଼ିତାବସ୍ଥାରେ ନିଜକୁ ନିରଙ୍କୁଶ ଶାସକ ହିସାବରେ ଅବସ୍ଥାପିତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ସେ ମଧ୍ୟ ଦାକ୍ଷିଣାତ୍ୟରେ ଆଉରଙ୍ଗଜେବଙ୍କର ପ୍ରାଧାନ୍ୟ ଲୋପ କରିଦେବା ପାଇଁ, ପାର୍ଶୀ କୁମୁଲମାନଙ୍କୁ ଦାକ୍ଷିଣାତ୍ୟର ସୈନ୍ୟ ପରିଚାଳନାର ଭାର ଦେଇଥିଲେ । କିନ୍ତୁ ନିୟତିର ନିୟମ ଭିନ୍ନ ପ୍ରକାର । ଆଉରଙ୍ଗଜେବଙ୍କର ସୌଭାଗ୍ୟକୁ ଦାକ୍ଷିଣାତ୍ୟର ସୈନ୍ୟ ପରିଚାଳନାର ଦାୟିତ୍ୱରେ ଥିବା ଅମୀରମାନଙ୍କର ସାହାଯ୍ୟ ଓ ସହାନୁଭୂତି ସେ ପୂର୍ଣ୍ଣ ଭାବରେ ପାଇ ପାରିଥିଲେ ।

ଏହି ଅବସ୍ଥାରେ ସମ୍ରାଟ ନିଜର ପୀଡ଼ିତାବସ୍ଥା ବର୍ଣ୍ଣନା କରି ଆଉରଙ୍ଗଜେବଙ୍କ ନିକଟକୁ ପୁନଃପୁନଃ ସମ୍ବାଦ ପଠାଇ ତାଙ୍କୁ ଦାକ୍ଷିଣାତ୍ୟ ଫେରିଯିବା ପାଇଁ ଆଦେଶ ଦେଲେ । କିନ୍ତୁ ସେତେବେଳକୁ ସବୁ ବିଳମ୍ବ ହୋଇ ଯାଇଥିଲା । ଏହାଛଡ଼ା ଦାରା ସମ୍ରାଟଙ୍କ ନାମରେ ଜାଲ୍ ଚିଠିମାନ ପଠାଉଛନ୍ତି ବୋଲି ସେମାନେ ସନ୍ଦେହ କଲେ ଏବଂ ସମ୍ରାଟଙ୍କର ମୃତ୍ୟୁ ହୋଇଛି ବା ସେ ମୁମୂର୍ଷୁ ବୋଲି ସେମାନେ ନିଶ୍ଚିତ ହେଲେ । ଆଉରଙ୍ଗଜେବ ଓ ମୁରାଦ ଏଣୁ ଘୋଷଣା କଲେ ଯେ ଯଦି ସମ୍ରାଟ ଜୀବିତ ଥା'ନ୍ତି, ତାହାହେଲେ ଏହି ଯୁଦ୍ଧ ପରେ ସେମାନେ ତାଙ୍କ ପାଦ ତଳେ ପଡ଼ି କ୍ଷମା ଭିକ୍ଷା କରିବା ସଙ୍ଗେ ସଙ୍ଗେ ଦାରାଙ୍କ ଅତ୍ୟାଚାରରୁ ସମସ୍ତଙ୍କୁ ମୁକ୍ତ କରିବେ । ଏହି ସମୟରେ ଆଉରଙ୍ଗଜେବ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ରାଜା ଯଶୋବନ୍ତ ସିଂହଙ୍କ ନିକଟକୁ ଏକ ବାର୍ତ୍ତା ଦେଇ ପଠାଇଲେ ଯେ "ମୁଁ ମୋର ପିତାଙ୍କ ସହିତ ସାକ୍ଷାତ କରିବାକୁ ଚାହେଁ, ମୁଁ ଯୁଦ୍ଧ କରିବାକୁ ଚାହେଁ ନାହିଁ । ଏଣୁ ଆପଣ ମୋ ସହିତ ଯିବେ କିମ୍ବା ମୋର ଯିବା ପାଇଁ ରାସ୍ତା ଖୋଲି ରଖିବେ । ଏହା ଫଳରେ ଅଯଥା ରକ୍ତପାତ ହେବ ନାହିଁ ।" କିନ୍ତୁ ଆଉରଙ୍ଗଜେବ ତାଙ୍କଠାରୁ ଏପରି ଏକ ଅପମାନସୂଚକ ଉତ୍ତର ପାଇଲେ ଯେ, ବାଧ୍ୟହୋଇ ଉଭୟ ପକ୍ଷ ଯୁଦ୍ଧ ପାଇଁ ଧର୍ମାଟଠାରେ ପ୍ରସ୍ତୁତ ହୋଇ ରହିଲେ ।

## ଧର୍ମାଟ ଯୁଦ୍ଧ :

ଧର୍ମାଟଠାରେ ୧୬୫୮ ଖ୍ରୀ: ଅ: ଏପ୍ରିଲ ମାସ ୧୫ ତାରିଖରେ ଉଭୟଙ୍କ ପକ୍ଷରୁ ତୁମୁଳ ଯୁଦ୍ଧ ହେଲା । କାଶିମ ଖାଁ ଏବଂ ଅନ୍ୟାନ୍ୟ ମୋଗଲ ସେନାପତିମାନେ ବିଶ୍ୱାସ-ଘାତକତା କରି ଯୁଦ୍ଧରୁ ପଳାୟନ କଲେ । ରାଜପୁତ୍ରମାନେ ଶେଷ ପର୍ଯ୍ୟନ୍ତ ଖୁବ୍ ସାହସର ସହିତ ଯୁଦ୍ଧ କଲେ । ଏହି ଯୁଦ୍ଧରେ ୮୦୦୦ ରାଜପୁତ୍ର ସୈନ୍ୟ ଯୋଗ ଦେଇଥିଲେ ଏବଂ କେବଳ ମାତ୍ର ୬୦୦ ସୈନ୍ୟ ଯୁଦ୍ଧରୁ ପଳାୟନ କରି ଜୀବନ ରକ୍ଷା କରିପାରିଥିଲେ । ନିଜର ସମରକୌଶଳ ହେତୁ ଆଉରଙ୍ଗଜେବ ଯୁଦ୍ଧରେ ବିଜୟୀ ହେଲେ । ଯଶୋବନ୍ତ ସିଂହ କ୍ଷତ ବିକ୍ଷତ ଅବସ୍ଥାରେ ଯୁଦ୍ଧକ୍ଷେତ୍ରରୁ ମେବାର ପଳାୟନ କଲେ । କିନ୍ତୁ ତାଙ୍କର ପତ୍ନୀ ମହାରାଣୀ ଦୁର୍ଗର ଦ୍ୱାର ଫିଟାଇଲେ ନାହିଁ ଏବଂ ଅନ୍ୟାନ୍ୟ ରାଜପୁତ୍ରଙ୍କ ପରି ସେ ଯୁଦ୍ଧରେ ପ୍ରାଣ ନ ଦେଇ ପଳାଇ ଆସିଥିବାରୁ ତାଙ୍କୁ ତିରସ୍କାର ଓ ଭର୍ତ୍ସନା କଲେ । ଏହାଦେଖି ଦାରା ତାଙ୍କ ପୁତ୍ର ସୁଲେମାନ୍ ସୁକୋଙ୍କୁ ବିହାରରୁ ଡକାଇ ପଠାଇଲେ । ସେ ବିଳମ୍ବରେ ଆସି ପହଞ୍ଚିବାରୁ କୌଣସି ଫଳ ହେଲା ନାହିଁ ।

ଯଶୋବନ୍ତ ସିଂହଙ୍କର ପଳାୟନ ମୋଗଲ ସୈନ୍ୟମାନଙ୍କର ପରାଜୟର ଏକମାତ୍ର କାରଣ ନୁହେଁ । ଏହି ପରାଜୟର ଅନ୍ୟାନ୍ୟ କାରଣ ମଧ୍ୟ ରହିଅଛି । ଯଶୋବନ୍ତଙ୍କ ଅଧୀନରେ ବିଭିନ୍ନ ସମ୍ପ୍ରଦାୟର ସୈନ୍ୟମାନେ ଥିଲେ ଏବଂ ସମସ୍ତଙ୍କର ତାଙ୍କପ୍ରତି ଏକ ପ୍ରକାର ଆନୁଗତ୍ୟ ନ ଥିଲା । ତାଙ୍କ ସୈନ୍ୟ ଦଳରେ ରାଜପୁତ୍ର, ହିନ୍ଦୁ ଏବଂ ମୁସଲମାନ-ମାନଙ୍କ ମଧ୍ୟରେ ସର୍ବଦା ବିଭେଦ ଲାଗି ରହିଥିଲା । ମୁସଲମାନ ସୈନ୍ୟମାନେ ମଧ୍ୟ ହିନ୍ଦୁ ସେନାଧ୍ୟକ୍ଷଙ୍କ ଅଧୀନରେ ଯୁଦ୍ଧ କରିବାକୁ ଇଚ୍ଛୁକ ନ ଥିଲେ । ଏହାଛଡ଼ା ବିପଦଗାମୀ ରାଜ-ପୁତ୍ରମାନଙ୍କ ସହିତ ଯୁଦ୍ଧ ପରିବର୍ତ୍ତେ ଉଦ୍ରୋଚିତ ବ୍ୟବହାର କରିବା ପାଇଁ ସମ୍ରାଟଙ୍କର ନିର୍ଦ୍ଦେଶ ଥିଲା; କିନ୍ତୁ ଅନ୍ୟପକ୍ଷରେ ଦାରା ଏହି ବିଦ୍ରୋହୀମାନଙ୍କୁ ସମୂଳେ ନିର୍ମୂଳ କରିଦେବା ପାଇଁ ସୈନ୍ୟମାନଙ୍କୁ କଠୋର ଆଦେଶ ଦେଇଥିଲେ । ଏହି ଦ୍ୱିମତ ଯୋଗୁ ମୋଗଲ ସୈନ୍ୟମାନେ ନିଷ୍ଠାର ସହିତ ଯୁଦ୍ଧ କରି ପାରିଲେ ନାହିଁ । ଏହା ବ୍ୟତୀତ ମୋଗଲ ସୈନ୍ୟ ବିଭାଗରେ ଥିବା କେତେକଙ୍କର ଆଉରଙ୍ଗଜେବଙ୍କ ସହିତ ଗୁପ୍ତ ଚକ୍ରାନ୍ତ ଯୋଗୁ ମୋଗଲ ସୈନ୍ୟମାନେ ଦୁର୍ବଳ ହୋଇ ପଡ଼ିଥିଲେ । ତେଣୁ ଯଶୋବନ୍ତ ସିଂହଙ୍କର ସମସ୍ତ ଚେଷ୍ଟା ପଣ୍ଡ ହେଲା । ପ୍ରଥମରୁ ମଧ୍ୟ ଉଭୟ ପକ୍ଷ ଏହି ଯୁଦ୍ଧରୁ ନିବୃତ୍ତ ରହିବା ପାଇଁ ଚେଷ୍ଟା କରି-ଥିଲେ । କିନ୍ତୁ ତାହା ବୃଥା ହେଲା । ଯଦି ଯଶୋବନ୍ତ ସିଂହ ଆଉରଙ୍ଗଜେବଙ୍କ ଉପରେ ଅତର୍କିତ ଭାବରେ ଆକ୍ରମଣ କରିଥାଆନ୍ତେ, ତାହାହେଲେ ହୁଏତ ମୋଗଲ ଇତିହାସର ଗତି ପରିବର୍ତ୍ତିତ ହୋଇ ଯାଇଥାନ୍ତା; ଅର୍ଥାତ୍ ଆଉରଙ୍ଗଜେବ ପରାସ୍ତ ହୋଇ ଯାଇଥାନ୍ତେ ଏବଂ ଦାରାଙ୍କ ନେତୃତ୍ୱରେ ପୁଣି ହିନ୍ଦୁ, ରାଜପୁତ୍ରମାନଙ୍କର ପ୍ରାଧାନ୍ୟ ମୋଗଲ ଦରବାରରେ ବଢ଼ି ଯାଇଥାନ୍ତା । ଏହା ଫଳରେ ଇଂରେଜ ବଣିକମାନଙ୍କର ଭାରତକୁ ଆସିବା ମଧ୍ୟ

ଦୁଃସାଧ୍ୟ ହୋଇ ପଡ଼ିଥାନ୍ତା । ଉପରୋକ୍ତ କାରଣଗୁଡ଼ିକ ଯୋଗୁ ମୋଗଲ ସୈନ୍ୟମାନେ ଯୁଦ୍ଧରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ ।

ଧର୍ମାଟ ଯୁଦ୍ଧରେ ବିଜୟୀ ହେବା ଯୋଗୁ ଆଉରଙ୍ଗଜେବଙ୍କର ସମ୍ମାନ ଓ ଗୌରବ ବଢ଼ିଗଲା ଏବଂ ସେ ବହୁ ସମ୍ପତ୍ତି ତଥା ଯୁଦ୍ଧ ସାମଗ୍ରୀର ଅଧିକାରୀ ହେଲେ । ତତ୍ପରେ ଗୋଆଲିୟର ଅଭିମୁଖେ ଅଗ୍ରସର ହେଲେ । ଚମ୍ବଲ ଅତିକ୍ରମ କରି ଆଗ୍ରାଠାରୁ ୧୫ କିଲୋମିଟର ଦୂରରେ ଥିବା ସାମୁଗଡ଼ଠାରେ ସେ ଶିବିର ସ୍ଥାପନ ପୂର୍ବକ ଅବସ୍ଥାନ କଲେ ।

ଏହି ଯୁଦ୍ଧରେ ନିଜ ପକ୍ଷର ପରାଜୟ ଖବର ଶୁଣି ଦାରା ଅତ୍ୟନ୍ତ ବିଚଳିତ ହୋଇ ପଡ଼ିଲେ । ଫଳରେ ରାଜଧାନୀରେ ଉତ୍ତେଜନା ଓ ତୁମୁଳ କୋଳାହଳ ପ୍ରକାଶ ପାଇଲା । ଏହି ପରାଜୟ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନେବା ପାଇଁ ବହୁ ଯୋଜନା ଚିନ୍ତା କରାଗଲା । ଏପରିକି ରୁଗ୍ଣ ଶାଜାହାନ ନିଜେ ମୋଗଲସୈନ୍ୟମାନଙ୍କର ନେତୃତ୍ୱ ନେଇ ବିଦ୍ରୋହୀ ଆଉରଙ୍ଗଜେବଙ୍କର ସମ୍ମୁଖୀନ ହେବା ପାଇଁ ଇଚ୍ଛା ପ୍ରକାଶ କଲେ । ଯଦି ସେ ଏହା କରିପାରିଥାନ୍ତେ ତାହାହେଲେ, ଏହି ଯୁଦ୍ଧର ଫଳାଫଳ ଅବଶ୍ୟ ଅନ୍ୟ ପ୍ରକାର ହୋଇ ଥାଆନ୍ତା । ତାଙ୍କର ପୁତ୍ରମାନେ ନିଜର ପିତାଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ କ୍ୱଚିତ୍ ସାହସ କରିଥାନ୍ତେ ଏବଂ ସୈନ୍ୟମାନେ ମଧ୍ୟ ତାଙ୍କର ପ୍ରିୟ ସମ୍ରାଟଙ୍କ ପ୍ରତି ଶେଷ ପର୍ଯ୍ୟନ୍ତ ଆନୁଗତ୍ୟ ସ୍ୱୀକାର କରି ପ୍ରାଣପଣେ ଯୁଦ୍ଧ କରିଥାନ୍ତେ । କିନ୍ତୁ ଏହା ସମ୍ଭବ ହୋଇ ପାରିଲା ନାହିଁ । ଦାରା ଯଶୋବନ୍ତ ସିଂହଙ୍କର ପରାଜୟ ଯୋଗୁ ରାଗରେ ଅତିଶୟ ଉତ୍‌କ୍ଷିପ୍ତ ହୋଇ ପଡ଼ିଲେ ଏବଂ ଏହି ଅପମାନର ପ୍ରତିଶୋଧ ନିଜେ ନିଜ ହାତରେ ନେବେ ବୋଲି ପ୍ରତିଜ୍ଞାବଦ୍ଧ ହେଲେ । ସେ ନିଜେ ଏହି ଅନିଶ୍ଚିତ ବିଜୟ ଉଲ୍ଲାସର ସ୍ୱାଦ ଚାଖିବା ପାଇଁ ଆଉ କାଳ ବିଲମ୍ବ ନ କରି ଯଥା ଶୀଘ୍ର ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । କାରଣ ଆଉରଙ୍ଗଜେବଙ୍କର ସୈନ୍ୟମାନେ ନିକଟରେ ଯୁଦ୍ଧ କରି ଥିବାରୁ ଏବଂ ବହୁତ ବାଟ ଅତିକ୍ରମ କରି ଆସିଥିବାରୁ କ୍ଲାନ୍ତ ହୋଇ ପଡ଼ିଥିଲେ । ଶାଜାହାନ ମଧ୍ୟ ସେତେବେଳେ ଦାରାଙ୍କର ଉଗ୍ରମୂର୍ତ୍ତି ଦେଖି ତାଙ୍କୁ ବାଧା ଦେବା ପାଇଁ ସାହସ କରି ପାରି ନ ଥିଲେ । କାରଣ ସେତେବେଳେ ସମସ୍ତ ମୋଗଲ ସୈନ୍ୟମାନେ ଦାରାଙ୍କର ଆୟତ୍ତରେ ଥିଲେ । ଦାରା ୧,୦୦,୦୦୦ ଅଶ୍ୱାରୋହୀ, ୨୦,୦୦୦ ପଦାତିକ ଏବଂ ୮୦ଟି ବନ୍ଧୁକ ନେଇ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ଯୁଦ୍ଧ ପାଇଁ ଅଗ୍ରସର ହେଲେ । କିନ୍ତୁ ଏହି ସୈନ୍ୟମାନଙ୍କ ମଧ୍ୟରେ ଉଲ୍ଲାସ ପରିବର୍ତ୍ତେ ବିମର୍ଷ ଭାବ ଦେଖା ଯାଉଥିଲା । ରାଜଦରବାରର ସମସ୍ତେ ଦାରାଙ୍କର ବିଜୟ ଲାଭ ପ୍ରତି ଅନିଶ୍ଚିତତା ପ୍ରକାଶ କରୁଥିଲେ ।

**ସାମୁଗଡ଼ ଯୁଦ୍ଧ :**

ଦାରା ଏହି ବିରାଟ ସୈନ୍ୟବାହିନୀ ସହ ୧୬୫୮ ଖ୍ରୀ: ଅ: ଜୁନ ମାସ ୭ ତାରିଖରେ ସାମୁଗଡ଼ଠାରେ ଉପସ୍ଥିତ ହେଲେ । ଏହି ସାମୁଗଡ଼କୁ ପରେ ଫତେବାଦ ବା "ବିଜୟ

ସ୍ଥାନ’’ ବୋଲି କୁହାଗଲା । ଯୁଦ୍ଧକ୍ଷେତ୍ରରେ ତିନେ ଦୁଇ ଦିନ ପର୍ଯ୍ୟନ୍ତ ସେମାନେ ପରସ୍ପରର ଗତିବିଧିକୁ ଲକ୍ଷ୍ୟ ବା ପର୍ଯ୍ୟବେକ୍ଷଣ କଲେ । ଯୁଦ୍ଧରେ ଆଉରଙ୍ଗଜେବ ନିଜକୁ ସୈନ୍ୟ-ଶୃଙ୍ଖଳାର କେନ୍ଦ୍ରରେ ରଖି, ମୁରାଦଙ୍କୁ ବାମରେ ଏବଂ ବାହାଦୁର ଖାଁଙ୍କୁ ଡାହାଣରେ ରଖିଥିଲେ । ନିଜ ପୁତ୍ର ମୁହାମ୍ମଦଙ୍କୁ ଆଗୁଆ ତୋପକମାଣ ବାହିନୀର ଦାୟିତ୍ୱରେ ରଖିଲେ । ଦାରାସିଖ ସେହିପରି ନିଜେ କେନ୍ଦ୍ରରେ ରହି ସୈନ୍ୟ ପରିଚାଳନା କଲେ ଏବଂ ଖଲିଲୁଲ୍ଲା ଖାଁଙ୍କୁ ଡାହାଣରେ ଓ ରୁସ୍ତମ ଖାଁଙ୍କୁ ବାମରେ ରଖି ସୈନ୍ୟଚାଳନା କରିବାକୁ ନିର୍ଦ୍ଦେଶ ଦେଲେ । ତାଙ୍କ ପୁତ୍ର ସିପିର ସୁଖୋ ଆଗୁଆ ବାହିନୀ ଦାୟିତ୍ୱରେ ରହିଲେ । ସେ ପ୍ରଥମେ ତୋପ, ଦ୍ୱିତୀୟରେ କମାଣଯୁକ୍ତ ଓଷ୍ଟ୍ରବାହିନୀ, ତୃତୀୟରେ ବନ୍ଧୁକଧାରୀ ପଦାତିକ ସୈନ୍ୟ ଏବଂ ସର୍ବଶେଷରେ ବର୍ଚ୍ଛାଧାରୀ ସୈନ୍ୟମାନଙ୍କୁ ସଜାଗ ହୋଇ ରହିବାକୁ ଆଦେଶ ଦେଲେ । ପ୍ରଥମରୁ କୁହାଯାଇଛି ଯେ ଦାରା ଜଣେ ସୁଦକ୍ଷ ସେନାପତି ନ ଥିଲେ । ଏହାଛଡ଼ା ତାଙ୍କର ସେନାଧ୍ୟକ୍ଷ ଖଲିଲୁଲ୍ଲା ଖାଙ୍କର ମଧ୍ୟ ଏହି ଯୁଦ୍ଧରେ ଆନ୍ତରିକତା ନ ଥିଲା । ସେ ଧର୍ମମୁଦ୍ରା ବିନିମୟରେ ସହଜରେ ଶତ୍ରୁମାନଙ୍କ ଦ୍ୱାରା କ୍ରୀତ ହୋଇ ଯାଉଥିଲେ । ରାଜପୁତ୍ର-ମାନେ ମଧ୍ୟ ମୁସଲମାନମାନଙ୍କ ସହିତ ଐକ୍ୟ ରଖିପାରୁ ନ ଥିଲେ । ଅନ୍ୟ ପକ୍ଷରେ ସୁସଂଗଠିତ ଆଉରଙ୍ଗଜେବଙ୍କର ସୈନ୍ୟ ଦଳରେ ହିନ୍ଦୁ ଓ ମୁସଲମାନମାନେ ଐକ୍ୟ ବା ସମତା ରକ୍ଷା କରୁଥିଲେ ଏବଂ ସେମାନଙ୍କର ବହୁ ଦୁର୍ଦ୍ଧର୍ଷ ଯୁଦ୍ଧର ଅଭିଜ୍ଞତା ଥିଲା । ଯୁଦ୍ଧରେ ସୈନ୍ୟ ବ୍ୟବସ୍ଥା ତାଙ୍କର ଅତି ଉଚ୍ଚକୋଟିର ଥିଲା । ଏଣୁ ଆଉରଙ୍ଗଜେବ ଯେ ଏହି ଯୁଦ୍ଧରେ ଜୟଯୁକ୍ତ ହେବେ, ତାହା ପୂର୍ବରୁ ସମସ୍ତଙ୍କୁ ଜଣାଥିଲା ।

ଏହି ଭୟଙ୍କର ଶେଷ ଯୁଦ୍ଧଟି ୧୬୫୮ ମସିହା ମେ ମାସ ୨୯ ତାରିଖ ପ୍ରଭାତରେ ଆରମ୍ଭ ହେଲା । ଦୁଇ ପକ୍ଷର ପଦାତିକ, ଓଷ୍ଟ୍ରବାହିନୀ, ସାଙ୍ଗୁଆ ବାହିନୀ, ଗଜାରୋହୀ ଓ ଅଶ୍ୱାରୋହୀମାନେ ପରସ୍ପରକୁ ଅତି ତୀବ୍ର ଭାବରେ ଆକ୍ରମଣ କଲେ । ଯୁଦ୍ଧ ଭୂମିର ଆକାଶ ତୋପ ଓ କମାଣ ଗର୍ଜନରେ ପ୍ରକମ୍ପିତ ହେଲା ଏବଂ ତୀର ଓ ବର୍ଚ୍ଛାରେ ଆକାଶ ସତେ ଯେପରି ଆଚ୍ଛାଦିତ ହୋଇଗଲା । ସିପିର- ସୁଖୋ ଏବଂ ରୁସ୍ତମ ଖାଁଙ୍କର ଅଧୀନରେ ଥିବା ଆଗୁଆ ବାହିନୀ ୧୨,୦୦୦ ଅଶ୍ୱାରୋହୀ ସହିତ ରାଜପୁତ୍ର ମୁହାମ୍ମଦଙ୍କ ଆଡ଼କୁ ଅଗ୍ରସର ହେଲେ । ଫଳରେ ମୁହାମ୍ମଦଙ୍କର ସୈନ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖାଗଲା । ଏହି ସମୟରେ ରୁସ୍ତମଙ୍କର ହସ୍ତୀ ଦେହରେ ଗୁଳି ବାଜିବାରୁ ସେ ଭୟଭୀତ ହୋଇ ପଳାଇଗଲେ । ସିପିର ମଧ୍ୟ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ ।

ରୁସ୍ତମଙ୍କର ପରାଜୟରେ ବିରକ୍ତ ହୋଇ ଦାରା ୨୦,୦୦୦ ଅଶ୍ୱାରୋହୀ ସହ ଆଗେଇ ଆସିଲେ ମଧ୍ୟ ପଛଘୁଞ୍ଚା ଦେବାକୁ ବାଧ୍ୟ ହୋଇଥିଲେ । ଏହାପରେ ରାଜପୁତ୍ର-ମାନେ ଖୁବ୍ ଭୟଙ୍କର ମୁରାଦଙ୍କ ଉପରେ ଚଢ଼ାଉ କଲେ । ମୁରାଦ ଏହି ପ୍ରଚଣ୍ଡ ଆକ୍ରମଣକୁ ପ୍ରତିରୋଧ କରି ନ ପାରି ପଳାଇ ଯାଉଥିଲେ । ଏହି ସମୟରେ ରାଜା ରାମସିଂହ

ମୁରାଦଙ୍କ ହସ୍ତୀ ଆଡ଼କୁ ଝୁଙ୍କି ପଡ଼ି ପଚାରିଲେ କ'ଣ ? "ତୁମେ ଦାରାଙ୍କ ସହିତ ସିଂହାସନ ପାଇଁ ଝଗଡ଼ା କରୁଛ ?" ଏହା କହୁ କହୁ ସେ ମୁରାଦଙ୍କର ହସ୍ତୀର ଜିନ୍‌ର ପଟି କାଟି ଦେବା ପାଇଁ ବର୍ଚ୍ଛା ନିକ୍ଷେପ କଲେ ସତ; କିନ୍ତୁ ନିଜେ ମୃତ୍ୟୁ ବରଣ କଲେ । ସେହିପରି ରାଠୋରର ରାଜା ରୂପସିଂହ ଜୀବନର ସମସ୍ତ ମାୟା ମମତା ତ୍ୟାଗକରି ଆଉରଙ୍ଗଜେବଙ୍କର ହସ୍ତୀ ତଳେ ପଶିଯାଇ ଜିନ୍‌ର ପଟି କାଟି ଦେବାକୁ ଚେଷ୍ଟା କଲାବେଳେ ମୃତ୍ୟୁ ମୁଖରେ ପଡ଼ିଲେ । ଏହା ଫଳରେ ବହୁ ରାଜପୁତ୍ର ସୈନ୍ୟ ନିହତ ହେଲେ ଏବଂ ସେମାନଙ୍କ ହଳଦିଆ ପୋଷାକ ଯୋଗୁ ଯୁଦ୍ଧଭୂମି ହରିଦ୍ରାବର୍ଣ୍ଣ ଧାରଣ କଲା ।

ଦାରା ଗୋଟିଏ ଉଚ୍ଚ ହସ୍ତୀ ଉପରେ ବସି ଯୁଦ୍ଧ କରୁଥିଲେ । ସେ ଆଉରଙ୍ଗଜେବଙ୍କ ଆଡ଼କୁ ବୀରତ୍ୱର ସହିତ ଅଗ୍ରସର ହେଲେ ଏବଂ ଶତ୍ରୁ ପକ୍ଷର ବହୁ ତୋପ ଧ୍ୱଂସ କରିଦେବା ସଙ୍ଗେ ସଙ୍ଗେ ଓଷ୍ଟ୍ରବାହିନୀ ଓ ପଦାତିକ ବାହିନୀକୁ ବିବ୍ରତ କରି ପକାଇଲେ । ଯୁଦ୍ଧ ଏତେ ଭୟଙ୍କର ଆକାର ଧାରଣ କଲା ଯେ ତୂଣୀର ଖାଲି ହୋଇଗଲା ପରେ ସେ ଏବଂ ତାଙ୍କର ସୈନ୍ୟମାନେ ଶତ୍ରୁ ସୈନ୍ୟମାନଙ୍କୁ ବିତାଡ଼ିତ କରିବା ପର୍ଯ୍ୟନ୍ତ ଖଣ୍ଡାଧରି ହାତାହାତି ଯୁଦ୍ଧ ଆରମ୍ଭ କରିଦେଲେ । ଯୁଦ୍ଧର ଏହି ସଙ୍କଟପୂର୍ଣ୍ଣ ମୁହୂର୍ତ୍ତରେ ସାରା ଦିନଟି ପ୍ରାୟତଃ ଆଉରଙ୍ଗଜେବଙ୍କ ବିପକ୍ଷରେ ଯିବାର ଦେଖାଗଲା । ଯୁଦ୍ଧରେ ବହୁ ଅଶ୍ୱାରୋହୀ ହତାହତ ହେବାପରେ ଆଉରଙ୍ଗଜେବ କେବଳ ମାତ୍ର ପ୍ରାୟ ୧୦୦୦ ସୈନ୍ୟଙ୍କୁ ନେଇ ଦାରାଙ୍କର ଆକ୍ରମଣ ପାଇଁ ପ୍ରସ୍ତୁତ ହୋଇ ରହିଲେ ଏବଂ ଖୋଦା ବା ଈଶ୍ୱରଙ୍କ ନାମରେ ସୈନ୍ୟମାନଙ୍କୁ ଉତ୍ସାହିତ କରିବାକୁ ଲାଗିଲେ । ସୌଭାଗ୍ୟର ବିଷୟ ଯେ ଦାରା ଏହି ମୁହୂର୍ତ୍ତରେ ଆଉରଙ୍ଗଜେବଙ୍କ ବିପକ୍ଷରେ ନ ଯାଇ, ତାଙ୍କର ବାମପାର୍ଶ୍ୱରେ ଥିବା ସୈନ୍ୟମାନଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଗଲେ । ଏହା ଦ୍ୱାରା ଯେ ଆଉରଙ୍ଗଜେବଙ୍କୁ ପରାସ୍ତ କରିବା ପାଇଁ ଗୋଟିଏ ପରମ ମୁହୂର୍ତ୍ତ ହରାଇ ବସିଲେ । ସେ ଯଦି ଏହି ସମୟରେ ଆଉରଙ୍ଗଜେବଙ୍କ ଉପରେ ଆକ୍ରମଣ କରି ଥାଆନ୍ତେ, ତା'ହେଲେ ଯୁଦ୍ଧର ଫଳାଫଳ ହୁଏତ ତାଙ୍କ ସପକ୍ଷରେ ଯାଇ ଥାଆନ୍ତା ।

**ଦାରାଙ୍କ ପରାଜୟ :**

ଆଉରଙ୍ଗଜେବ ଓ ମୁରାଦ ଖୁବ୍ ଦୁଃସାହସର ସହିତ ଯୁଦ୍ଧକରି ଦାରାଙ୍କର ବହୁତ କ୍ଷତି କଲେ । ଦାରାଙ୍କ ପକ୍ଷରେ ଥିବା ରାଜପୁତ୍ର ପରିଚାଳକମାନେ ମଧ୍ୟ ନିହତ ହେଲେ । ଏଣୁ ଦାରା ନିରୁତ୍ସାହିତ ହୋଇ ପଡ଼ିଲେ । ଠିକ୍ ଏହି ସମୟରେ ସେ ଏକ ବିରାଟ ଭୁଲ୍ କରି ବସିଲେ, ଯାହାକି ତାଙ୍କ ପରାଜୟର ଏକ ମୁଖ୍ୟ କାରଣ ହୋଇଥିଲା । ତାଙ୍କର ସୈନ୍ୟମାନେ ତାଙ୍କୁ ସର୍ବଦା ହସ୍ତୀ ଉପରେ ବସିଥିବାର ଲକ୍ଷ୍ୟ କରି ଯୁଦ୍ଧ କରୁଥିଲେ ଏବଂ ଏହି ଯୁଦ୍ଧରେ ଯେତେବେଳେ ସେ ଜୟଯୁକ୍ତ ହୋଇ ଥାଆନ୍ତେ, ସେତେବେଳେ ସେ ହାତୀରୁ ଓହ୍ଲାଇ ଥିଲେ କୌଣସି କ୍ଷତି ହୋଇ ନ ଥାନ୍ତା । କିନ୍ତୁ ଦୁର୍ଭାଗ୍ୟ ଯେ ଦାରା ଏହି

ହତାହତରେ ବିଶେଷତଃ ରାଜା ରାମସିଂହଙ୍କର ମୃତ୍ୟୁରେ ଏତେ ନିରାଶ ଓ ବ୍ୟଥିତ ହୋଇ ପଡ଼ିଥିଲେ ଯେ ସେ ନିଜ ହସ୍ତୀ ପୃଷ୍ଠରୁ ଅବତରଣ କରି ଗୋଟିଏ ଘୋଡ଼ାରେ ଚଢ଼ି ଯୁଦ୍ଧ କରିବା ପାଇଁ ତତ୍ପର ହେଲେ । ତାଙ୍କର ସୈନ୍ୟମାନେ ତାଙ୍କ ହାତୀର ହାଉଦା ଶୂନ୍ୟ ଦେଖି ଆତଙ୍କିତ ହୋଇ ପଡ଼ିଲେ । ଏହା ଫଳରେ ତାଙ୍କ ସୈନ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖା ଦେଲା । ଥରେ ସୈନ୍ୟମାନଙ୍କ ମଧ୍ୟରେ ବିଶୃଙ୍ଖଳା ଦେଖାଗଲେ ଆଉ ସେମାନଙ୍କୁ ଯୁଦ୍ଧ ଭୂମିରେ ଶୃଙ୍ଖଳିତ କରିବା କଷ୍ଟକର । ଭାରତୀୟ ସୈନ୍ୟବାହିନୀର ବୈଶିଷ୍ଟ୍ୟ ଏହି ଯେ ଯେପର୍ଯ୍ୟନ୍ତ ସେମାନେ ତାଙ୍କ ମୁଖ୍ୟ ସେନାପତିଙ୍କୁ ହସ୍ତୀ ପୃଷ୍ଠରେ ବସି ସୈନ୍ୟଚାଳନା କରୁଥିବାର ଦେଖୁଥିବେ, ସେ ପର୍ଯ୍ୟନ୍ତ ସେମାନେ ସାହସର ସହିତ ଯୁଦ୍ଧ କରୁଥିବେ । ଏଣୁ ଦାରାଙ୍କର ହସ୍ତୀ ପୃଷ୍ଠ ଶୂନ୍ୟ ପଡ଼ିଥିବାର ଦେଖି ତାଙ୍କର ସୈନ୍ୟମାନଙ୍କ ମଧ୍ୟରୁ କେତେକ ଭାବିଲେ ଯେ ଦାରା ଯୁଦ୍ଧରେ ନିହତ ହୋଇଅଛନ୍ତି । ଅନ୍ୟମାନେ ଚିନ୍ତାକଲେ ଯେ ସେମାନେ ପ୍ରତାରିତ ହୋଇଅଛନ୍ତି । ଏଣୁ ସମସ୍ତେ ନିଜର ପ୍ରିୟ ଜୀବନ ବଞ୍ଚାଇବା ପାଇଁ ଯୁଦ୍ଧ ଭୂମିରୁ ପୃଷ୍ଠଭଙ୍ଗ ଦେଲେ । ନଦୀର ଜଳ ଥରେ କୂଳ ଲଙ୍ଘନ କଲେ ଯେପରି ବନ୍ଧବାଡ଼ ନମାନି ପ୍ରଖର ସ୍ରୋତରେ ଚାରିଆଡ଼କୁ ମାଡ଼ିଯାଏ, ସେହିପରି ଦାରାଙ୍କର ସୈନ୍ୟମାନେ ତାଙ୍କୁ ହସ୍ତୀ ପୃଷ୍ଠରେ ନ ଦେଖି ବିଶୃଙ୍ଖଳିତ ହୋଇ ନିଜର ଜୀବନ ବଞ୍ଚାଇବା ପାଇଁ ଯୁଦ୍ଧ ଭୂମିରୁ ଇତସ୍ତତଃ ହୋଇ ପଳାୟନ କଲେ । ମୁହୂର୍ତ୍ତିକ ମଧ୍ୟରେ ବିରାଟ ପରିବର୍ତ୍ତନ ଦେଖାଗଲା । ଗୋଟିଏ ଦିନ ଯୁଦ୍ଧରେ ଯେଉଁମାନେ ପ୍ରଥମରୁ ପରାସ୍ତ ହେବାକୁ ଯାଉଥିଲେ, ସେମାନେ ଠିକ୍ ଶେଷ ମୁହୂର୍ତ୍ତରେ ବିଜୟୀ ହେବାକୁ ଲାଗିଲେ । ପରିଶେଷରେ ହତଭାଗ୍ୟ ଦାରା ନିଜର ଜୀବନକୁ ରାଜମୁକୁଟ ଅପେକ୍ଷା ମୂଲ୍ୟବାନ ମନେକରି ଯୁଦ୍ଧ ଭୂମିରୁ ପଳାୟନ କଲେ । ଆଉରଙ୍ଗଜେବ ଯୁଦ୍ଧରେ ଜୟଯୁକ୍ତ ହେଲେ । ଆଉରଙ୍ଗଜେବ ଦାରାଙ୍କ ଶିବିରରେ ପ୍ରବେଶ କରି ତାଙ୍କର ସମସ୍ତ ଜିନିଷମାନ ଓ ତୋପ-କମାଣାଦି ଯୁଦ୍ଧାସ୍ତ୍ର ହସ୍ତଗତ କଲେ । ସେ ମଧ୍ୟ ଏହି ବିଜୟ ପାଇଁ ମୁରାଦଙ୍କୁ କୃତଜ୍ଞତା ଜଣାଇଲେ ଏବଂ ତାଙ୍କର ଶାରୀରିକ କ୍ଷତ ବିକ୍ଷତର ଶୁଶ୍ରୂଷା ପାଇଁ ଅଭିଜ୍ଞ ଚିକିତ୍ସକ ନିଯୁକ୍ତ କଲେ । ଏହି ସମୟରେ ଦାରାଙ୍କର ସଙ୍କଟାପନ୍ନ ଅବସ୍ଥା କୌଣସି ଭାଷାରେ ବ୍ୟକ୍ତ କରିହେବ ନାହିଁ । ଯୁଦ୍ଧରେ ପରାସ୍ତ ହୋଇ ସେ ସିପିରଙ୍କ ସହିତ ପଳାୟନ କଲେ । ସେ ଏତେ ମର୍ମାହତ ଓ ଲଜ୍ଜିତ ହୋଇଥିଲେ ଯେ, ଶାଜାହାନଙ୍କୁ ମଧ୍ୟ ସାକ୍ଷାତ କଲେ ନାହିଁ । ଶାଜାହାନ ଏହି ଦାରୁଣ ଦୁଃସମ୍ବାଦ ପାଇ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଲେ । ସଙ୍ଗେ ସଙ୍ଗେ ଦିଲ୍ଲୀକୁ ସମ୍ବାଦ ପଠାଇ ସେ ସ୍ଥାନୀୟ ଶାସକବର୍ଗମାନଙ୍କୁ, ଦାରାଙ୍କୁ ସାହାଯ୍ୟ କରିବା ପାଇଁ ଆଦେଶ ଦେଲେ ଏବଂ କିଛି ଅର୍ଥ ଓ ୫,୦୦୦ ଅଶ୍ୱାରୋହୀ ତାଙ୍କ ନିକଟକୁ ପଠାଇଲେ ।

**ଆଉରଙ୍ଗଜେବଙ୍କ ଆଗ୍ରା ଯାତ୍ରା :**

ଚତୁର ଆଉରଙ୍ଗଜେବ ଏହି ଯୁଦ୍ଧ ପରେ ତତ୍କ୍ଷଣାତ୍ ଆଗ୍ରା ଅଭିମୁଖେ ଯାତ୍ରା ନ କରି, ସାମୁଗଡ଼ଠାରେ ତାଙ୍କ ପିତାଙ୍କର ଅମାତ୍ୟମାନଙ୍କ ସହ ମନ୍ତ୍ରଣା କଲେ । ସେ

ସେମାନଙ୍କୁ ତାଙ୍କ ପକ୍ଷ ଅବଲମ୍ବନ କରିବା ପାଇଁ ପ୍ରବର୍ତ୍ତାଇଥିଲେ । ଯେଉଁ କର୍ମଚାରୀମାନେ ଆଉରଙ୍ଗଜେବଙ୍କ ସହିତ ଯୋଗ ଦେଇଥିଲେ, ସେମାନଙ୍କ ମଧ୍ୟରେ ମନ୍ତ୍ରୀ ଆସଫ୍ ଖାଁଙ୍କର ପୁତ୍ର ଓ ମମତାଜ ମହଲଙ୍କ ଭାଇ ଖାନ-ଜାହାନ-ଶାୟସ୍ତା ଖାଁ ଅନ୍ୟତମ । ଶାୟସ୍ତ ଖାଁଙ୍କର ଶାଜାହାନଙ୍କ ଉପରେ ଅପରିସୀମ ପ୍ରଭାବ ଥିଲା । ସେ ଶାଜାହାନଙ୍କୁ, ଆଉରଙ୍ଗଜେବଙ୍କ ପ୍ରତି କ୍ରୋଧ ଓ ଭର୍ତ୍ସନା ପରିବର୍ତ୍ତେ ପିତୃସ୍ନେହ ତଥା ଶ୍ରଦ୍ଧା ପ୍ରଦର୍ଶନ କରିବା ପାଇଁ ପରାମର୍ଶ ଦେଇଥିଲେ । ଏଣୁ ଶାଜାହାନ ତାଙ୍କ ବିଜୟୀ ପୁତ୍ର ଆଉରଙ୍ଗଜେବଙ୍କ ନିକଟକୁ "ଆଲମଗୀର" ନାମାଙ୍କିତ ହୋଇଥିବା ଗୋଟିଏ ଖଣ୍ଡା ଉପଢୌକନ ରୂପେ ପଠାଇଥିଲେ । "ଆଲମଗୀର"ର ଅର୍ଥ ହେଲା "ପୃଥିବୀ ବିଜୟୀ" ବା "ବିଶ୍ୱ ବିଜେତା" । ସେହିପରି ବଙ୍ଗ ଦେଶରେ, ସୁଜାଙ୍କୁ ପରାସ୍ତ କରିଥିବା ରାଜା ଜୟସିଂହ ମଧ୍ୟ ଦାରାଙ୍କର ପତନ ପରେ ଆଉରଙ୍ଗଜେବଙ୍କ ସହିତ ସମ୍ପର୍କ ସ୍ଥାପନ କଲେ । ମହାରାଜା ଯଶୋବନ୍ତ ସିଂହ ମଧ୍ୟ ତାଙ୍କ ପ୍ରତି ରାଜଭକ୍ତି ପ୍ରଦର୍ଶନ କଲେ ।

ଏହିସବୁ ସମର୍ଥନ ପାଇସାରିବା ପରେ ଆଉରଙ୍ଗଜେବ ଆଗ୍ରା ଆଡ଼କୁ ଅଗ୍ରସର ହେଲେ ଏବଂ ବାଘିନୁର (Bagh-i-Nur) ଠାରେ ଶିବିର ପକାଇ ରହିଲେ । ସେଠାରୁ ସେ ଶାଜାହାନଙ୍କ ନିକଟକୁ କ୍ଷମା ପ୍ରାର୍ଥନା କରି ଖଣ୍ଡିଏ ପତ୍ର ଲେଖି ଜଣାଇଲେ ଯେ ଏହି ଯୁଦ୍ଧ ଶତ୍ରୁମାନଙ୍କ ଦ୍ୱାରା ତାଙ୍କ ଉପରେ ଲଦି ଦିଆଯାଇଥିଲା । ଶାଜାହାନ ଏ ସମ୍ବାଦ ପାଇ ଆଉରଙ୍ଗଜେବଙ୍କ ସହିତ ସାକ୍ଷାତ କରିବା ପାଇଁ ଆଗ୍ରହ ପ୍ରକାଶ କଲେ ଏବଂ ଆଗ୍ରାକୁ ଆସିବା ନିମିତ୍ତ ତାଙ୍କୁ ନିମନ୍ତ୍ରଣ କଲେ । କିନ୍ତୁ ଆଉରଙ୍ଗଜେବ, ତାଙ୍କ ବନ୍ଧୁମାନଙ୍କର ଉପଦେଶ ଯୋଗୁ ପିତାଙ୍କ ସହିତ ସାକ୍ଷାତ କରିବା ପାଇଁ ରାଜି ହେଲେ ନାହିଁ । ବନ୍ଧୁମାନେ ତାଙ୍କୁ କହିଲେ ଯେ ସମ୍ରାଟ ତାଙ୍କ ଜୀବନ ନେବା ପାଇଁ ତାଙ୍କ ବିରୁଦ୍ଧରେ ଗୋଟିଏ ଷଡ଼ଯନ୍ତ୍ର କରିଅଛନ୍ତି ଏବଂ ସେ ଯଦି ଆଗ୍ରା ଦୁର୍ଗ ପ୍ରାସାଦ ମଧ୍ୟରେ ସମ୍ରାଟଙ୍କୁ ସାକ୍ଷାତ କରନ୍ତି ତା'ହେଲେ ଦୁର୍ଗର ପ୍ରହରୀମାନଙ୍କ ଦ୍ୱାରା ମୃତ୍ୟୁ ବରଣ କରିବେ । ତାଙ୍କର ବିଶ୍ୱସ୍ତ ଭଗ୍ନୀ ରୋସ-ନାରା ମଧ୍ୟ ତାଙ୍କୁ ଏହି ପ୍ରକାର ଉପଦେଶ ଦେଇଥିଲେ । ନିଜର ନିରାପତ୍ତା ପାଇଁ ଶାଜାହାନଙ୍କୁ ବନ୍ଦୀ କରାଯାଉ ବୋଲି ସେ ଆଉରଙ୍ଗଜେବଙ୍କୁ ଓଲଟା ପରାମର୍ଶ ଦେଇଥିଲେ ।

ଆଉରଙ୍ଗଜେବ ଏହି ଉପଦେଶକୁ ବିଶ୍ୱାସର ସହିତ ଗ୍ରହଣ କଲେ । ଶାଜାହାନ ଯେ ତାଙ୍କର ପରମ ଶତ୍ରୁ ଓ ପ୍ରତିଦ୍ୱନ୍ଦ୍ୱୀ, ଏ ବିଷୟରେ ତାଙ୍କର ଆଉ ସନ୍ଦେହ ରହିଲା ନାହିଁ । କାରଣ ଦାରା ଯୁଦ୍ଧରେ ପରାସ୍ତ ହେଲା ପରେ ମଧ୍ୟ ସମ୍ରାଟଙ୍କର ତାଙ୍କ ପ୍ରତି ପ୍ରଗାଢ଼ ସହାନୁଭୂତି ରହିଥିଲା । ବାହାରକୁ ଦେଖାଇବା ପାଇଁ ସେ କେବଳ ଆଉରଙ୍ଗଜେବଙ୍କ ନିକଟକୁ ଗୋଟିଏ ଖଣ୍ଡା ଉପଢୌକନ ସ୍ୱରୂପ ପଠାଇ ସାଦର ସମ୍ଭାଷଣ ଜଣାଇଥିଲେ । ଆଉରଙ୍ଗଜେବ କିନ୍ତୁ ଏଥିରେ ପ୍ରତାରିତ ହୋଇ ନ ଥିଲେ । ଯଥା ସମୟରେ ନିଜ ପିତାଙ୍କ

ବିରୁଦ୍ଧରେ ସେ ଯଥାର୍ଥ ପଦକ୍ଷେପ ନେଇଥିଲେ । ଶାଜାହାନ ଯେଉଁ ଜାଲ ବିଛାଇ ଥିଲେ ସେଥିରେ ସେ ନିଜେ ଧରା ପଡ଼ିଲେ ।

ଯଥା ସମୟରେ ଆଉରଙ୍ଗଜେବ ଆଗ୍ରା ଅଧିକାର କରି ଦୁର୍ଗର ଚାରିପଟେ ସୈନ୍ୟ ମୁତୟନ କଲେ । ଶାଜାହାନ ଏହି ଆକ୍ରମଣର ପ୍ରତିରୋଧ କଲେ । କିନ୍ତୁ ଯେତେବେଳେ ଆଉରଙ୍ଗଜେବ ଦୁର୍ଗ ମଧ୍ୟକୁ ଯାଉଥିବା ଜଳଯୋଗାଣ ବନ୍ଦ କରିଦେଲେ, ସେତେବେଳେ ଶାଜାହାନ ବାଧ୍ୟ ହୋଇ ନିଜ ପୁତ୍ରଠାରେ ଆତ୍ମସମର୍ପଣ କଲେ । ୧୬୫୮ ଖ୍ରୀ: ଅ: ଜୁନ ମାସ ୧୮ ତାରିଖରେ ଆଉରଙ୍ଗଜେବଙ୍କର ପୁତ୍ର ଆଗ୍ରା ରାଜପ୍ରାସାଦରେ ପ୍ରବେଶ କଲେ । ରାଜପ୍ରାସାଦ ବନ୍ଦୀଶାଳାରେ ପରିଣତ ହେଲା ଏବଂ ଶାଜାହାନଙ୍କୁ ଅନ୍ତଃପୁରର ଏକ ନିଭୃତ ସ୍ଥାନରେ ବନ୍ଦୀ ଭାବରେ ରଖାଗଲା । କେବଳ କେତେଜଣ ଭୃତ୍ୟ ଓ ତାଙ୍କର ପ୍ରିୟତମା କନ୍ୟା ଜାହାନାରାଙ୍କ ବ୍ୟତୀତ ଆଉ ତାଙ୍କ ନିକଟରେ କେହି ନ ଥିଲେ । ଶାଜାହାନ ବାର୍ଦ୍ଧକ୍ୟ ସମୟରେ ଜାହାନାରା ତାଙ୍କୁ ସ୍ନେହ ଓ ଶ୍ରଦ୍ଧା କରିବା ସଙ୍ଗେ ସଙ୍ଗେ ତାଙ୍କର ସେବାଶୁଶ୍ରୂଷା କରୁଥିଲେ । ଆଉରଙ୍ଗଜେବଙ୍କର ସମ୍ରାଟଙ୍କ ପ୍ରତି ଏ ପ୍ରକାର ବ୍ୟବହାର ଯୋଗୁ ପ୍ରଜାମାନେ ଅସନ୍ତୋଷ ପ୍ରକାଶ କଲେ । ତେଣୁ ଲୋକମାନଙ୍କ ମନରେ ଆଶ୍ୱାସନା ଓ ବିଶ୍ୱାସ ଆଣିବା ପାଇଁ ସେ କହିଥିଲେ ଯେ, ଦାରାଙ୍କର ଏହି ମନ୍ଦ ପ୍ରକୃତିକୁ ଦମନ କରି ସାରିଲା ପରେ ସମ୍ରାଟ ପୁନର୍ବାର ତାଙ୍କ କ୍ଷମତାରେ ପ୍ରତିଷ୍ଠିତ ହେବେ । ଜାହାନାରା ପିତା ଓ ପୁତ୍ରଙ୍କ ମଧ୍ୟରେ ଗୋଟିଏ ମିଳାମିଶା କରାଇ ଦେବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଏପରିକି ଶାଜାହାନ ନିଜେ ମୋଗଲ ସାମ୍ରାଜ୍ୟକୁ ଚାରି ପୁତ୍ରଙ୍କ ମଧ୍ୟରେ ସମାନ ଭାବରେ ବାଣ୍ଟିଦେବା ପାଇଁ ମଧ୍ୟ ପ୍ରସ୍ତାବ ଦେଇଥିଲେ । ସମସ୍ତ ଚେଷ୍ଟା କିନ୍ତୁ ବିଫଳ ହେଲା । କାରଣ, ଠିକ୍ ଏହି ସମୟରେ ଶାଜାହାନ ଦାରାଙ୍କୁ ଦିଲ୍ଲୀରେ ରହିବା ପାଇଁ ଯେଉଁ ଗୁପ୍ତପତ୍ର ଲେଖିଥିଲେ, ତାହା ଆଉରଙ୍ଗଜେବଙ୍କର ହସ୍ତଗତ ହୋଇଥିଲା । ଫଳରେ ସମ୍ରାଟଙ୍କ ବିରୁଦ୍ଧରେ ଥିବା ଆଉରଙ୍ଗଜେବଙ୍କର ସମସ୍ତ ପୂର୍ବ ସନ୍ଦେହ ଏଥର ଦୃଢ଼ୀଭୂତ ହେଲା । ସମ୍ରାଟଙ୍କର ଏହି ମତ ବିଷୟରେ ସେ ନିଶ୍ଚିତ ହେଲେ ଏବଂ ମିଳାମିଶା ପାଇଁ ଆଦୌ କର୍ଣ୍ଣପାତ କଲେ ନାହିଁ । ଏତଦ୍ ବ୍ୟତୀତ ଶାଜାହାନ ମଧ୍ୟ ଆଉରଙ୍ଗଜେବଙ୍କର ପୁତ୍ର ମୁହାମ୍ମଦଙ୍କୁ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବା ପାଇଁ ଗୁପ୍ତ ମନ୍ତ୍ରଣା ଦେଇଥିଲେ । ମୁହାମ୍ମଦ କିନ୍ତୁ ଏପରି କରିବା ପାଇଁ ଆଦୌ ସାହସ କରି ନ ଥିଲେ ।

ଶାଜାହାନଙ୍କର ବନ୍ଦୀ ଜୀବନ କ୍ରମଶଃ ଦେହସୁଆ ହୋଇଗଲା । ବାରନିଅର **(Bernier)** କହନ୍ତି ଯେ ଆଉରଙ୍ଗଜେବ ତାଙ୍କ ପିତାଙ୍କର ସମସ୍ତ ଦୁଃଖ ଓ ମାନସିକ କ୍ଳେଶ ଦୂର କରିବା ଉଦ୍ଦେଶ୍ୟରେ ସମସ୍ତ ପ୍ରକାର ମନୋରଞ୍ଜନର ବ୍ୟବସ୍ଥା କରିଥିଲେ । ଏହି ମନୋରଞ୍ଜନ ପାଇଁ ଗାୟିକା ଓ ନର୍ତ୍ତକୀମାନେ ମଧ୍ୟ ନିଯୁକ୍ତ ହୋଇଥିଲେ । ମୁଲ୍ଲାମାନେ ପ୍ରତ୍ୟେକ ଦିନ ତାଙ୍କ ପାଖରେ ପବିତ୍ର କୋରାନ ପାଠ କରୁଥିଲେ । ଏହି ସବୁ ବ୍ୟବସ୍ଥା

ହେତୁ କ୍ରମେ କ୍ରମେ ଶାଜାହାନ ଔରଙ୍ଗଜେବଙ୍କୁ ଭଲ ପାଇବାକୁ ଲାଗିଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଔରଙ୍ଗଜେବଙ୍କୁ କ୍ଷମା ଦେଇ ସେ ଖଣ୍ଡିଏ ପତ୍ର ଲେଖି ଯାଇଥିଲେ । ଶେଷ ସମୟରେ ତାଜମହଲ ଉପରେ ଦୃଷ୍ଟିରଖି ସମ୍ରାଟ୍ ୧୬୬୬ ଖ୍ରୀ: ଅ: ଜାନୁଆରୀ ମାସ ୨୨ ତାରିଖରେ ୭୪ ବର୍ଷ ବୟସରେ ମୃତ୍ୟୁ ବରଣ କଲେ । ଏହି ଦୁଃସମ୍ବାଦ ପାଇ ଔରଙ୍ଗଜେବ ତାଙ୍କୁ ଦେଖିବାକୁ ଯାଇ ନ ଥିଲେ ଏବଂ ତାଙ୍କର ମୃତ ଶରୀରକୁ ପୂର୍ବବର୍ତ୍ତୀ ଅନ୍ୟାନ୍ୟ ସମ୍ରାଟଙ୍କ ପରି ରାଜକୀୟ ପରିବେଶରେ କବର ଦେବା ପାଇଁ ମଧ୍ୟ କୌଣସି ବ୍ୟବସ୍ଥା କଲେ ନାହିଁ । କେବଳ ନପୁଂସକ ତଥା ନିମ୍ନ ଶ୍ରେଣୀର ଭୃତ୍ୟମାନଙ୍କ ଦ୍ୱାରା ଦୁର୍ଗର ଗୋଟିଏ ଜୀର୍ଣ୍ଣ ଦ୍ୱାର ଦେଇ ସମ୍ରାଟଙ୍କର ମୃତ ଶରୀରକୁ ନିଆଯାଇ ତାଜମହଲ ନିକଟରେ କବର ଦିଆଗଲା । ଜାହାନାରା ଏହି ଶବ ଯାତ୍ରାରେ ଲୋକମାନଙ୍କ ମଧ୍ୟରେ ଦୁଇ ହଜାର ସ୍ୱର୍ଣ୍ଣମୁଦ୍ରା ବିତରଣ କରିବା ପାଇଁ ବ୍ୟବସ୍ଥା କରିଥିଲେ ମଧ୍ୟ, ତାହା ସେ କରି ପାରି ନ ଥିଲେ । କାରଣ ଶାଜାହାନ ବନ୍ଦୀ ଥିବାରୁ ମୃତ୍ୟୁ ପରେ ବନ୍ଦୀ ପାଇଁ ମୁଦ୍ରା ବିତରଣ କରିବା ନିୟମ ବିରୁଦ୍ଧ ଥିଲା ।

ସେ ଯାହାହେଉନା କାହିଁକି ଶାଜାହାନଙ୍କ ମୃତ୍ୟୁରେ ସମଗ୍ର ଆଗ୍ରାରେ ଶୋକର ଛାୟା ଖେଳି ଯାଇଥିଲା ଏବଂ ସମସ୍ତେ ତାଙ୍କର ଗୁଣ ଓ କୀର୍ତ୍ତିମାନ ମନେ ପକାଉଥିଲେ । ଶାଜାହାନଙ୍କର ମୃତ୍ୟୁର ଏକ ମାସ ପରେ ଔରଙ୍ଗଜେବ ଯେତେବେଳେ ଆଗ୍ରା ଦୁର୍ଗକୁ ଯାଇଥିଲେ, ଜାହାନାରା ଶାଜାହାନଙ୍କ ଲିଖିତ ଖଣ୍ଡିଏ ଚିଠି ତାଙ୍କୁ ବଢ଼ାଇ ଦେଇଥିଲେ । ସେ ମଧ୍ୟ ସମସ୍ତ ଧନ ଦୌଲତ ତାଙ୍କୁ ଅର୍ପଣ କରିଥିଲେ । ଔରଙ୍ଗଜେବ ତାଙ୍କୁ ଦିଲ୍ଲୀ ରାଜପ୍ରାସାଦରେ ରହିବା ପାଇଁ ଅନୁରୋଧ କରିଥିଲେ । ସେ ମୃତ୍ୟୁ ପର୍ଯ୍ୟନ୍ତ ଦିଲ୍ଲୀ ରାଜଦରବାରରେ ରହି ପ୍ରଥମ ମହିଳା ହିସାବରେ ସମ୍ମାନ ପାଉଥିଲେ । ଜାହାନାରା ଅବିବାହିତା ଥିଲେ ଏବଂ ଦାନଶୀଳା ବା ଦୟାବତୀ ଭାବରେ ବିଖ୍ୟାତ ଥିଲେ । ୧୬୮୧ ଖ୍ରୀ: ଅ: ସେପ୍ଟେମ୍ବର ମାସ ୬ ତାରିଖରେ ୬୭ ବର୍ଷ ବୟସରେ ସେ ମୃତ୍ୟୁ ବରଣ କଲେ । ସେ ମିଆନ୍ ମୀରଙ୍କର ନିଷ୍ଠାପର ଶିଷ୍ୟା ଥିଲେ ଏବଂ ପ୍ରାର୍ଥନା ଓ ଆରାଧନାରେ ସମୟ କଟାଉଥିଲେ ।

ଶାଜାହାନ ଯେତେବେଳେ ବନ୍ଦୀ ଅବସ୍ଥାରେ ସମୟ ଅତିବାହିତ କରୁଥିଲେ, ସେତେବେଳେ ଔରଙ୍ଗଜେବ ନିଜକୁ ଦିଲ୍ଲୀରେ ନିରଙ୍କୁଶ ଶାସକ ଭାବରେ ଅବସ୍ଥାପିତ କରିବା ପାଇଁ ଅନ୍ୟ ଭାଇମାନଙ୍କ ବିରୁଦ୍ଧରେ ଦୃଢ଼ ପଦକ୍ଷେପ ନେଇଥିଲେ । ସାମୁଗଡ଼ ଯୁଦ୍ଧ ପରେ ଔରଙ୍ଗଜେବ ପ୍ରକୃତରେ ମୋଗଲ ସାମ୍ରାଜ୍ୟର ଅଧିକାରୀ ହେଲେ ଏବଂ ରାଜ୍ୟର ସମସ୍ତ କର୍ମଚାରୀ ତଥା ଜନସାଧାରଣ ତାଙ୍କୁ ସମ୍ମାନ ଦେଖାଇଲେ । ୧୬୫୮ ଖ୍ରୀ: ଅ: ଜୁଲାଇ ମାସ ୨୧ ତାରିଖରେ ସେ ନିଜକୁ ସମ୍ରାଟ ବୋଲି ଘୋଷଣା କଲେ ଏବଂ "ଆଲମଗିର" ଅର୍ଥାତ୍ ବିଶ୍ୱ ବିଜେତା ବା ପୃଥିବୀ ବିଜୟୀ ଉପାଧିରେ ଭୂଷିତ ହେଲେ ।

## ମୁରାଦଙ୍କ ପ୍ରାଣଦଣ୍ଡ

ଏଣେ ସାମୁଗଡ଼ ଯୁଦ୍ଧ ପରେ ମୁରାଦ ବକ୍ସ ନିଜକୁ ମୋଗଲ ସାମ୍ରାଜ୍ୟର ସାମ୍ରାଟ ବୋଲି ଭାବି ଆନନ୍ଦରେ ସମୟ କଟାଇବାକୁ ଲାଗିଲେ । ଆଉରଙ୍ଗଜେବଙ୍କର ଆଚରଣରେ ସେ ଆଦୌ ସନ୍ତୁଷ୍ଟ ନ ଥିଲେ । ଏଣୁ ନିଜର ଅଭିଳାଷକୁ ଚରିତାର୍ଥ କରିବା ପାଇଁ ସେ ପ୍ରାୟ ୨୦,୦୦୦ ଯୋଦ୍ଧା ସଂଗ୍ରହ କଲେ । ଯେତେବେଳେ ଆଉରଙ୍ଗଜେବ ଆଗ୍ରାରୁ ଦିଲ୍ଲୀ ଅଭିମୁଖେ ଯାତ୍ରା କରୁଥିଲେ, ସେତେବେଳେ ମୁରାଦ ତାଙ୍କୁ ଅନୁସରଣ କଲେ ଏବଂ ଦିଲ୍ଲୀ ସିଂହାସନ ପାଇଁ ତାଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କଲେ । ଆଉରଙ୍ଗଜେବ ଏଥିପାଇଁ ପୂର୍ବରୁ ପ୍ରସ୍ତୁତ ଥିଲେ ଏବଂ ସେ ଏଥିରେ କୌଣସି ପ୍ରତିକ୍ରିୟା ପ୍ରକାଶ କଲେ ନାହିଁ । ସେ ମଥୁରାଠାରେ ମୁରାଦଙ୍କୁ ଏକ ଭୋଜି ସଭାକୁ ନିମନ୍ତ୍ରଣ କଲେ ଏବଂ ମୁରାଦ ସେହି ଭୋଜି ସଭାରେ ଆନନ୍ଦରେ ବିଭୋର ହୋଇପଡ଼ିଲେ । ମୁରାଦ ଅତ୍ୟନ୍ତ ମଦ୍ୟପ ଥିଲେ । ଏହା ତାଙ୍କ ଚରିତ୍ରର ଏକ ବିଶିଷ୍ଟ ଦୁର୍ବଳତା ଓ ଶେଷରେ ଏହି ମଦ ତାଙ୍କର ପ୍ରାଣ ନାଶ କରିଥିଲା । ଆଉରଙ୍ଗଜେବ ତାଙ୍କୁ ଏହି ଭୋଜିରେ ଅତ୍ୟଧିକ ମଦ୍ୟପାନ କରାଇବା ଫଳରେ ମୁରାଦ ଚେତାଶୂନ୍ୟ ହୋଇ-ପଡ଼ିଲେ । ଫଳରେ ସେ ଘୋଷଣା କଲେ ଯେ ଏ ପ୍ରକାର ଜଘନ୍ୟ ମଦ୍ୟପୀ ମୋଗଲ ସିଂହାସନରେ ବସିବାକୁ ଅନୁପଯୁକ୍ତ । ମଦ ପ୍ରତି ତାଙ୍କର ଅତି ପ୍ରବଳ ଦୁର୍ବଳତା ଥିବାରୁ ସେ ପବିତ୍ର କୋରାନ୍‌କୁ ଅବମାନନା କରିଛନ୍ତି । ଏଣୁ ଆଉରଙ୍ଗଜେବ ତାଙ୍କୁ ଏହି ଅଚେତ ଅବସ୍ଥାରେ ବନ୍ଦୀ କଲେ । ତାଙ୍କ ପ୍ରତି ଆଉରଙ୍ଗଜେବଙ୍କର ଏତାଦୃଶ ଆଚରଣ ଦେଖି, ସେ ପିଞ୍ଜରାବଦ୍ଧ ବ୍ୟାଘ୍ର ପରି କ୍ରୋଧାନ୍ୱିତ ହୋଇ ତାଙ୍କୁ ବହୁତ ଅଭିଶାପ ଦେଲେ । କାରଣ ପ୍ରଥମେ ଆଉରଙ୍ଗଜେବ ପବିତ୍ର କୋରାନ୍‌କୁ ସାକ୍ଷୀ ରଖି ତାଙ୍କ ସହିତ ଚୁକ୍ତି ପାଇଁ ଯେଉଁ ଶପଥ ନେଇଥିଲେ, ତାହା ସେ ମୁରାଦଙ୍କୁ ବନ୍ଦୀ କରିବା ଦ୍ୱାରା ନିଜେ ଭଙ୍ଗ କଲେ । ଯେହେତୁ ମୁରାଦ ତାଙ୍କର ସାହସିକତା ଯୋଗୁ ସୈନ୍ୟମାନଙ୍କ ମଧ୍ୟରେ ଅତି ପ୍ରିୟ ଥିଲେ, ଏଣୁ ଆଉରଙ୍ଗଜେବ ସୈନ୍ୟମାନଙ୍କୁ କରାୟତ୍ତ କରିବା ପାଇଁ ସେମାନଙ୍କୁ ବହୁ ପରିମାଣରେ ବକ୍‌ସିସ୍ ବିତରଣ କରିଥିଲେ । ମୁରାଦ ଗୋଆଲିୟର ଦୁର୍ଗରେ ବନ୍ଦୀ ଭାବରେ ଜୀବନ କଟାଇବାକୁ ଲାଗିଲେ । ସେଠାରେ ରହିଥିବା ସମୟରେ ବନ୍ଦୀଶାଳାରୁ ପଳାୟନ କରିବା ପାଇଁ ଚେଷ୍ଟା କରି ସେ ଅକୃତକାର୍ଯ୍ୟ ହୋଇଥିଲେ । ଶେଷରେ ସେ ଦେୱାନ ଅଲ୍ଲୀନାଙ୍କୁ ହତ୍ୟା କରିଥିବା ଅଭିଯୋଗରେ ଦଣ୍ଡିତ ହୋଇ ୧୬୬୧ ଖ୍ରୀ: ଅ: ଡିସେମ୍ବର ମାସ ୪ ତାରିଖରେ ପ୍ରାଣଦଣ୍ଡ ପାଇଲେ ।

### ଦାରାଙ୍କ ଅବସ୍ଥା :

ସାମୁଗଡ଼ ଯୁଦ୍ଧରେ ପରାଜିତ ହେବା ପରେ ଦାରା ଶାଜାହାନଙ୍କ ସହିତ ଆଗ୍ରାରେ ସାକ୍ଷାତ କରିବାକୁ ଲଜ୍ଜା ବୋଧ କରି ସ୍ତ୍ରୀ ନାଦିରା ବେଗମ ଓ ଦୁଇଟି ସନ୍ତାନଙ୍କୁ ସାଙ୍ଗରେ ଧରି ଦିଲ୍ଲୀ ଆଡ଼କୁ ଅଗ୍ରସର ହେଲେ । ସେ ମଧ୍ୟ ଦିଲ୍ଲୀରେ ନିଶ୍ଚିତ ହୋଇ ରହିପାରିଲେ

ନାହିଁ । ସେଠାରୁ ସେ ନିଜ ପରିବାର ଏବଂ କେତେକ ଅନୁଚରଙ୍କ ସହିତ ପ୍ରାଣ ଭୟରେ ଅନ୍ୟତ୍ର ପଳାୟନ କଲେ । ସେ ନ ଖାଇ ନ ପିଇ, ଏପରିକି ନିଦ୍ରା ପରିତ୍ୟାଗ କରି ଦିନ-ରାତି ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ପଳାଇଯିବାକୁ ଲାଗିଲେ । ସେ ଯେତେବେଳେ ଜାଣିବାକୁ ପାଇଲେ ଯେ ଆଉରଙ୍ଗଜେବ ତାଙ୍କୁ ଅନୁସରଣ କରୁଅଛନ୍ତି, ସେତେବେଳେ ସେ କାବୁଲଠାରେ ତାଙ୍କୁ ପ୍ରତିରୋଧ କରିବା ପାଇଁ ପ୍ରସ୍ତୁତ ହୋଇ ରହିଥିଲେ ଉତ୍ତମ ହୋଇ ଥାଆନ୍ତା । କାରଣ ସେଠାକାର ତଦାନୀନ୍ତନ ଶାସକ ମହବତ୍ ଖାଁ ତାଙ୍କୁ ନିଶ୍ଚୟ ସମର୍ଥନ କରିଥାନ୍ତେ । କିନ୍ତୁ ତାହା ନ କରି ସେ ସିନ୍ଧୁପ୍ରଦେଶ ଆଡ଼କୁ ପଳାୟନ କଲେ । ସେଠାରେ ମଧ୍ୟ ଆଉରଙ୍ଗଜେବଙ୍କର ପଶ୍ଚାଦ୍ଧାବନ ଯୋଗୁ ସେ ରହି ନ ପାରି ଗୁଜରାଟର ଆଶ୍ରୟ ପ୍ରାର୍ଥୀ ହେଲେ । ଅହମଦାବାଦର ଶାସକ ତାଙ୍କୁ ସାଦରେ ଗ୍ରହଣ କଲେ ଏବଂ ମୁରାଦଙ୍କ ପାଇଁ ଯେଉଁ ୧୦ ଲକ୍ଷ ଟଙ୍କା ଗଚ୍ଛିତ କରି ରଖିଥିଲେ ତାହା ଦାରାଙ୍କୁ ଦେଇ-ଦେଲେ । ସେହି ଅର୍ଥ ସାହାଯ୍ୟରେ ଦାରା ୨୦,୦୦୦ ସୈନ୍ୟ ସଂଗ୍ରହ କରି ଆଉରଙ୍ଗଜେବଙ୍କର ପ୍ରତିରୋଧ ପାଇଁ ପ୍ରସ୍ତୁତ ହେଲେ । ରାଠୋରରେ ରାଜା ଯଶୋବନ୍ତ ସିଂହ ଦାରାଙ୍କୁ ତାଙ୍କର ସମର୍ଥନ ଜଣାଇ ଆଜମୀର ଆଡ଼କୁ ତାଙ୍କୁ ପଳାଇଯିବା ପାଇଁ ପରାମର୍ଶ ଦେଲେ । ଦାରା କାଳ ବିଳମ୍ବ ନ କରି ସଙ୍ଗେ ସଙ୍ଗେ ଆଜମୀର ଯିବା ପାଇଁ ପ୍ରସ୍ତୁତ ହେଲେ । କିନ୍ତୁ ଯେତେ-ବେଳେ ସେ ଶୁଣିବାକୁ ପାଇଲେ ଯେ ରାଜା ଯଶୋବନ୍ତ ସିଂହ ଆଉରଙ୍ଗଜେବଙ୍କ ଦ୍ୱାରା ବଶୀଭୂତ ହୋଇ ଯାଇଛନ୍ତି, ସେତେବେଳେ ତାଙ୍କର ସମସ୍ତ ଆଶା ଧୂଳିସାତ୍ ହୋଇଗଲା । ଆଜମୀରଠାରେ ଦାରା ପୁଣି ପରାସ୍ତ ହେଲେ । ଏହାପରେ ଦାରା ଅହମଦାବାଦ ଆଡ଼କୁ ପଳାୟନ କଲେ । କିନ୍ତୁ ସେଠାକାର ଶାସନକର୍ତ୍ତା ଆଉରଙ୍ଗଜେବଙ୍କ ଭୟରେ ତାଙ୍କୁ ଏଥର ଅହମଦାବାଦରେ ପ୍ରବେଶ କରିବା ପାଇଁ ଅନୁମତି ଦେଲେ ନାହିଁ । ଶେଷରେ ସେ ବେଲୁଚିସ୍ଥାନର ପଠାଣ ମୁଖ୍ୟ ମଲ୍ଲିକ ଜିଓ୍ୱାନଙ୍କଠାରେ ଆଶ୍ରୟ ଭିକ୍ଷା କଲେ । କାରଣ ସେ ଅତୀତରେ ମଲ୍ଲିକ ଜିଓ୍ୱାନଙ୍କୁ ମୃତ୍ୟୁ ଦଣ୍ଡରୁ ରକ୍ଷା କରିଥିଲେ । କିନ୍ତୁ ସେଠାକୁ ଯିବା ପୂର୍ବରୁ ତାଙ୍କ ସ୍ତ୍ରୀ, ପୁତ୍ର ଓ କନ୍ୟା, ତାଙ୍କୁ ପଠାଣ ମୁଖ୍ୟ ମଲ୍ଲିକଙ୍କ ପାଖକୁ ଯିବାକୁ ବାରଣ କରିଥିଲେ । କିନ୍ତୁ ଦୁଃଖ ପରେ ଦୁଃଖ ଏବଂ ନୈରାଶ୍ୟରେ ସେ ଭାଙ୍ଗି ପଡ଼ିଥିବାରୁ ତାଙ୍କର ମାନସିକ ଶାନ୍ତି ନ ଥିଲା । ଏଣୁ ସେ କାହାରି ଉପଦେଶ ମାନି ନ ଥିଲେ । ନାଦିରା ବେଗମ ମଧ୍ୟ ଏତେ କଷ୍ଟ ସହ୍ୟ କରି ନ ପାରି ପଥ ମଧ୍ୟରେ ମୃତ୍ୟୁ ବରଣ କଲେ । ମଲ୍ଲିକ ଜିଓ୍ୱାନ ତାଙ୍କୁ ଆଶ୍ରୟ ଦେବା ପରିବର୍ତ୍ତେ ତାଙ୍କ ସହିତ ବିଶ୍ୱାସଘାତକତା କରି ତାଙ୍କୁ ଓ ତାଙ୍କ ପୁତ୍ର ସିପରଙ୍କୁ ଆଉରଙ୍ଗଜେବଙ୍କ ପ୍ରଧାନ ସେନାପତି ହସ୍ତରେ ଅର୍ପଣ କଲେ । ଦାରା ଏହା ଦେଖି ଈର୍ଷାନ୍ୱିତ ହୋଇ ଯାଇଥିଲେ ମଧ୍ୟ କିନ୍ତୁ ଦୁର୍ବଳ ହୋଇ ପଡ଼ିଥିବାରୁ ଏହାର କୌଣସି ପ୍ରତିବାଦ କରିପାରିଲେ ନାହିଁ । ୧୬୫୯ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୨୩ ତାରିଖରେ ତାଙ୍କୁ ବନ୍ଦୀ ଭାବରେ ଦିଲ୍ଲୀକୁ ଅଣାଗଲା ।

ଆଉରଙ୍ଗଜେବ ଏହି ସମ୍ବାଦ ପାଇ ଆନନ୍ଦରେ ବିହ୍ୱଳିତ ହୋଇ ପଡ଼ିଲେ । କିନ୍ତୁ ବାହାରକୁ କୌଣସି ମନଭାବ ପ୍ରକାଶ କଲେ ନାହିଁ । ଏହାପରେ ଦାରାଙ୍କୁ ଅକଥନୀୟ

ଅପମାନ ଓ ଲାଞ୍ଛନା ଭୋଗ କରିବାକୁ ପଡ଼ିଥିଲା । ଆଉରଙ୍ଗଜେବ, ତାଙ୍କୁ ଓ ତାଙ୍କ ପୁତ୍ରକୁ ଗୋଟିଏ ରୁଗ୍ଣା ଏବଂ କୁତ୍ସିତ ହସ୍ତୀ ଉପରେ ବସାଇ ଦିଲ୍ଲୀ ରାଜପଥରେ ଏକ ଶୋଭାଯାତ୍ରାରେ ବୁଲାଇଲେ । ତାଙ୍କର ଏ ଦୁର୍ଦ୍ଦଶା ଦେଖି ରାଜପଥରେ ଆବାଳବୃଦ୍ଧବନିତାଙ୍କ ଚକ୍ଷୁରେ ଲୋତକ ଆସୁଥିଲା ଏବଂ ପାଷାଣ ହୃଦୟରେ ମଧ୍ୟ ତାଙ୍କ ପ୍ରତି ଅନୁକମ୍ପା ଜାତ ହେଉଥିଲା । ଦାରା ଉଦାରଚେତା ଥିଲେ । ଏଣୁ ତାଙ୍କର ଏହି ଦୁର୍ଦ୍ଦିନରେ ମଧ୍ୟ ସମସ୍ତେ ତାଙ୍କ ପ୍ରତି ଦୁଃଖ ପ୍ରକାଶ କରିଥିଲେ ।

**ଦାରାଙ୍କ ପ୍ରାଣଦଣ୍ଡ :**

ଏହା ପରେ ଦାରାଙ୍କ ବିଷୟରେ କ'ଣ ପଦକ୍ଷେପ ନିଆଯିବ ତାହା ଆଉରଙ୍ଗଜେବ ଚିନ୍ତା କଲେ ଏବଂ ତାଙ୍କ ଗୁପ୍ତ ମନ୍ତ୍ରଣାଳୟରେ ଏ ବିଷୟରେ ଆଲୋଚନା କଲେ । କେତେକ ମତ ଦେଲେ ଯେ ଦାରାଙ୍କୁ ମୁକ୍ତ ଦିଆଯାଉ । କିନ୍ତୁ ଶାୟସ୍ତ ଖାଁ ଓ ଅନ୍ୟମାନେ ଦୃଢ଼ ମତ ଦେଲେ ଯେ, ଯେହେତୁ ଦାରା ଜଣେ କାଫେର ଓ ଧର୍ମଦ୍ରୋହୀ ଏଣୁ ତାଙ୍କୁ ମୃତ୍ୟୁ ଦଣ୍ଡ ଦିଆଯାଉ । ରୋସନାରା ମଧ୍ୟ ଏହି ଦଣ୍ଡବିଧାନକୁ ସମର୍ଥନ କରିଥିଲେ । ଉଲେମାମାନଙ୍କ ଦ୍ୱାରା ଦାରାଙ୍କର ବିଚାର ହେଲା । ବିଚାରାଳୟରେ ଦାରା ଇସଲାମ ଧର୍ମଦ୍ରୋହୀ ଅପରାଧରେ ଅଭିଯୁକ୍ତ ହୋଇ ମୃତ୍ୟୁଦଣ୍ଡ ପାଇବାକୁ ଯୋଗ୍ୟ ବୋଲି ସାବ୍ୟସ୍ତ ହେଲେ । ଆଉରଙ୍ଗଜେବ ମଧ୍ୟ ଠିକ୍ ଏହି କଥା ହିଁ ଚାହୁଁଥିଲେ । ତାଙ୍କ ପ୍ରତି ଦୟା ଓ କ୍ଷମା ଦେଖାଇବା ପାଇଁ ଆଉରଙ୍ଗଜେବଙ୍କୁ ଦାରା ଆବେଦନ କରିଥିଲେ ସୁଦ୍ଧା, ସେ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ ଏବଂ କହିଥିଲେ ଯେ ଜଣେ ଦୁଷ୍ଟ ଓ ଅବୈଧ ରାଜପଦାଧିକାରୀ କ୍ଷମା ପାଇବାର ଯୋଗ୍ୟ ବୋଲି ବିବେଚିତ ହୋଇ ନ ପାରନ୍ତି । ଦାରାଙ୍କ ପ୍ରତି ଜନସାଧାରଣଙ୍କର ସହାନୁଭୂତି ଥିଲେ ସୁଦ୍ଧା ସେମାନେ ତାଙ୍କୁ ରକ୍ଷା କରିପାରି ନ ଥିଲେ ।

ଦାରା ଓ ତାଙ୍କ ପୁତ୍ର ସିପିରଙ୍କୁ ହତ୍ୟା କରିବା ପାଇଁ ନାଜର ନାମକ ଏକ କ୍ରୀତଦାସକୁ ଦାୟିତ୍ୱ ଦିଆଯାଇଥିଲା । ଶେଷ ମୁହୂର୍ତ୍ତରେ ଦାରା ନିଜର ଜୀବନ ବଞ୍ଚାଇବା ପାଇଁ ନାଜରଙ୍କର ପ୍ରତିରୋଧ କଲେ । [illegible] ଫଳ କିଛି ହେଲା ନାହିଁ । ଶେଷରେ ଦାରାଙ୍କର ରକ୍ତାକ୍ତ କଟା ମୁଣ୍ଡକୁ ଆଉରଙ୍ଗଜେବଙ୍କ ନିକଟକୁ ପଠାଇ ଦିଆଗଲା । ପ୍ରକୃତରେ ତାହା [illegible] ମୁଣ୍ଡ କି ନୁହେଁ ଜାଣିବା ପାଇଁ ସେ ନିଜେ ନିଜ ହାତରେ ରକ୍ତ ପୋଛି ଦେଲେ [illegible] ପରେ ସେହି କଟା [illegible]କୁ [illegible]ଧାନୀର ରାଜପଥରେ ବୁଲାଇଲେ । ଶେଷରେ [illegible] ହୁମାୟୁନଙ୍କ [illegible]ବର ମ[illegible]ର ସମା[illegible] ଦିଆଗଲା । ସିପି[illegible]ଙ୍କୁ ଗୋଆଲିୟର ଦୁର୍ଗରେ ରୂପରେ [illegible]ଖାଗଲା ।

**[illegible]ମାନ ହ[illegible]ଷା :**

ଏତିକରେ ଆଉରଙ୍ଗ[illegible]ବଙ୍କର ଦାରାଙ୍କ ପ୍ରତି [illegible] ଆଚରଣର ଶେଷ ହେଲା ନାହିଁ । ସେ ଦାରାଙ୍କ ପୁତ୍ର ସୁଲେ[illegible]ନ ଦ୍ୱିକୋଙ୍କୁ ବନ୍ଦୀ କରିବ ପାଇଁ ସମସ୍ତ ପ୍ରକାର ଚେଷ୍ଟା

କରିଥିଲେ । ଦାରା ଯେତେବେଳେ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ମୁକାବିଲା କଲେ ସେତେବେଳେ ସେ ସୁଲେମାନଙ୍କୁ ସୁଜାଙ୍କ ବିରୁଦ୍ଧରେ ପଠାଇଥିଲେ । କିନ୍ତୁ ସୁଲେମାନ ଧର୍ମାଟ ଯୁଦ୍ଧରେ ପିତାଙ୍କର ପରାସ୍ତ ହେବା ସମ୍ବାଦ ଶୁଣି ସୁଜାଙ୍କ ସହ ଶାନ୍ତି ସ୍ଥାପନ କରିଥିଲେ ଏବଂ ଦିଲ୍ଲୀ ଆଡ଼କୁ ଅଗ୍ରସର ହୋଇଥିଲେ । ଏହା ପରେ ବାଟରେ ସାମୁଗଡ଼-ଠାରେ ଦାରାଙ୍କର ପୁନରାୟ ପରାସ୍ତ ହେବା ସମ୍ବାଦ ପାଇଲେ । ଠିକ୍ ଏହି ସମୟରେ ସେ ଶାହାଜାହାନଙ୍କଠାରୁ ନିର୍ଦ୍ଦେଶ ପାଇଲେ ଯେ ସେ ଶୀଘ୍ର ଯାଇ ତାଙ୍କ ପିତାଙ୍କ ସହିତ ଯୋଗ ଦିଅନ୍ତୁ । ଏହି ନିର୍ଦ୍ଦେଶ ପାଇ ସେ ତାଙ୍କର ସେନାପତିମାନଙ୍କୁ ତାଙ୍କ ପିତାଙ୍କ ସହିତ ଯୋଗ ଦେବାକୁ ଆଦେଶ ଦେବାରୁ, ରାଜା ଜୟସିଂହ ତାହା ପ୍ରତ୍ୟାଖ୍ୟାନ କଲେ । ଏଣୁ ସୁଲେମାନ ନିଜେ ତାଙ୍କ ପିତାଙ୍କ ସହିତ ପଞ୍ଜାବଠାରେ ଯୋଗ ଦେବା ପାଇଁ ଅଗ୍ରସର ହେଲେ । ଠିକ୍ ଏହି ସମୟରେ ଶାୟସ୍ତଖାଁ ତାଙ୍କୁ ଅନୁସରଣ କଲେ । ଫଳଶେଷରେ ରାଜା ଜୟସିଂହଙ୍କ ପୁତ୍ର ତାଙ୍କୁ ଧରାଇ ଦେଲେ । ସୁଲେମାନଙ୍କୁ ବନ୍ଦୀ ଅବସ୍ଥାରେ ଯେତେବେଳେ ଖୋଲା ଦରବାରକୁ ଅଣାଗଲା ସେତେବେଳେ ଏହି ସୁଶ୍ରୀ ରାଜପୁତ୍ରଙ୍କର ଦୁଃସ୍ଥ ଅବସ୍ଥା ଦେଖି କେବଳ ଆଉରଙ୍ଗଜେବଙ୍କ ଛଡ଼ା ଆଉ ସମସ୍ତଙ୍କ ହୃଦୟରେ ସହାନୁଭୂତି ଜାତ ହେଲା । ଶେଷରେ ସେ ଗୋଆଲିୟର ଦୁର୍ଗରେ ବନ୍ଦୀ ଭାବରେ ଜୀବନ କଟାଇଲେ ଏବଂ ଧୀରେ ଧୀରେ ବିଷ ପ୍ରୟୋଗ କରାଯାଇ ତାଙ୍କୁ ହତ୍ୟା କରାଗଲା ।

**ସୁଜାଙ୍କ ପରାସ୍ତ :**

ନିଜକୁ ନିରଙ୍କୁଶ ଶାସକ ଭାବରେ ପ୍ରତିଷ୍ଠା କରିବା ପାଇଁ ଏଥର ଆଉରଙ୍ଗଜେବ ସୁଜାଙ୍କ ବିରୁଦ୍ଧରେ ଅଭିଯାନ ଚଳାଇଲେ । ସୁଜା ଆଉରଙ୍ଗଜେବଙ୍କୁ ଦାରାଙ୍କ ଅପେକ୍ଷା ଆହୁରି ବେଶି ଜଞ୍ଜାଳରେ ପକାଇଥିଲେ । ସୁଜା ବଙ୍ଗଦେଶରେ ନିଜର କର୍ତ୍ତୃତ୍ୱ ସ୍ଥାପନ କରିଥିଲେ । ସିଂହାସନ ଆରୋହଣ ପରେ ଆଉରଙ୍ଗଜେବ, ସୁଜାଙ୍କ ନିକଟକୁ ଭ୍ରାତୃ ସ୍ନେହ ଭରା ଏକ ପତ୍ର ଲେଖି ଜଣାଇଲେ ଯେ, ଦାରାଙ୍କୁ ପରାସ୍ତ କରି ପାରିଲେ ସେ ଯାହା ଚାହିଁବେ ତାହା ତାଙ୍କୁ ଦେବେ । କିନ୍ତୁ ସେ ଆଉରଙ୍ଗଜେବଙ୍କର ପ୍ରକୃତ ଅଭିପ୍ରାୟ ଜାଣିପାରି ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ । ଆଉରଙ୍ଗଜେବ ସମୟ ନଷ୍ଟ ନ କରି ଶାୟସ୍ତଖାଙ୍କୁ ଦାରାଙ୍କ ବିରୁଦ୍ଧରେ ପ୍ରେରଣ କରିବା ପରେ ନିଜେ ସୁଜାଙ୍କୁ ଅନୁସରଣ କଲେ । ଏହି ସମୟରେ ଦାକ୍ଷିଣାତ୍ୟରୁ ତାଙ୍କର ସୁଦକ୍ଷ ସହକାରୀ ସେନାପତି ମିରଜୁମଲା ତାଙ୍କ ସହିତ ଆସି ଯୋଗ ଦେଲେ । ସୁଜା ମଧ୍ୟ ଆଉରଙ୍ଗଜେବଙ୍କ ସହିତ ମୁକାବିଲା କରିବା ପାଇଁ ହୁଗୁଳିଠାରେ ଥିବା ପର୍ତ୍ତୁଗୀଜମାନଙ୍କର ସାହାଯ୍ୟ ଲୋଡ଼ିଥିଲେ । କିନ୍ତୁ ଦୁର୍ଭାଗ୍ୟ ଯେ ୧୬୫୯ ଖ୍ରୀ: ଅ: ରେ ଖ୍ୱାଜାଠାରେ ସୁଜା ପରାସ୍ତ ହୋଇ ଆରକାନର ଦୁର୍ଗମ ଅଞ୍ଚଳକୁ ପଳାଇଗଲେ । ତା' ପରେ ତାଙ୍କର ଆଉ କିଛି ସମ୍ବାଦ ମିଳି ନ ଥିଲା । ଅନୁମାନ କରାଯାଏ ଯେ ଆରକାନୀମାନେ ସୁଜାଙ୍କୁ ହତ୍ୟା କରିଥିଲେ ।

ସୁଜାଙ୍କ ନିରୁଦ୍ଦେଶ ପରେ ମୋଗଲ ସିଂହାସନ ଲାଭର ପଥ ନିଷ୍କଣ୍ଟକ ହେଲା । ଆଉରଙ୍ଗଜେବଙ୍କର ଅନ୍ୟ କୌଣସି ପ୍ରତିଦ୍ୱନ୍ଦ୍ୱୀ ରହିଲେ ନାହିଁ ।

# ଚତୁର୍ଥ ଅଧ୍ୟାୟ

## ସିଂହାସନ ଆରୋହଣ ଓ ରାଜ୍ୟ ଜୟ

**ଅଭିଷେକ :**

ମୋଗଲ ସିଂହାସନ ପାଇଁ ଭ୍ରାତୃ ଯୁଦ୍ଧରେ ଜୟଲାଭ କରି ଓ ନିଜ ପିତାଙ୍କୁ ବନ୍ଦୀ କରି ଶେଷରେ ଆଉରଙ୍ଗଜେବ ମୋଗଲ ସମ୍ରାଟ୍ ହେଲେ । ସେ ୧୬୫୮ ଖ୍ରୀ: ଅ: ର ଜୁଲାଇ ମାସ ୨୧ ତାରିଖରେ ସିଂହାସନ ଆରୋହଣ କଲେ; କିନ୍ତୁ ତାଙ୍କର ରାଜ୍ୟାଭିଷେକ ଏକ-ବର୍ଷ ପାଇଁ ବିଳମ୍ବ ହୋଇ ଯାଇଥିଲା । କାରଣ ସେତେବେଳକୁ ସେ କେବଳ ମୁରାଦଙ୍କୁ ପରାସ୍ତ କରିଥିଲେ । ତେଣୁ ଦାରା ଓ ସୁଜାଙ୍କୁ ପରିଶେଷରେ ହତ୍ୟା କରି, ୧୬୫୯ ଖ୍ରୀ: ଅ:ର ଜୁନ ମାସ ପାଞ୍ଚ ତାରିଖରେ ଆଡ଼ମ୍ବର ସହକାରେ ସେ ସିଂହାସନ ଆରୋହଣ କଲେ । ଏହି ଉତ୍ସବରେ ସେ ଅକୁଣ୍ଠିତ ଚିତ୍ତରେ ଅର୍ଥ ବ୍ୟୟ କରିଥିଲେ । ରାଜଧାନୀରେ ଭୋଜନ ଓ ଆଲୋକ ସଜ୍ଜାର ସୁବ୍ୟବସ୍ଥା ହୋଇଥିଲା । ସେ ନିଜକୁ "ଆଲମ-ଗୀର" ବା ପୃଥିବୀ ବିଜେତା ଉପାଧିରେ ଭୂଷିତ କରିଥିଲେ ଏବଂ ନିଜେ ଆବୁଲ ମୁଜାଫର ମୁହିଉଦ୍ଦିନ ମହମ୍ମଦ ଆଉରଙ୍ଗଜେବ ବାହାଦୁର ଆଲମଗୀର ବାଦସାହା ଗାଜି ନାମ ଧାରଣ କରି ସିଂହାସନ ଆରୋହଣ କରିଥିଲେ ।

**ଚରିତ୍ର :**

ନିଜର ପିତା ଓ ଭ୍ରାତାମାନଙ୍କ ପ୍ରତି ତାଙ୍କ ବ୍ୟବହାରରୁ ଜଣାଯାଏ ଯେ ତାଙ୍କର ସ୍ୱଭାବ ଅତ୍ୟନ୍ତ ନିଷ୍ଠୁର ଓ କ୍ରୂର ଥିବାରୁ ଅଧିକାଂଶ ତାଙ୍କୁ ଭୟ କରୁଥିଲେ । କେବଳ ରକ୍ଷଣଶୀଳ ଗୋଷ୍ଠୀ ତାଙ୍କୁ ଭଲ ପାଉଥିଲେ । ଅତଏବ ସନ୍ଦେହୀ ଥିବାରୁ ସେ କାହାରିକୁ ବିଶ୍ୱାସ କରୁ ନ ଥିଲେ । ଏପରିକି ନିଜ ସ୍ତ୍ରୀ ଓ ପୁତ୍ରଙ୍କୁ ମଧ୍ୟ ବିଶ୍ୱାସ କରୁ ନ ଥିଲେ । ରାଜନୀତି କ୍ଷେତ୍ରରେ କପଟାଚରଣ କରିବାରେ ସେ ଖୁବ୍ ଧୁରନ୍ଧର ଥିଲେ । ଏଣୁ ତାଙ୍କର କର୍ମଚାରୀ ଓ ଆତ୍ମୀୟସ୍ୱଜନମାନେ ତାଙ୍କ ନିକଟରୁ ସର୍ବଦା ଦୂରରେ ରହିବାକୁ ନିରାପଦ ବୋଲି ଭାବୁଥିଲେ । ଅନ୍ୟମାନଙ୍କ ଉପରେ ବିଶ୍ୱାସ ନ ଥିବାରୁ ସେ କାହାରିକୁ କ୍ଷମତା ନ ଦେଇ ନିଜେ ରାଜ୍ୟର ସମସ୍ତ ବିଷୟ ନିଷ୍ପତ୍ତି ସହିତ ବୁଝୁଥିଲେ । ତଥାପି ଏହି ବିଶାଳ ମୋଗଲ ସାମ୍ରାଜ୍ୟର ସମସ୍ତ ବିଷୟ ଠିକ୍ ଭାବେ ତନ୍ନ ତନ୍ନ କରି ବୁଝିବା ପାଇଁ ସେ ସବୁ-ବେଳେ କ୍ଷମ ହୋଇପାରୁ ନ ଥିଲେ । ବ୍ୟକ୍ତିଗତ ଜୀବନରେ ସେ ଖୁବ୍ ସାହସୀ, ବୀରପୁରୁଷ ଥିଲେ ଏବଂ ଅକ୍ଳାନ୍ତ ପରିଶ୍ରମ କରିବାକୁ କେବେହେଲେ କୁଣ୍ଠାବୋଧ କରୁ ନ ଥିଲେ । ତାଙ୍କର କାର୍ଯ୍ୟପରାୟଣତା ଓ ଦକ୍ଷତା ଅସାଧାରଣ ଥିଲା । ବ୍ୟକ୍ତିଗତ ଚରିତ୍ର ମଧ୍ୟ ଅତି

ପବିତ୍ର ଥିଲା ଏବଂ ସେ ନମ୍ରତାର ସହିତ ଜୀବନଯାପନ କରୁଥିଲେ । ମିତବ୍ୟୟିତା ତାଙ୍କର ପରମ ଲକ୍ଷ୍ୟ ଥିବାରୁ ସେ ଭୋଗ ବିଳାସରେ ନ ମାତି ଜଣେ ସାଧାରଣ ଲୋକପରି ଜୀବନ ନିର୍ବାହ କରୁଥିଲେ । ସେ ଜଣେ ନିଷ୍ଠାପର ସୁନ୍ନୀ ସମ୍ପ୍ରଦାୟର ମୁସଲମାନ ଥିଲେ ଏବଂ ଅନ୍ୟ ଧର୍ମକୁ ଘୃଣା ଚକ୍ଷୁରେ ଦେଖୁଥିଲେ । ଏଥିପାଇଁ ସେ ଜୀବନ ବ୍ୟାପୀ ଯୁଦ୍ଧ କରିବାକୁ ବାଧ୍ୟ ହୋଇଥିଲେ । ଦୀର୍ଘ ଅର୍ଦ୍ଧଶତାବ୍ଦୀ କାଳ ( ୧୬୫୮ ଖ୍ରୀ: ଅ: ରୁ ୧୭୦୭ ଖ୍ରୀ: ଅ: ) ଶାସନ କରିବାର ସୁଯୋଗ ପାଇଥିଲେ ମଧ୍ୟ ନିଜର ରାଜନୈତିକ ଦୂରଦୃଷ୍ଟିର ଅଭାବରୁ ସେ ଗୋଟିକ ପରେ ଗୋଟିଏ ଭୁଲ କରି ବସୁଥିଲେ । ଜୀବନର ଅପରାହ୍ଣରେ ଏହି ବିଶାଳ ମୋଗଲ ସାମ୍ରାଜ୍ୟର ପତନ ସଙ୍କେତ ସେ ପାଇଥିଲେ । ମୋଗଲ ଶାସନ ଧୀରେ ଧୀରେ ଏକ ବ୍ୟକ୍ତିଗତ ବ୍ୟାପାର ହୋଇ ପଡ଼ିଥିବାରୁ ଏଥିରେ ଶିଥିଳତା ଆସିଗଲା ।

## ରାଜ୍ୟସୀମା :

ଜୀବନର ପ୍ରାରମ୍ଭରେ ଅତି ଦୁଃସାଧ୍ୟ କାର୍ଯ୍ୟକୁ ମଧ୍ୟ ଅତି ସହଜରେ ନିଜର ବିଚକ୍ଷଣ ଓ ରାଜନୈତିକ କୌଶଳ ଦ୍ୱାରା ସେ ସାଧନ କରି ପାରୁଥିଲେ, ଏଣୁ ପୂର୍ବପୁରୁଷମାନଙ୍କ ଅପେକ୍ଷା ତାଙ୍କର ରାଜତ୍ୱ କାଳରେ ମୋଗଲ ସାମ୍ରାଜ୍ୟ ଭାରତରେ ବିରାଟ ଆକାର ଧାରଣ କରିଥିଲା । ଭାରତର ପୂର୍ବରେ ଆସାମ ପର୍ଯ୍ୟନ୍ତ ଏବଂ ଦାକ୍ଷିଣାତ୍ୟରେ ସୁଦୂର ବିଜାପୁର ଓ ଗୋଲକୁଣ୍ଡା ପର୍ଯ୍ୟନ୍ତ, ତାଙ୍କର ରାଜ୍ୟ ବିସ୍ତୃତ ଥିଲା । ନିଜର ଅସାଧାରଣ କୃତିତ୍ୱ ଓ କ୍ଷମତା ବଳରେ ଉତ୍ତର-ପଶ୍ଚିମ ସୀମାନ୍ତକୁ ସୁଦୃଢ଼ କରିପାରି ଥିବାରୁ ସେ ସମଗ୍ର ଭାରତର ଅପ୍ରତିଦ୍ୱନ୍ଦ୍ୱୀ ଅଧୀଶ୍ୱର ହୋଇ ପାରିଥିଲେ । ଫଳରେ ତାଙ୍କ ସମୟରେ ମୋଗଲ ସାମ୍ରାଜ୍ୟର ଗୌରବ, ସମୃଦ୍ଧି, ଖ୍ୟାତି ଓ କ୍ଷମତା ଚରମ ସୀମାରେ ଉପନୀତ ହୋଇଥିଲା ।

## ପ୍ରାଥମିକ ପ୍ରଜାମଙ୍ଗଳ କାର୍ଯ୍ୟ :

ଦୀର୍ଘଦିନ ଧରି ଭ୍ରାତୃଯୁଦ୍ଧ ଯୋଗୁ ରାଜ୍ୟର ଶାସନ କ୍ଷେତ୍ରରେ ଚରମ ବିଶୃଙ୍ଖଳା ଦେଖା ଦେଇଥିଲା । ଏହା ଫଳରେ ଲୋକମାନଙ୍କର ଦୁରବସ୍ଥା ବଢ଼ିଗଲା । କରଭାର ଓ ତା' ସାଙ୍ଗକୁ ପୁଣି ଏହି ବିଶୃଙ୍ଖଳା ସେମାନଙ୍କର ଦୈନନ୍ଦିନ ଜୀବନରେ ବହୁ ଦୁଃଖ ଜାତ କଲା । ଭ୍ରାତୃ ଯୁଦ୍ଧ ସମୟରେ ମୋଗଲ ସେନାବାହିନୀର ବିଭିନ୍ନ ସ୍ଥାନକୁ ଯାତାୟାତ କରିବା ଦ୍ୱାରା ଶସ୍ୟ କ୍ଷେତ୍ରମାନ ନଷ୍ଟ ହୋଇ ଯାଇଥିଲା । ଏଣୁ ରାଜ୍ୟରେ ବ୍ୟବସାୟ ବାଣିଜ୍ୟର ଉନ୍ନତି ପରିବର୍ତ୍ତେ ଅବନତି ଘଟିଲା । ତା' ଛଡ଼ା ରାଜ୍ୟର କେତେକ ସ୍ଥାନରେ ମରୁଡ଼ି ଯୋଗୁ ଖାଦ୍ୟାଭାବ ଦେଖା ଦେଲା । ଏଣୁ ସିଂହାସନ ଆରୋହଣ ପରେ ସେ ପ୍ରଜାମାନଙ୍କର ଏହି ଦୁରବସ୍ଥା ନିବାରଣ ପାଇଁ କେତେକ ଖଜଣା, ଶୁଳ୍କ ଓ କର ଉଠାଇ ଦେଲେ । ଯେଉଁ ରହଦାରୀ (Rahdari) ଶୁଳ୍କ ରାଜପଥର ସୀମାରେ ଆଦାୟ ହେଉଥିଲା ତାକୁ ସେ ଉଚ୍ଛେଦ କଲେ । ଏହା ବ୍ୟତୀତ ପଣ୍ଡାରୀ (Pandari) ନାମକ ଏକପ୍ରକାର ଗୃହ କର ବା ପଡ଼ିଆ କର (Ground tax) ମଧ୍ୟ ଉଠାଇ ଦେଇଥିଲେ । ଏହି

କର ଧର୍ମ ନିର୍ବିଶେଷରେ ସମସ୍ତଙ୍କଠାରୁ ଆଦାୟ କରାଯାଉଥିଲା । ହିନ୍ଦୁ ଓ ମୁସଲମାନମାନଙ୍କର ମେଲା ବା ଯାତ୍ରାରେ ଯେଉଁ କର ଆଦାୟ କରାଯାଉଥିଲା ତାହା ମଧ୍ୟ ଉଠାଇ ଦିଆଗଲା । ଏହିପରି ଭାବରେ ସେ ଅଶି ପ୍ରକାର କର ଉଚ୍ଛେଦ କରାଇଥିଲେ । ଫଳରେ ପ୍ରଜାମାନଙ୍କ ଉପରୁ କରଭାର କମିଗଲା ।

## ଧର୍ମ ଓ ଅମୀରମାନଙ୍କ ପ୍ରତି ଅନୁରକ୍ତି :

ପ୍ରଜାମାନଙ୍କର ଦୁଃଖ ଲାଘବ କରିବା ସଙ୍ଗେ ସଙ୍ଗେ ସେ ନିଜର ଅନ୍ତରଙ୍ଗ ବନ୍ଧୁ, ଆତ୍ମୀୟ, ବିଶେଷତଃ ସୁନ୍ନୀ ସମ୍ପ୍ରଦାୟର ମୁସଲମାନ, ଯେଉଁମାନେ ତାଙ୍କୁ ଭ୍ରାତୃ ଯୁଦ୍ଧ ସମୟରେ ସାହାଯ୍ୟ ଓ ସହାନୁଭୂତି ପ୍ରଦର୍ଶନ କରିଥିଲେ, ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଚେଷ୍ଟା କଲେ । ରକ୍ଷଣଶୀଳ ମୁସଲମାନ ମତ ଅନୁଯାୟୀ ରାଜ୍ୟ ଧର୍ମ ଭିତ୍ତିରେ ଗଠିତ ହୋଇଥିବାରୁ ସେ ଏହି ପବିତ୍ର ଧର୍ମକୁ ସୁଦୃଢ଼ କରିବା ନିମିତ୍ତ କର୍ମଚାରୀମାନ ନିଯୁକ୍ତ କଲେ । ଧର୍ମଗ୍ରନ୍ଥ କୋରାନରେ ଯେଉଁସବୁ ନୀତି ଧାରଣ କରାଯାଇଛି, ତାହା ନ କହିବା ପାଇଁ ଲୋକମାନଙ୍କୁ ନିର୍ଦ୍ଦେଶ ଦିଆଗଲା । ଭଗ୍ନ ମସ୍‌ଜିଦ୍‌ଗୁଡ଼ିକର ପୁନଃନିର୍ମାଣ କରାଗଲା, ମଦ୍ୟପାନ ମଧ୍ୟ ରାଜ୍ୟରେ ବନ୍ଦ କରି ଦିଆଗଲା, ସୁଫି ସମ୍ପ୍ରଦାୟର ମୁସଲମାନମାନଙ୍କୁ କଠୋର ଶାସ୍ତିବିଧାନ କରାଗଲା ।

## ମିରଜୁମଲା ଓ ଆସାମ ଆକ୍ରମଣ :

ଏହିସବୁ କାର୍ଯ୍ୟପରେ ସେ ରାଜ୍ୟ ସଙ୍ଗଠନ ତଥା ରାଜ୍ୟ ଜୟ ପାଇଁ ପ୍ରସ୍ତୁତ ହେଲେ । ଭ୍ରାତୃ ଯୁଦ୍ଧରେ ମିରଜୁମଲା ତାଙ୍କୁ ବହୁତ ସାହାଯ୍ୟ କରିଥିବାରୁ ସେ ତାଙ୍କୁ ବଙ୍ଗଦେଶରେ ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ । ମିରଜୁମଲା ଖୁବ୍ କ୍ଷମତାଶାଳୀ ଓ ଉଚ୍ଚାଭିଳାଷୀ ଥିବାରୁ ତାଙ୍କୁ ରାଜଧାନୀଠାରୁ ଦୂରରେ ରଖିବାକୁ ସେ ସମୀଚୀନ ମନେ କଲେ । ଭ୍ରାତୃ ଯୁଦ୍ଧ ସମୟରେ ପୂର୍ବ ସୀମାନ୍ତ ପ୍ରତିରକ୍ଷା କୋହଳ ହୋଇ ପଡ଼ିବାରୁ କୁଚବିହାର ଓ ଆସାମର ଶାସକ ମୋଗଲ ସାମ୍ରାଜ୍ୟ ଅନ୍ତର୍ଗତ କାମରୂପର କେତେକାଂଶ ଅଧିକାର କରିନେଲେ । ପାଖ ତିନି ବର୍ଷ କାଳ ମୋଗଲ ସରକାର ଏହା ବିରୁଦ୍ଧରେ କୌଣସି ପଦକ୍ଷେପ ନେଲେ ନାହିଁ । ଭ୍ରାତୃ ଯୁଦ୍ଧର ଅବସାନ ପରେ ଆଉରଙ୍ଗଜେବ ପୂର୍ବ ସୀମାନ୍ତ ପରିସ୍ଥିତି ପ୍ରତି ଲକ୍ଷ୍ୟ ଦେଲେ । ତେଣୁ ସେ ମିରଜୁମଲାଙ୍କୁ ଏହାର ମୁକାବିଲା କରିବା ପାଇଁ ପଠାଇଲେ । ମିରଜୁମଲା ୧୬୬୧ ଖ୍ରୀ: ଅ: ରେ ଏକ ବିଶାଳ ସେନାବାହିନୀ ନେଇ ଢାକାରୁ କୁଚବିହାର ଆଡ଼କୁ ଅଗ୍ରସର ହେଲେ । ଏହି ସମ୍ବାଦ ପାଇ କୁଚବିହାରର ରାଜା ଭୁଟାନକୁ ପଳାଇଗଲେ । ତାଙ୍କ ପୁଅ ମିରଜୁମଲାଙ୍କଠାରେ ଆତ୍ମସମର୍ପଣ କରିବାରୁ କୁଚବିହାର ମୋଗଲ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେଲା । ପନ୍ଦର ଦିନ ସେଠାରେ ବିଶ୍ରାମ ନେଲା ପରେ ସେ ଆସାମ ଆଡ଼କୁ ଅଗ୍ରସର ହେଲେ । କିନ୍ତୁ ଦୁର୍ଭିକ୍ଷ ଓ ମହାମାରୀ ଯୋଗୁ ତାଙ୍କର ବହୁ ସୈନ୍ୟ

ମୃତ୍ୟୁ ବରଣ କଲେ । କିନ୍ତୁ ମିରଜୁମଲା ଏଥିରେ ଆଦୌ ବିବ୍ରତ ହେଲେ ନାହିଁ । ବର୍ଷା ଋତୁ ପରେ ପୁଣି ସେ ଅଭିଯାନ ଆରମ୍ଭ କଲେ । ଆସାମର ଜଳବାୟୁ ତାଙ୍କ ପକ୍ଷରେ ଅସହ୍ୟ ହେବାରୁ ସେ ପୀଡ଼ିତ ହୋଇ ପଡ଼ିଥିଲେ । ତଥାପି ସେ ତାଙ୍କ ନିଷ୍ପତ୍ତିରୁ କେବେ ହେଲେ ଓହରି ଯାଇ ନ ଥିଲେ । ସର୍ବଶେଷରେ ଆସାମର ରାଜା ଜୟଧ୍ୱଜ ରାଜଧାନୀ ଏବଂ ସମସ୍ତ ସମ୍ପତ୍ତି ଛାଡ଼ି ଜୀବନ ରକ୍ଷା ପାଇଁ ପଳାଇଯିବାରୁ ଆସାମବାସୀମାନେ ଜୟଯୁକ୍ତ ହେବାର କୌଣସି ଆଶା ନ ଦେଖି ଆତ୍ମସମର୍ପଣ କଲେ । ସେମାନେ ମୋଗଲମାନଙ୍କ ସହିତ ଏକ ସନ୍ଧି ଚୁକ୍ତିରେ ଆବଦ୍ଧ ହେଲେ । ରାଜ୍ୟର ଅସ୍ୱାସ୍ଥ୍ୟକର ଜଳବାୟୁ ଏବଂ ଅକ୍ଳାନ୍ତ ପରିଶ୍ରମ ଯୋଗୁ ତାଙ୍କ ସ୍ୱାସ୍ଥ୍ୟରେ ବହୁ ଅବନତି ଘଟିବାରୁ ସେ ୧୬୬୩ ଖ୍ରୀ: ଅ: ର ମାର୍ଚ୍ଚ ମାସ ୩୧ ତାରିଖରେ ମୃତ୍ୟୁ ବରଣ କଲେ । ଆଉରଙ୍ଗଜେବ ମିରଜୁମଲାଙ୍କଠାରୁ ବିପଦ ଆଶଙ୍କା କରୁଥିବାରୁ, ତାଙ୍କର ଏହି ମୃତ୍ୟୁ ସମ୍ବାଦ ପାଇ ବିଶେଷ ଆନନ୍ଦିତ ହୋଇଥିଲେ ଏବଂ ସଙ୍ଗେ ସଙ୍ଗେ ନିଜର ମାମୁଁ ଶାୟସ୍ତାଖାଁଙ୍କୁ ବଙ୍ଗଦେଶର ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ ।

ମୋଗଲମାନଙ୍କର ନୌବାହିନୀ ଶକ୍ତିଶାଳୀ ନ ଥିଲା । ଆରକାନର ରାଜା ପର୍ତ୍ତୁଗୀଜ ନାବିକମାନଙ୍କ ସାହାଯ୍ୟରେ ନିଜର ନୌଶକ୍ତିକୁ ଖୁବ୍ ସୁଦୃଢ଼ କରିପାରିଥିଲେ ଏବଂ ପର୍ତ୍ତୁଗୀଜମାନଙ୍କୁ ଚଟ୍ଟାଗଞ୍ଜଠାରେ ବସତି ସ୍ଥାପନ କରିବା ପାଇଁ ଅନୁମତି ଦେଲେ । ବଙ୍ଗୋପସାଗରରେ ଜଳଦସ୍ୟୁ କାର୍ଯ୍ୟ କରିବା ପର୍ତ୍ତୁଗୀଜମାନଙ୍କର ପ୍ରଧାନ ପେଶା ଥିଲା । ସେମାନେ ଏହି କାର୍ଯ୍ୟ ଧୀରେ ଧୀରେ ଢାକାଠାରେ ଆରମ୍ଭ କରିବାରୁ ବଙ୍ଗଳାର ଶାସନକର୍ତ୍ତା ବଡ଼ ବିବ୍ରତ ହୋଇ ପଡ଼ିଲେ । ସମସ୍ତ ସମୟରେ ସେମାନେ ବଙ୍ଗଳାର ଜଳପଥରେ ଲୁଣ୍ଠନ କାର୍ଯ୍ୟ କରି ମୁସଲମାନ ଓ ହିନ୍ଦୁମାନଙ୍କୁ ବଳାତ୍କାରରେ ଧରିନେଇ ସେମାନଙ୍କୁ କ୍ରୀତଦାସ ରୂପେ ବିକ୍ରୟ କରୁଥିଲେ । ଏଣୁ ଶାୟସ୍ତା ଖାଁ ସମ୍ରାଟଙ୍କର ଅନୁମତି ନେଇ ମୋଗଲ ନୌଶକ୍ତି ବର୍ଦ୍ଧିତ କରାଇ ୧୬୬୬ ଖ୍ରୀ: ଅ: ରେ ଆରକାନର ରାଜାଙ୍କଠାରୁ ବଳାତ୍କାରରେ ଚଟ୍ଟାଗଞ୍ଜ ଅଧିକାର କଲେ ଏବଂ ବ୍ରହ୍ମପୁତ୍ର ନଦୀର ଅବବାହିକାରୁ ପର୍ତ୍ତୁଗୀଜ ଜଳଦସ୍ୟୁମାନଙ୍କୁ ବିତାଡ଼ିତ କଲେ ।

ଆଉରଙ୍ଗଜେବଙ୍କର ଦାକ୍ଷିଣାତ୍ୟ ନୀତି ଆଲୋଚନା କଲେ ଜଣାଯାଏ ଯେ ସେ ମରହଟ୍ଟାମାନଙ୍କ ଦ୍ୱାରା ବହୁ କଷ୍ଟ ଓ ଦୁର୍ଦ୍ଦଶାଗ୍ରସ୍ତ ହେବା ସଙ୍ଗେ ସଙ୍ଗେ, ସେମାନଙ୍କ ଦ୍ୱାରା ପରାସ୍ତ ମଧ୍ୟ ହୋଇଥିଲେ । ଏହି ମରହଟ୍ଟାମାନେ ସେମାନଙ୍କର ନେତା ଶିବାଜୀଙ୍କ ନେତୃତ୍ୱରେ ଅତିଶୟ ଶକ୍ତିଶାଳୀ ଜାତି ରୂପେ ପରିଚିତ ଥିଲେ । ଦାକ୍ଷିଣାତ୍ୟର ଭୌଗୋଳିକ ଅବସ୍ଥା ଏବଂ ମରହଟ୍ଟାମାନଙ୍କର ସମର କୌଶଳ, ଯୁଦ୍ଧ ଚାଳନା ତଥା ସୈନ୍ୟ ପରିଚାଳନା ଯୋଗୁ, ମୋଗଲମାନଙ୍କୁ ବହୁ କ୍ଷତି ଓ ଲାଞ୍ଛନା ସହ୍ୟ କରିବାକୁ ପଡ଼ିଥିଲା । ବହୁ ଚେଷ୍ଟା କରି ଆଉରଙ୍ଗଜେବ ଶିବାଜୀଙ୍କୁ ନିଜର ଅଧୀନସ୍ଥ କରି ନ ପାରି, ଶେଷରେ ତାଙ୍କୁ ଏକ ସାର୍ବଭୌମ ରାଜ୍ୟର ସମ୍ରାଟ ବୋଲି ସେ ସ୍ୱୀକାର କରିବାକୁ ବାଧ୍ୟ ହୋଇ-

ଥିଲେ । କିନ୍ତୁ ଶିବାଜୀଙ୍କ ପରେ ତାଙ୍କ ବଂଶଧରମାନେ ଦୁର୍ବଳ ହୋଇ ପଡ଼ିବାରୁ ସେମାନଙ୍କୁ ପରାସ୍ତ କରିବା ଆଉରଙ୍ଗଜେବଙ୍କ ପକ୍ଷରେ ଖୁବ୍ ସହଜସାଧ୍ୟ ହୋଇ ପଡ଼ିଥିଲା ।

## ରାଜପୁତ୍ ବିଦ୍ୱେଷ ନୀତି :

ସମ୍ରାଟ ଆକବର ଓ ତାଙ୍କର ପୁତ୍ର-ପୌତ୍ରାଦମାନେ ରାଜପୁତ୍ରମାନଙ୍କ ସହିତ ସର୍ବଦା ସୁସମ୍ପର୍କ ସ୍ଥାପନ କରି ସେମାନଙ୍କ ସାହାଯ୍ୟରେ ମୋଗଲ ସାମ୍ରାଜ୍ୟକୁ ସୁଦୃଢ଼ କରିଥିଲେ । ରାଜପୁତ୍ରମାନେ ସେମାନଙ୍କର ପରମ ବନ୍ଧୁ ଓ ସାମ୍ରାଜ୍ୟର ଦୃଢ଼ ସ୍ତମ୍ଭରୂପେ କାର୍ଯ୍ୟ କରୁଥିଲେ । ଅସାଧାରଣ ସାହସ ଓ ବୀରତ୍ୱ ପାଇଁ ରାଜପୁତ୍ମାନେ ମୋଗଲ ସାମ୍ରାଜ୍ୟର ପ୍ରଧାନ ସହାୟକ ବା ପୃଷ୍ଠପୋଷକ ଥିଲେ । ଏହା ବ୍ୟତୀତ ସେମାନେ ଶାସନ କ୍ଷେତ୍ରରେ ଓ ସୈନ୍ୟବାହିନୀରେ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲେ । ସେମାନଙ୍କର ଏହି ବୀରତ୍ୱ ଓ ସାହସ ଯୋଗୁ ରାଜପୁତ୍ ରାଜାମାନେ ମୋଗଲମାନଙ୍କର ପ୍ରାଧାନ୍ୟ ସ୍ୱୀକାର କରୁଥିଲେ ମଧ୍ୟ ନିଜ ନିଜ ରାଜ୍ୟରେ ସ୍ୱାଧୀନ ଭାବରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । କିନ୍ତୁ ଧର୍ମାନ୍ଧ ଆଉରଙ୍ଗଜେବଙ୍କ ପକ୍ଷରେ ଏହା ସହ୍ୟ କରିବା ସମ୍ଭବ ହୋଇପାରି ନ ଥିଲା । ଫଳତଃ ମୋଗଲ ସାମ୍ରାଜ୍ୟ ଦୁର୍ବଳ ହୋଇପଡ଼ିଲା ଏବଂ ରାଜପୁତ୍ମାନେ ଆଉରଙ୍ଗଜେବଙ୍କର ପ୍ରଧାନ ଶତ୍ରୁ ହୋଇ ଉଠିଲେ ।

## ଯଶୋବନ୍ତ ସିଂହ :

ଖାଇବାର ଗିରିପଥ ନିକଟରେ ଥିବା ଜାମରୁଦ (Jamrud) ଠାରେ ମୋଗଲମାନଙ୍କର ଏକ ଫାଣ୍ଡିରେ ମାରବାରର ରାଠୋରମାନଙ୍କର ରାଜା ଯଶୋବନ୍ତ ସିଂହ ଫଉଜଦାର ରୂପେ ନିଯୁକ୍ତ ହୋଇଥିଲେ । ସେ ୧୬୭୮ ଖ୍ରୀ: ଅ: ର ଡିସେମ୍ବର ମାସ ଦଶ ତାରିଖରେ ମୃତ୍ୟୁ ବରଣ କରିବାରୁ ଆଉରଙ୍ଗଜେବ ଅତ୍ୟନ୍ତ ଆନନ୍ଦିତ ହେଲେ । କାରଣ ରାଜା ଯଶୋବନ୍ତ ସିଂହ ଶାଜାହାନଙ୍କ ସମୟରେ ମୋଗଲ ସୈନ୍ୟବାହିନୀର ସେନାପତି ଥିବାରୁ ସେ ସମ୍ରାଟଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଥିଲେ । ଏହା ବ୍ୟତୀତ ସେ ଦାରାଙ୍କ ସପକ୍ଷରେ ଏବଂ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ଧର୍ମାଟ୍ଠାରେ ଯୁଦ୍ଧ କରିଥିଲେ ଓ ଆଉରଙ୍ଗଜେବଙ୍କର ଖଜୁହା (Khajuha) ଠାରେ ଥିବା ସୈନ୍ୟଶ୍ରେଣୀକୁ ଲୁଣ୍ଠନ କରିଥିଲେ । ଏଣୁ ଆଉରଙ୍ଗଜେବ ପ୍ରଥମରୁ ଏହାଙ୍କୁ ସନ୍ଦେହ କରି ନିଜର ଶତ୍ରୁ ବୋଲି ଭାବୁଥିଲେ ଏବଂ ମାରବାରକୁ ଅଧୀନସ୍ଥ କରିବା ପାଇଁ ପ୍ରୟାସୀ ହୋଇ ଉଠିଲେ । ସେଠାରେ ସେ ମୁସଲମାନ କର୍ମଚାରୀମାନଙ୍କୁ ନିଯୁକ୍ତ କଲେ ଏବଂ ସମଗ୍ର ମାରବାର ତାଙ୍କର ଅଧୀନସ୍ଥ ହେଲା । ହିନ୍ଦୁ ମନ୍ଦିର ସବୁ ଧ୍ୱଂସ କରିଦେବା ପାଇଁ ଏବଂ ହିନ୍ଦୁମାନଙ୍କ ଉପରେ ପୁଣି ଜିଜିୟା କର ବସାଇବା ପାଇଁ ସେ ଆଦେଶ ଦେଲେ । ଯଶୋବନ୍ତ ସିଂହଙ୍କର ନାତି (Grand-nephew) ଇନ୍ଦ୍ରସିଂହ ଆଉରଙ୍ଗଜେବଙ୍କୁ ୩୬ ଲକ୍ଷ ଟଙ୍କା ଦେଇ ଯୋଧପୁରର ରାଜା ହେଲେ । ଏହିସବୁ କାର୍ଯ୍ୟ ଶେଷକରି ଆଉରଙ୍ଗଜେବ ଦିଲ୍ଲୀ ଫେରି ଆସିଲେ ।

**ଦୁର୍ଗା ଦାସ :**

ରାଜା ଯଶୋବନ୍ତ ସିଂହଙ୍କର ମୃତ୍ୟୁ ପରେ ଯେତେବେଳେ ତାଙ୍କର ଦୁଇ ରାଣୀ ୧୬୭୯ ଖ୍ରୀ: ଅ: ରେ ସୀମାନ୍ତରୁ ଫେରୁଥିଲେ, ସେତେବେଳେ ସେମାନେ ଲାହୋରଠାରେ ଦୁଇଟି ପୁତ୍ର ଜନ୍ମ କଲେ । ସେଥି ମଧ୍ୟରୁ ଗୋଟିକର ମୃତ୍ୟୁ ହେବାରୁ, ଅନ୍ୟ ପୁତ୍ର ଅଜିତ୍ ସିଂହ ନ୍ୟାୟତଃ ମାରବାରର ଗାଦି ପାଇବା ପାଇଁ ବିବେଚିତ ହେଲେ । ଯଶୋବନ୍ତ ସିଂହଙ୍କର ମନ୍ତ୍ରୀ ଆସ୍କାରନ୍‌ଙ୍କର ପୁତ୍ର ଦୁର୍ଗା ଦାସ ଜଣେ ଅତି ବିଚକ୍ଷଣ ଜ୍ଞାନୀ, କୂଟନୀତିଜ୍ଞ ଓ ଅଭିଜ୍ଞ ବ୍ୟକ୍ତି ଥିଲେ । ସେ ଅଜିତ୍ ସିଂହଙ୍କର ରକ୍ଷଣାବେକ୍ଷଣର ଭାର ନେଇଥିଲେ ଓ ତାଙ୍କ ସପକ୍ଷରେ ମୋଗଲମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଆଉରଙ୍ଗଜେବ ଯୋଧପୁର ସିଂହାସନ ଅଜିତ୍ ସିଂହଙ୍କୁ ପ୍ରଦାନ କରିବା ପାଇଁ ଗୋଟିଏ ସର୍ତ୍ତରେ ରାଜି ହେଲେ । ସର୍ତ୍ତଟି ହେଲା ଯେ ଅଜିତ୍ ସିଂହ ମାରବାରର ଯଦି ରାଜା ହେବେ ତା'ହେଲେ ସେ ମୁସଲମାନ ଧର୍ମ ଗ୍ରହଣ କରିବେ । ଏହାଛଡ଼ା ତାଙ୍କୁ ମୋଗଲ ଅନ୍ତଃପୁରରେ ରଖି ମୋଗଲ ରାଜପୁତ୍ର ପରି ଲାଳନପାଳନ କରିବା ପାଇଁ ଇଚ୍ଛା କଲେ । କିନ୍ତୁ ଏହି ପ୍ରସ୍ତାବ ରାଜପୁତ୍ ରାଠୋର-ମାନଙ୍କୁ ନ୍ୟାୟସଙ୍ଗତ ବୋଲି ବିବେଚିତ ହେଲା ନାହିଁ । ସେମାନେ ଅଜିତ୍ ସିଂହଙ୍କର ଅଧିକାରକୁ ଆଇନଗତ ଭାବରେ ସାବ୍ୟସ୍ତ କରିବା ପାଇଁ ଆଉରଙ୍ଗଜେବଙ୍କୁ ଅନୁରୋଧ କରିବାରୁ, ସେ ସେଥିରେ କର୍ଣ୍ଣପାତ କଲେ ନାହିଁ । ଏଣୁ ରାଠୋରମାନେ ଜଣେ ଲୋକ ବଞ୍ଚିବା ଯାଏ ଯୁଦ୍ଧ କରିବାକୁ ସଂକଳ୍ପ କଲେ ଏବଂ ରାଜବଂଶର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିବା ପାଇଁ ଯୁଦ୍ଧ କରିବେ ବୋଲି ପ୍ରତିଜ୍ଞା କଲେ । ଏଥିପାଇଁ ସେମାନେ ଦୁର୍ଗାଦାସଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ବିଚକ୍ଷଣ ରାଜନୀତିଜ୍ଞ ଦୁର୍ଗାଦାସ ମାରବାରର ରାଜପରିବାର ପ୍ରତି ଏତେ ଅନୁରକ୍ତ ଥିଲେ ଯେ ସେ ସମସ୍ତ ପ୍ରକାର ପ୍ରଲୋଭନକୁ ଏଡ଼ି ଦେଇ ପ୍ରାୟ ୨୫ ବର୍ଷକାଳ ଅଜିତ୍ ସିଂହଙ୍କର ଅଧିକାରକୁ ସାବ୍ୟସ୍ତ କରିବା ପାଇଁ ଯୁଦ୍ଧ କରିଥିଲେ । ରାଣୀମାନଙ୍କୁ ପୁରୁଷ ବେଶରେ ସଜାଇ ସେ ଅଜିତ୍ ସିଂହଙ୍କ ସହିତ ନିର୍ବିଘ୍ନରେ ଜୁଲାଇ ମାସ ୧୬୭୯ ଖ୍ରୀ: ଅ: ରେ ମେବାରର ରାଜଧାନୀ ଯୋଧପୁରକୁ ପଳାଇ ଆସିଲେ । ଯେଉଁ ମୋଗଲ ସୈନ୍ୟମାନେ ଅଜିତ୍ ସିଂହ ଏବଂ ରାଣୀମାନଙ୍କୁ ଧରି ଆଣିବା ପାଇଁ ଯାଇଥିଲେ, ସେମାନଙ୍କୁ ରାଠୋରମାନେ ବାଧା ଦେଇ ତିନି ଥର ପରାସ୍ତ କରିଥିଲେ । ଆଉରଙ୍ଗଜେବ ଏହା ଶୁଣି ଧୀରସ୍ଥିର ଭାବରେ ଗୋଟିଏ ଗଉଡ଼ର ପୁଅକୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଇ ଅଜିତ୍ ସିଂହ ବୋଲି ଘୋଷଣା କରିଦେଲେ ଏବଂ ଦୁର୍ଗାଦାସ ଯେଉଁ ଅଜିତ୍ ସିଂହଙ୍କୁ ନେଇ ଯାଇଅଛନ୍ତି, ସେ ପ୍ରକୃତ ଅଜିତ୍ ସିଂହ ନୁହେଁ ବୋଲି ପ୍ରଚାର କଲେ । ତା'ର ନାମ ହେଲା ମୁହାମ୍ମଦ ରାଜ ।

**ମାରବାର ଆକ୍ରମଣ :**

ଆଉରଙ୍ଗଜେବ ସମସ୍ତ ନଷ୍ଟ ନ କରି ତତ୍‌କ୍ଷଣାତ୍ ମାରବାର ବିରୁଦ୍ଧରେ ଅଭିଯାନ ଆରମ୍ଭ କରି ଦେଲେ ଏବଂ ନିଜେ ଆଜମୀରଠାରେ ଯୁଦ୍ଧ ଘୋଷଣା କରି ପ୍ରତ୍ୟକ୍ଷ ଭାବରେ

ଯୁଦ୍ଧ ପରିଚାଳନା କଲେ । ରାଜପୁତ୍ର ଆକବର ଓ ଆଜମୀରର ଫୌଜଦାର ତହାଉର ଖାଁଙ୍କ ଉପରେ ସୈନ୍ୟ ପରିଚାଳନାର ସମସ୍ତ ଭାର ସେ ନ୍ୟସ୍ତ କଲେ । ରାଜପୁତ୍ରମାନେ ଶେଷରେ ପରାସ୍ତ ହେବାରୁ, ଆଉରଙ୍ଗଜେବ ମାରବାର ଅଧିକାର କରି ରାଜ୍ୟକୁ ବିଭିନ୍ନ ଜିଲ୍ଲାରେ ଭାଗ ଭାଗ କରି ପ୍ରତ୍ୟେକ ଜିଲ୍ଲାକୁ ଜଣେ ମୋଗଲ ଫୌଜଦାର ଅଧୀନରେ ରଖାଇ ଥିଲେ । ମୋଗଲମାନେ ମନ୍ଦିର, ସହର, ବଜାର ସବୁ ଧ୍ୱଂସ କରି ଲୁଟ କଲେ । ଏହା ଫଳରେ ରାଠୋରମାନେ ମରୁଭୂମି ଓ ପାର୍ବତ୍ୟ ଅଞ୍ଚଳରେ ଆଶ୍ରୟ ନେଲେ ।

**ରାଜସିଂହ :**

ଯଶୋବନ୍ତ ସିଂହଙ୍କର ରାଣୀ ମେବାରର ରାଜକନ୍ୟା ଥିବାରୁ, ସେ ମେବାରର ରାଣୀ ରାଜସିଂହଙ୍କର ସାହାଯ୍ୟ ପ୍ରାର୍ଥନା କଲେ । ଏଣୁ ମେବାରର ଅଧିବାସୀ ଶିଶୋଦିଆମାନେ ଏହି ପିତୃହୀନ ବାଳକର ଦାୟିତ୍ୱ ବହନ କଲେ । ଏହାଛଡ଼ା ମାରବାର ଯଦି ଚିରଦିନ ପାଇଁ ମୋଗଲମାନଙ୍କର କରଗତ ହୋଇଯାଏ ମେବାର ମଧ୍ୟ କେବେହେଲେ ଶାନ୍ତିରେ ରହି ପାରିବ ନାହିଁ ବୋଲି ସେମାନଙ୍କର ବିଶ୍ୱାସ ଥିଲା । ଆଉରଙ୍ଗଜେବ ହିନ୍ଦୁମାନଙ୍କୁ ଜିଜିୟା କର ଆଦାୟ କରୁଥିଲେ । ରାଜସିଂହ ରାଜସ୍ଥାନର ମୁଖ୍ୟ ଥିବାରୁ, ରାଜପୁତ୍ରମାନଙ୍କୁ ଓ ହିନ୍ଦୁ ଦେବ ଦେବୀଙ୍କୁ ମୋଗଲମାନଙ୍କ କବଳରୁ ରକ୍ଷା କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରୁଥିଲେ । ନିଜର ସ୍ୱାର୍ଥ ଏବଂ ଜାତିର ମର୍ଯ୍ୟାଦା ରକ୍ଷା କରିବା ପାଇଁ ସେ ଦୁର୍ଗା ଦାସଙ୍କ ସହିତ ଏକମତ ହୋଇ ମୋଗଲମାନଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ବାଧ୍ୟ ହୋଇଥିଲେ । ଏହା ଫଳରେ ରାଜପୁତ୍ରମାନଙ୍କର ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହେଲା ।

**ମେବାର ଆକ୍ରମଣ :**

ଏହା ଦେଖି ଆଉରଙ୍ଗଜେବ ଉଦୟପୁର ଛାଡ଼ି ମେବାର ଅଭିମୁଖେ ଯାତ୍ରା କଲେ ଏବଂ ହାସନ୍‌ଅଲ୍ଲୀ ଖାଁଙ୍କୁ ରାଜସିଂହଙ୍କ ବିରୁଦ୍ଧରେ ପଠାଇଲେ । କିନ୍ତୁ ରାଣା ଆଉରଙ୍ଗଜେବଙ୍କ ସହିତ କୌଣସି ମୁକାବିଲା ନ କରି ମେବାରର ପାର୍ବତ୍ୟ ଅଞ୍ଚଳକୁ ପଳାଇ ଯାଇ ଶତ୍ରୁର ଅପେକ୍ଷା କଲେ । ଏହା ଫଳରେ ଆଉରଙ୍ଗଜେବ ସମସ୍ତ ସମ୍ପତ୍ତି ଅପହରଣ କଲେ । ହାସନ୍‌ଅଲ୍ଲୀ ଖାଁ ମେବାରର ରାଜଧାନୀ ଉଦୟପୁର ଓ ଚିତୋର ଦୁର୍ଗ ଅଧିକାର କରି ବହୁ ଦେବ ଦେବୀ ମନ୍ଦିର ଧ୍ୱଂସ କରିଥିଲେ । ଆଉରଙ୍ଗଜେବ ରାଜପୁତ୍ର ଆକବରଙ୍କୁ ଚିତୋର ଦାୟିତ୍ୱରେ ରଖି ନିଜେ ଆଜମୀରକୁ ଫେରି ଆସିଲେ । କିନ୍ତୁ ରାଜପୁତ୍ରମାନେ ମୋଗଲମାନଙ୍କ ସହିତ ଗରିଲା ଯୁଦ୍ଧ ଚାଲୁରଖି ସେମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ହଠାତ୍ ଦିନେ ରାତିରେ ରାଜପୁତ୍ରମାନେ ଚିତୋର ନିକଟରେ ଥିବା ଆକବରଙ୍କର ସୈନ୍ୟ ଛାଉଣୀ ଉପରେ ଅପ୍ରତ୍ୟାଶିତ ଭାବରେ ଆକ୍ରମଣ କରି ମୋଗଲମାନଙ୍କୁ ହତ୍ୟା କଲେ । ଏହି

ଯୁଦ୍ଧରେ ଆକବରଙ୍କର ଅକୃତକାର୍ଯ୍ୟ ହେବା ଦେଖି ଆଉରଙ୍ଗଜେବ ବିରକ୍ତ ହୋଇ, ରାଜପୁତ୍ର ଆଜାମ୍‌ଙ୍କୁ ମେବାର ପଠାଇ ଚିତୋର ଦୁର୍ଗର ଦାୟିତ୍ୱ ନେବା ପାଇଁ ଆଦେଶ ଦେବା ସଙ୍ଗେ ସଙ୍ଗେ ଆକବରଙ୍କୁ ମାରବାରକୁ ପଠାଇଲେ ଏବଂ ମେବାର ଆକ୍ରମଣ ପାଇଁ ଆଉ ଗୋଟିଏ ନୂଆ ଯୋଜନା କଲେ ।

ସେ ତିନୋଟି ମୋଗଲ ସୈନ୍ୟବାହିନୀଙ୍କୁ ତିନି ଦିଗରୁ ମେବାରର ପାର୍ବତ୍ୟ ଅଞ୍ଚଳ ଆକ୍ରମଣ ପାଇଁ ପଠାଇଲେ । ପ୍ରଥମ ସେନାବାହିନୀ ରାଜପୁତ୍ର ଆଜାମ୍‌ଙ୍କ ନେତୃତ୍ୱରେ ଉଦୟପୁର ଆକ୍ରମଣ ପାଇଁ ମେବାରର ପୂର୍ବ ଦିଗରୁ ଅଭିଯାନ ଆରମ୍ଭ କଲେ । ଦ୍ୱିତୀୟ ବାହିନୀ ମୁଆଜାମଙ୍କ ଅଧୀନରେ ଉତ୍ତର ଆଡ଼ୁ ମେବାର ଆକ୍ରମଣ କଲେ ଏବଂ ତୃତୀୟ ସୈନ୍ୟବାହିନୀ ଆକବରଙ୍କ ନିର୍ଦ୍ଦେଶରେ ରାଜ୍ୟର ପଶ୍ଚିମ ଦିଗରୁ ଆକ୍ରମଣ କଲେ । କିନ୍ତୁ ପ୍ରଥମ ଦୁଇ ରାଜପୁତ୍ର ମେବାର ଭିତରକୁ ପ୍ରବେଶ କରି ପାରିଲେ ନାହିଁ । ଆକବର ଏହି ଯୁଦ୍ଧରେ ଅଳ୍ପ କିଛିଦୂର ଅଗ୍ରସର ହୋଇଥିଲେ ମଧ୍ୟ ଆଉରଙ୍ଗଜେବଙ୍କର ତାଙ୍କ ପ୍ରତି ବ୍ୟବହାର ଓ ସମ୍ରାଟଙ୍କର ରାଜପୁତ୍‌ମାନଙ୍କ ପ୍ରତି ପ୍ରତିକ୍ରିୟାଶୀଳ ନୀତି ଯୋଗୁ ଅତ୍ୟନ୍ତ ବିରକ୍ତ ଓ କ୍ଷୁବ୍‌ଧ ହୋଇଥିଲେ । ସମ୍ରାଟଙ୍କର ଏହି ଉତ୍କଟ ଧର୍ମୋନ୍ମାଦନା ମୋଗଲ ରାଜ୍ୟ ପ୍ରତି ଆତ୍ମଘାତୀ କାର୍ଯ୍ୟ ହେବ ବୋଲି ଜାଣି, ସେ ରାଜପୁତ୍‌ମାନଙ୍କ ସହିତ ଯୋଗଦେଇ ପତନୋନ୍ମୁଖୀ ମୋଗଲ ସାମ୍ରାଜ୍ୟକୁ ରକ୍ଷା କରିବା ପାଇଁ କଳ୍ପନା କଲେ ।

## ଆକବରଙ୍କ ବିଦ୍ରୋହ :

ରାଜପୁତ୍ ନେତାମାନେ ପିତା ପୁତ୍ରଙ୍କର ଏହି ମନୋମାଳିନ୍ୟର ସୁଯୋଗ ନେଇ ଆକବରଙ୍କୁ ଏକ ନୂତନ ଆଶାରେ ଉତ୍ସାହିତ କରିବାକୁ ଲାଗିଲେ । ସମ୍ରାଟ ଆକବରଙ୍କ ରାଜତ୍ୱ କାଳରେ ରାଜପୁତ୍‌ମାନେ ଯେପରି ମୋଗଲମାନଙ୍କର ପରମ ବନ୍ଧୁ ଓ ସାମ୍ରାଜ୍ୟର ପୃଷ୍ଠପୋଷକ ଥିଲେ, ରାଜପୁତ୍ର ଆକବରଙ୍କୁ ମଧ୍ୟ ସମ୍ରାଟ କରି ସେମାନେ ସେହିପରି ବନ୍ଧୁତା କରିବେ ବୋଲି ଶପଥ କଲେ । ରାଜପୁତ୍ର ଆକବର ଏଥିରେ ଆନନ୍ଦିତ ହୋଇ ଏବଂ ସାହସ ପାଇ ସମ୍ରାଟଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର କରି ୧୬୮୧ ଖ୍ରୀ: ଅ: ରେ ମୋଗଲ ସିଂହାସନ ପାଇଁ ବିଦ୍ରୋହ ଆରମ୍ଭ କଲେ । ନିଜକୁ ମୋଗଲ ସମ୍ରାଟ ବୋଲି ଘୋଷଣା କରି ସେ ରାଜପୁତ୍ ଓ ନିଜର ସୈନ୍ୟମାନଙ୍କୁ ସାଙ୍ଗରେ ନେଇ ଆଉରଙ୍ଗଜେବଙ୍କୁ ଅତର୍କିତ ଭାବରେ ଆକ୍ରମଣ କଲେ । ଏହା ଦେଖି ଆଉରଙ୍ଗଜେବ ଖୁବ୍ ଆତଙ୍କିତ ଓ ବିଚଳିତ ହୋଇ ପଡ଼ିଲେ ଏବଂ ନିରୁତ୍ସାହ ହୋଇ କହିଲେ "ମୁଁ ବର୍ତ୍ତମାନ ନିରାଶ୍ରୟ । ଯୁବକ ରାଜପୁତ୍ର ଗୋଟିଏ ଉତ୍ତମ ସୁଯୋଗ ପାଇଛି । ଏଣୁ ସେ ବର୍ତ୍ତମାନ ଆଉ ବିଳମ୍ବ କରୁଛି କାହିଁକି ?" ଯଦି ଆକବର ଶୀଘ୍ର ଆଜମୀର ଆଡ଼କୁ ଅଗ୍ରସର ହୋଇଥାନ୍ତେ, ତାହାହେଲେ ଆଉରଙ୍ଗଜେବଙ୍କୁ ଅତି ସହଜରେ ପରାସ୍ତ କରି ପାରିଥାନ୍ତେ । କିନ୍ତୁ ସେ ଆମୋଦ ପ୍ରମୋଦରେ ସମସ୍ତ ନଷ୍ଟ କରି-

ବାକୁ ଲଗିଲେ । ଏହାଛଡ଼ା ରାଜସିଂହଙ୍କର ହଠାତ୍ ମୃତ୍ୟୁ ହେବାରୁ ଏବଂ ତାଙ୍କ ପୁତ୍ର ଜୟସିଂହଙ୍କର ସିଂହାସନ ଆରୋହଣ ଯୋଗୁ ବିଳମ୍ବ ହେବାରୁ, ସେ ଆଉରଙ୍ଗଜେବଙ୍କୁ ଠିକ୍ ସମୟରେ ଆକ୍ରମଣ କରି ପାରିଲେ ନାହିଁ । ଏହି ସୁଯୋଗରେ ଆଜାମ୍ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇଗଲେ । ଆକବର ମଧ୍ୟ ଆଉ କାଳକ୍ଷେପଣ ନ କରି ଯେତେବେଳେ ଯୁଦ୍ଧ ପାଇଁ ପ୍ରସ୍ତୁତ ହେଲେ, ସେତେବେଳେ ଆଉରଙ୍ଗଜେବ କୂଟନୀତି ଦ୍ୱାରା ଆକବରଙ୍କର ସମସ୍ତ କୌଶଳ ପଣ୍ଡ କରିଦେଲେ । ସେ କୌଶଳ କ୍ରମେ ଆକବରଙ୍କ ନିକଟକୁ ଖଣ୍ଡିଏ ମିଛ ଚିଠି ଲେଖିଲେ ଯେ ରାଜପୁତ୍‌ମାନଙ୍କୁ ତାଙ୍କ ଉପଦେଶ ଅନୁସାରେ ବୋକା ବନାଇ ଦେଇ ଥିବାରୁ ତାଙ୍କୁ ସେ କୃତଜ୍ଞତା ଜ୍ଞାପନ କରୁଛନ୍ତି ଏବଂ ରାଜପୁତ୍‌ମାନଙ୍କୁ ଏପରି ଗୋଟିଏ ଅବସ୍ଥାକୁ ସେ ଆଣିବେ ଯାହାଦ୍ୱାରା କି ସେମାନେ ସହଜରେ ପରାସ୍ତ ହେବେ । ସେହି ଚିଠି ଖଣ୍ଡିକ କୌଶଳରେ ଦୁର୍ଗା ଦାସଙ୍କ ନିକଟକୁ ପଠାଇ ଦିଆଗଲା । ଏହି ଚିଠି ଯୋଗୁ ରାଜପୁତ୍‌ମାନେ ଆକବରଙ୍କୁ ସନ୍ଦେହ କଲେ ଯେ ଆକବର ସେମାନଙ୍କୁ ପ୍ରତାରଣା କରିଛନ୍ତି । ଏଣୁ ସେମାନେ ତାଙ୍କୁ ଛାଡ଼ି ପଳାଇଗଲେ ଓ ସୈନ୍ୟମାନଙ୍କ ମଧ୍ୟରେ ବିଭେଦ ଦେଖାଯିବାରୁ ସେ ଯୁଦ୍ଧକ୍ଷେତ୍ରରୁ ପଳାୟନ କଲେ । ଉତ୍ତର ଭାରତରେ ଆକବର ବିପଦ ମୁକ୍ତ ନ ହେବାରୁ, ସେ ଦାକ୍ଷିଣାତ୍ୟରେ ଶମ୍ଭୂଜୀଙ୍କର ଶରଣାପନ୍ନ ହେଲେ । ଦୁର୍ଗା ଦାସ ପରେ ଆଉରଙ୍ଗଜେବଙ୍କର ଏହି କପଟ ବୁଦ୍ଧିପାଇଁ ଆକବରଙ୍କୁ ମହାରାଷ୍ଟ୍ର ପଳାଇବାକୁ ସାହାଯ୍ୟ କରିଥିଲେ । କିନ୍ତୁ ୧୭୦୪ ଖ୍ରୀ: ଅ: ରେ ସେ ପାରସ୍ୟକୁ ପଳାଇ ଯାଇ ସେଠାରେ ପ୍ରାଣତ୍ୟାଗ କରିଥିଲେ ।

**ମୋଗଲ ଓ ରାଜପୁତ୍ ସନ୍ଧି :**

ଏହାଦ୍ୱାରା ମୋଗଲମାନଙ୍କ ସହିତ ମେବାରର ଯୁଦ୍ଧ ବନ୍ଦ ହେଲା ନାହିଁ ଏବଂ ଦୁଇ ପକ୍ଷ ଏହି ଯୁଦ୍ଧରେ ବହୁତ କ୍ଷତି ସହ୍ୟ କଲେ । ପରିଶେଷରେ ୧୬୮୧ ଖ୍ରୀ: ଅ: ରେ ମୋଗଲ ଓ ରାଜପୁତ୍‌ମାନଙ୍କ ମଧ୍ୟରେ ଶାନ୍ତି ସ୍ଥାପିତ ହେଲା । ଏହା ଫଳରେ ଜୟସିଂହ ଜିଜିୟା କର ପରିବର୍ତ୍ତେ କେତେକ ଜିଲ୍ଲା ମୋଗଲମାନଙ୍କୁ ସମର୍ପଣ କଲେ ଏବଂ ଜୟସିଂହ ପୁଣି ରାଣା ହେଲେ । ଏହି ଶାନ୍ତି ସ୍ଥାପନ କରିବାର ପ୍ରଧାନ କାରଣ ହେଲା ଯେ ଆକବର ଶମ୍ଭୂଜୀଙ୍କ ସହିତ ଯୋଗ ଦେବାରୁ, ଆଉରଙ୍ଗଜେବ ଅତିଶୟ ବିଚଳିତ ହୋଇ ପଡ଼ିଥିଲେ ଏବଂ ଦାକ୍ଷିଣାତ୍ୟରେ ତାଙ୍କର ସମସ୍ତ ଶକ୍ତି ନିୟୋଜିତ କଲେ । ରାଠୋରମାନେ ନିଜର ସ୍ୱାଧୀନତା ପାଇଁ ଦୁର୍ଗା ଦାସଙ୍କ ନେତୃତ୍ୱରେ ପ୍ରାୟ ୩୦ ବର୍ଷ ପର୍ଯ୍ୟନ୍ତ ଅର୍ଥାତ୍ ୧୭୦୯ ଖ୍ରୀ: ଅ: ପର୍ଯ୍ୟନ୍ତ ମୋଗଲମାନଙ୍କ ସହିତ ଗରିଲା ଯୁଦ୍ଧ ଚଳାଇଲେ । ଆଉରଙ୍ଗଜେବଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ବାହାଦୂରଶାହ ଅଜିତ୍ ସିଂହଙ୍କୁ ମାରବାରର ରାଣା ବୋଲି ଶେଷରେ ସ୍ୱୀକାର କଲେ ।

ଏହି ଯୁଦ୍ଧ ଫଳରେ ମୋଗଲ ସାମ୍ରାଜ୍ୟର ବହୁତ କ୍ଷତି ହୋଇଥିଲା ଏବଂ ସାରା ହିନ୍ଦୁସ୍ଥାନରେ ଆଉରଙ୍ଗଜେବଙ୍କର ସମ୍ମାନରେ ଆଞ୍ଚ ଆସିଥିଲା । ରାଜପୁତ୍ର ଆକବରଙ୍କର

ଆଚରଣ ଯୋଗୁ ତାଙ୍କର ଶତ୍ରୁମାନେ ପ୍ରବଳ ହୋଇ ଉଠିଲେ । ସମ୍ରାଟ ଅକବରଙ୍କ ସମୟରେ ଯେଉଁ ବୀର ରାଜପୁତ୍ ବନ୍ଧୁମାନେ ମୋଗଲ ସାମ୍ରାଜ୍ୟ ଗଠନ ପାଇଁ ଜୀବନ ଦେଇଥିଲେ, ସେମାନେ ଆଉରଙ୍ଗଜେବଙ୍କର ଧର୍ମ ନୀତି, କ୍ରୂର ବ୍ୟବହାର, ପ୍ରତିକ୍ରିୟା-ଶୀଳତା ଯୋଗୁ ମୋଗଲ ସାମ୍ରାଜ୍ୟର ପତନ ପାଇଁ ସର୍ବଦା ଚେଷ୍ଟା କଲେ ।

## ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳ :

ଆଉରଙ୍ଗଜେବଙ୍କର ସୀମାନ୍ତ ନୀତି ଆଲୋଚନା କଲେ ଜଣାଯାଏ ଯେ ସେ ସେଥିରେ ମଧ୍ୟ ଆଶାନୁରୂପ ଫଳ ପାଇନଥିଲେ । ଉତ୍ତର-ପଶ୍ଚିମ ସୀମାନ୍ତରେ ଆଫଗାନ-ମାନେ ବାସ କରୁଥିଲେ । ସେମାନେ ମୁସଲମାନ ଧର୍ମାବଲମ୍ବୀ ଥିଲେ ମଧ୍ୟ ମୋଗଲମାନଙ୍କୁ ଭଲ ପାଉନଥିଲେ । ସେମାନେ ଖୁବ୍ ଭୟଙ୍କର ଓ ଦଣ୍ଡୁଆ ପ୍ରକୃତିର ଲୋକ ଥିଲେ । ଉତ୍ତର-ପଶ୍ଚିମ ସୀମାନ୍ତ ଅନୁର୍ବର ଓ ପାହାଡ଼ିଆ ଅଞ୍ଚଳ ହୋଇଥିବା ଯୋଗୁ ଓ ସେଠାରେ କୌଣସି ଶସ୍ୟ ଉତ୍ପନ୍ନ ହେଉ ନ ଥିବାରୁ, ସେଠାକାର ବାସିନ୍ଦାମାନେ କେବେହେଲେ ଦଳବଦ୍ଧ ହୋଇ ବାସ କରି ନିଜକୁ ଗୋଟିଏ ଜାତିରେ ପରିଣତ କରିବା ପାଇଁ ଚେଷ୍ଟା କରୁ ନ ଥିଲେ । ଜୀବନ ନିର୍ବାହ ପାଇଁ ପ୍ରତିବେଶୀ ରାଷ୍ଟ୍ରରେ ଚୋରି ଡକାୟତି କରିବା ଏବଂ ମୋଗଲ ରାଜ୍ୟମାନଙ୍କରେ ଲୁଣ୍ଠନ କରିବା ସେମାନଙ୍କର ପେସା ଥିଲା । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀରେ ଆଫଗାନମାନେ ଦିଲ୍ଲୀ ସରକାରଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ମୋଗଲ ସମ୍ରାଟମାନେ ଏମାନଙ୍କୁ ବଳାତ୍କାରରେ କବଳିତ କରିବା କଠିନ ବୋଲି ଜାଣି ସେମାନଙ୍କୁ ଲାଞ୍ଚ ଦେଇ ରାସ୍ତାଘାଟ ଓ ସୀମାନ୍ତ ରାଜ୍ୟରେ ଶାନ୍ତି ସ୍ଥାପନ କରୁଥିଲେ । ଆଉରଙ୍ଗଜେବ ଏଥିପାଇଁ ସୀମାନ୍ତ ରକ୍ଷୀ ମୁଖ୍ୟମାନଙ୍କୁ ଛ' ଲକ୍ଷ ଟଙ୍କା ଦେଉଥିଲେ । କିନ୍ତୁ ଏହି ଲାଞ୍ଚ ଦେବା ପ୍ରଥା ସର୍ବଦା ସଫଳ ହେଲା ନାହିଁ । କାରଣ ଆଫଗାନମାନଙ୍କର ଦଳପତି ସର୍ବଦା ବଦଳି ଯାଉଥିବାରୁ ପ୍ରତ୍ୟେକ ନୂଆ ଦଳପତି ମୋଗଲମାନଙ୍କଠାରୁ ଟଙ୍କା ଲାଞ୍ଚ ନେଉଥିଲେ ।

## ଇସୁଫଝାଇ ବିଦ୍ରୋହ :

ଶାଜାହାନଙ୍କ ରାଜତ୍ୱ ପର୍ଯ୍ୟନ୍ତ ଉତ୍ତର-ପଶ୍ଚିମ ସୀମାନ୍ତରେ କୌଣସି ପ୍ରକାର ଗୋଳମାଳ ବା ମୋଗଲମାନଙ୍କ ବିରୁଦ୍ଧରେ କୌଣସି ବିଦ୍ରୋହ ହୋଇ ନ ଥିଲା । କିନ୍ତୁ ଶାଜାହାନଙ୍କ ପରେ କେନ୍ଦ୍ର ସରକାର ଦୁର୍ବଳ ହୋଇ ପଡ଼ିବାରୁ ଏହି ପାହାଡ଼ିଆ ଜାତିମାନେ ପୁଣି ମୋଗଲମାନଙ୍କ ବିରୁଦ୍ଧରେ ବିଦ୍ରୋହୀ ହୋଇ ଉଠିଲେ । ୧୬୬୭ ଖ୍ରୀ: ଅ: ରେ ପେଶବାରର ଉତ୍ତରରେ ଥିବା ସ୍ୱାଟ ଓ ବଜୌର (Bajaur) ଜିଲ୍ଲାରେ ବାସ କରୁଥିବା ଇସୁଫଝାଇମାନଙ୍କର ନେତା ଭଗୁ, ମୁହାମ୍ମଦ ସାହା ନାମକ ଜଣେ ଛଦ୍ମବେଶୀଙ୍କୁ ରାଜା କରାଇ ମୋଗଲ ସାମ୍ରାଜ୍ୟର ହାଜରା ଜିଲ୍ଲା ଆକ୍ରମଣ କଲେ ।

ଅନ୍ୟ ଇସୁଫଝାଇ ଜାତିମାନେ ମୋଗଲମାନଙ୍କୁ ଆଫଗାନ ଅଞ୍ଚଳକୁ ପ୍ରବେଶ କରିବା ପାଇଁ ବାଧା ଦେଲେ । ଏହା ଦେଖି ଆଉରଙ୍ଗଜେବ ସେନାପତି କମିଲ ଖାଁ, ଶାମସିର୍ ଖାଁ ଓ ମୁହାମ୍ମଦ ଅମୀନ ଖାଁଙ୍କୁ ସେମାନଙ୍କ ବିରୁଦ୍ଧରେ ପଠାଇ ବିଦ୍ରୋହ ଦମନ କରାଇଲେ । ମୋଗଲମାନେ ସେମାନଙ୍କର ଘରଦ୍ୱାର ଓ ଧନ ସମ୍ପତ୍ତି ଲୁଣ୍ଠନ କରି ସେମାନଙ୍କୁ ଏପରି ଭାବରେ ଭୟଭୀତ କରାଇଥିଲେ ଯେ ଆଫଗାନମାନେ କିଛିଦିନ ପାଇଁ ଆଉ କୌଣସି ପ୍ରକାର ବିଦ୍ରୋହ ଆଚରଣ କରି ନ ଥିଲେ । ଏହି ଅଞ୍ଚଳର ସୁରକ୍ଷା ପାଇଁ ସେ ମାରବାରର ରାଜା ଯଶୋବନ୍ତ ସିଂହଙ୍କୁ ଉତ୍ତର-ପଶ୍ଚିମ ସୀମାନ୍ତରେ ଥିବା ଜାମୁଗଡ଼ ଫାଣ୍ଡିରେ ନିଯୁକ୍ତ କରିଥିଲେ ।

## ଅଫ୍ରିଦିମାନଙ୍କ ବିଦ୍ରୋହ :

ପୁନଶ୍ଚ ୧୬୭୨ ଖ୍ରୀ: ଅ: ରେ ଆଫ୍ରିଦିମାନେ ମୋଗଲମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ । ଆଫ୍ରିଦିମାନଙ୍କର ମୁଖ୍ୟ ଆକମଲ ଖାଁ ରାଜା ହୋଇ ସମସ୍ତ ପଠାଣ-ମାନଙ୍କୁ ଏକତ୍ରିତ କରି ମୋଗଲମାନଙ୍କ ବିରୁଦ୍ଧରେ ଧର୍ମଯୁଦ୍ଧ ଘୋଷଣା କଲେ । ଆଫ-ଗାନସ୍ଥାନର ଗଭର୍ଣ୍ଣର ମୁହାମ୍ମଦ ଅମୀନ ଖାଁଙ୍କୁ ସେମାନେ ଅତି ପ୍ରଚଣ୍ଡ ଆକ୍ରମଣ କରିବାରୁ ସେ ନିଜ ସେନାବାହିନୀ ଓ ସ୍ତ୍ରୀମାନଙ୍କୁ ଛାଡ଼ି ପଳାଇ ଆସି ଜୀବନ ରକ୍ଷା କଲେ । ଏହି ସ୍ତ୍ରୀମାନଙ୍କୁ ପଠାଣମାନେ କ୍ରୀତଦାସୀ ରୂପେ ଗ୍ରହଣ କଲେ । ଏହିପରି କୃତକାର୍ଯ୍ୟ ହୋଇ ଆଫ୍ରିଦିମାନେ ଆଶାବାଦୀ ହୋଇ ସମଗ୍ର ସୀମାନ୍ତ ରାଜ୍ୟରେ ବିଦ୍ରୋହର ନିଆଁ ଜାଳି ଦେଲେ । ଆଉରଙ୍ଗଜେବ ଅମୀନ ଖାଁଙ୍କର ଅକ୍ଷମତା ଯୋଗୁ ମହବତ୍ ଖାଁଙ୍କୁ ଆଫଗାନ-ସ୍ଥାନର ଗଭର୍ଣ୍ଣର ରୂପେ ନିଯୁକ୍ତ କଲେ । କିନ୍ତୁ ମହବତ୍ ଖାଁ ବିଦ୍ରୋହୀମାନଙ୍କ ସହିତ ଏକ ଗୁପ୍ତ ମନ୍ତ୍ରଣା କରି ଖାଇବାର ଗିରିପଥ ବନ୍ଦ କରିଦେବାରୁ ଆଉରଙ୍ଗଜେବ ବିରକ୍ତ ହୋଇ ସୁଜାତ ଖାଁଙ୍କୁ ଏହି ବିଦ୍ରୋହ ଦମନ ପାଇଁ ସୀମାନ୍ତ ରାଜ୍ୟକୁ ପଠାଇଲେ । କିନ୍ତୁ ସେ ଅଫ୍ରିଦିମାନଙ୍କ ଦ୍ୱାରା ପରାସ୍ତ ହୋଇ ଶେଷରେ ମୃତ୍ୟୁ ବରଣ କଲେ । ଏହି ବିଦ୍ରୋହରେ ମୋଗଲମାନଙ୍କର ବହୁତ କ୍ଷତି ହେବାରୁ ଆଉରଙ୍ଗଜେବ ନିଜେ ୧୬୭୪ ଖ୍ରୀ: ଅ: ରେ ଏହାର ମୁକାବିଲା କରିବା ପାଇଁ ଏକ ବିରାଟ ସୈନ୍ୟବାହିନୀ ସହିତ ଉତ୍ତର-ପଶ୍ଚିମ ସୀମାନ୍ତକୁ ଯାତ୍ରା କଲେ । ସେନାବାହିନୀର ପରିଚାଳନା ପାଇଁ ସେ ସେଠାରେ ପ୍ରାୟ ଦେଢ଼ବର୍ଷ ପର୍ଯ୍ୟନ୍ତ ରହିବାକୁ ବାଧ୍ୟ ହୋଇଥିଲେ । ସାହସ ଓ କୂଟନୀତିଦ୍ୱାରା ସେ ବହୁ ପାହାଡ଼ିଆ ଜାତି ଉପଜାତିମାନଙ୍କୁ କରଗତ କଲେ । ଏହାଛଡ଼ା କେତେକଙ୍କୁ ମଧ୍ୟ ପେନ୍‌ସନ୍, ଜାଗିର ଏବଂ ମୋଗଲ ସୈନ୍ୟ ବିଭାଗରେ ଚାକିରି ଦେଇ ସେମାନଙ୍କୁ ନିଜର ଆୟତ୍ତକୁ ଆଣିଥିଲେ । କିନ୍ତୁ ତେବେ ସୁଦ୍ଧା ଘୋରାଇ (Ghorai), ଘିଲଝାଇ (Ghiljhai), ସିରାନି (Shirani) ପ୍ରଭୃତି କେତେକ ପାହାଡ଼ିଆ ଜାତି ମୋଗଲ-ମାନଙ୍କ ସହିତ ଅନବରତ ଯୁଦ୍ଧ କଲେ । ଶେଷରେ ମୋଗଲ ସେନାପତି ଉଇଦ୍ଗୁର ଖାଁ




(Uighur Khan) ସେନାନଙ୍କୁ ପରାସ୍ତ କରିବାରୁ ସେମାନେ ମୋଗଲ ମାନଙ୍କର ଅଧୀନତା ସ୍ୱୀକାର କଲେ । କମ୍ବଦନ୍ତୀ ଅନୁସେ ଉଇଘୁର ଖାଁ

ଜଣେ ଦୁର୍ଦ୍ଧାନ୍ତ ସେନାପତି ଥିବାରୁ, ତାଙ୍କ ନାମ ଶୁଣିଲା ମାତ୍ରେ ଆଫଗାନ ମାଆମାନେ ନିଜର ପିଲାକୁ ନିଦରେ ଶୁଆଇ ପକାଉଥିଲେ ଏବଂ ଆଫଗାନମାନଙ୍କର ହୃଦକମ୍ପ ଜାତ ହେଉଥିଲା । ୧୬୭୫ ଖ୍ରୀ: ଅ: ବେଳକୁ ଏହି ବିଦ୍ରୋହୀମାନଙ୍କର ସଂଖ୍ୟା କମି ଆସିଲା । ସେ ମିତ୍ର ଭାବାପନ୍ନ ନୀତି ଦ୍ୱାରା ସୀମାନ୍ତରେ ଶାନ୍ତିସ୍ଥାପନ କରିଥିଲେ । ତାଙ୍କର ଏହି ସଫଳତା କମ ଗୌରବର କଥା ନୁହେଁ । କିନ୍ତୁ ତାଙ୍କର ଏହି ସଫଳତା ପାଇଁ ତାଙ୍କ ସ୍ତ୍ରୀ ସାହିବଜୀ ତାଙ୍କୁ ବହୁତ ସାହାଯ୍ୟ କରିଥିଲେ । ସାହିବଜୀ ଆଲିମର୍ଦ୍ଦାନ ଖାଁଙ୍କର କନ୍ୟା ଥିବାରୁ, ତାଙ୍କଠାରେ ବହୁ ପ୍ରଶାସନିକ ଗୁଣ ଥିଲା । ଉଇଘୁର ୧୬୯୮ ଖ୍ରୀ: ଅ: ରେ ମୃତ୍ୟୁବରଣ କଲେ ଏବଂ ସେ ପର୍ଯ୍ୟନ୍ତ ସେ କାବୁଲର ଗଭର୍ଣ୍ଣର ଥିଲେ ।

**ଫଳାଫଳ :**

ଉତ୍ତର-ପଶ୍ଚିମ ସୀମାନ୍ତରେ ମୋଗଲମାନେ ସେପରି ଆଶାଜନକ ବିଜୟ ହାସଲ କରିପାରି ନ ଥିଲେ । ସୀମାନ୍ତର ଜାତି ତଥା ଉପଜାତିର ଲୋକମାନେ ମୋଗଲ ସୈନ୍ୟମାନଙ୍କୁ ଅସ୍ତ ବ୍ୟସ୍ତ ଓ ବିବ୍ରତ କରି ପକାଇଥିଲେ । ଏହାଦ୍ୱାରା ମୋଗଲମାନଙ୍କର ବହୁକ୍ଷତି ହେଉଥିଲା । ଶେଷରେ ମୋଗଲ ସମ୍ରାଟ ସେମାନଙ୍କ ପ୍ରତି ମିତ୍ରତା ଆଚରଣ କରି ଏବଂ ଅର୍ଥ ବିନିଯୋଗରେ ସେମାନଙ୍କୁ କିଛି ଦିନ ପାଇଁ କରାୟତ୍ତ କରି ପାରିଥିଲେ । ଆଉରଙ୍ଗଜେବ ଏମାନଙ୍କୁ ପରାସ୍ତ କରିବା ପାଇଁ ଦାକ୍ଷିଣାତ୍ୟରୁ ଦକ୍ଷ ସେନାବାହିନୀକୁ ନେଇ ଆସିବାରୁ ଶିବାଜୀ ମୋଗଲମାନଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାକୁ ସୁଯୋଗ ପାଇଲେ ଏବଂ ଖୁବ୍ ଶୀଘ୍ର ମୋଗଲମାନଙ୍କର ବହୁ ରାଜ୍ୟ ଦାକ୍ଷିଣାତ୍ୟରେ ଜୟ କରି ନିଜ ରାଜ୍ୟ ସହିତ ମିଶାଇ ଦେଲେ ।



# ପଞ୍ଚମ ଅଧ୍ୟାୟ

## ଦାକ୍ଷିଣାତ୍ୟ ନୀତି

**ଦାକ୍ଷିଣାତ୍ୟ :**

"ଦକ୍ଷିଣ ଭାରତ" ରାଜଧାନୀ ଦିଲ୍ଲୀଠାରୁ ବହୁଦୂରରେ ଅବସ୍ଥିତ ଥିବାରୁ ଏହାକୁ କରଗତ ବା ଆୟତ୍ତ କରି ଶାସନ କରିବା ସର୍ବଦା ଭାରତ ସମ୍ରାଟମାନଙ୍କ ପକ୍ଷରେ ବଡ଼ କଷ୍ଟସାଧ୍ୟ ହେଉଥିଲା । ଭୌଗୋଳିକ ପରିସ୍ଥିତି ଦୃଷ୍ଟିରୁ ମଧ୍ୟ ତତ୍କାଳୀନ ହିନ୍ଦୁସ୍ଥାନ ସହିତ ଏହାର କୌଣସି ସମ୍ପର୍କ ନ ଥିଲା କହିଲେ ଅତ୍ୟୁକ୍ତି ହେବ ନାହିଁ । କାରଣ ବିନ୍ଧ୍ୟ ଓ ସାତପୁରା ପର୍ବତମାଳା ଏବଂ ନର୍ମଦା ନଦୀ, ଦାକ୍ଷିଣାତ୍ୟକୁ ଗାଙ୍ଗେୟ ସମତଳ ଭୂମିରୁ ସର୍ବଦା ପୃଥକ୍ କରି ରଖି ଆସିଛି । କିନ୍ତୁ ଦାକ୍ଷିଣାତ୍ୟର ଉର୍ବର ଭୂମି, ସୁନା ଏବଂ ହୀରା ଖଣି ଯୋଗୁ ଉତ୍ତର ଭାରତର ପ୍ରାୟ ପ୍ରତ୍ୟେକ ଶକ୍ତିଶାଳୀ ସମ୍ରାଟମାନେ ପାର୍ବତ୍ୟ ପ୍ରତି-ବନ୍ଧକ ସତ୍ତ୍ୱେ ଏହି ଧନସମ୍ପଦ ପୂର୍ଣ୍ଣ ଦାକ୍ଷିଣାତ୍ୟକୁ ଅଧିକାର କରିବା ପାଇଁ ବ୍ୟଗ୍ର ହୋଇ ପଡ଼ୁଥିଲେ । ସେମାନେ ସର୍ବଦା ସେମାନଙ୍କର କ୍ଷତି ସହ୍ୟ କରି ଏବଂ ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହୋଇ ଏହି ରାଜ୍ୟକୁ ଅଧିକାର କରନ୍ତି । ଏପରିକି ଅନେକ କ୍ଷେତ୍ରରେ ହିନ୍ଦୁସ୍ଥାନକୁ (ଉତ୍ତର ଭାରତ) ହରାଇ ମଧ୍ୟ ଏହି ଦାକ୍ଷିଣାତ୍ୟକୁ ଅଧିକାର କରିବାକୁ ପଶ୍ଚାଦପଦ ହୁଅନ୍ତି ନାହିଁ ।

ପ୍ରଥମ ମୁସଲମାନ ସମ୍ରାଟ ମହମ୍ମଦ-ବିନ-ତୋଗଲେକ ଚତୁର୍ଦ୍ଦଶ ଶତାବ୍ଦୀରେ ଧନରତ୍ନ ପୂର୍ଣ୍ଣ ଏହି ପାର୍ବତ୍ୟ ଅଞ୍ଚଳକୁ ଦିଲ୍ଲୀ ଅଧୀନକୁ ଆଣି ପାରିଥିଲେ । ସେ ଦାକ୍ଷିଣାତ୍ୟର ଭୌଗୋଳିକ ପରିସ୍ଥିତି ଦୃଷ୍ଟିରୁ, ଦଉଲତାବାଦକୁ ନିଜର ଦ୍ୱିତୀୟ ରାଜଧାନୀ କରିବାକୁ ଇଚ୍ଛା କରିଥିଲେ । ଏଣୁ ସେ ଦିଲ୍ଲୀରୁ ରାଜଧାନୀ ସ୍ଥାନାନ୍ତରିତ କରିଥିଲେ । ମହମ୍ମଦ-ବିନ୍-ତୋଗଲକଙ୍କ ମୃତ୍ୟୁ ପରେ ଦାକ୍ଷିଣାତ୍ୟ ଉପରେ ଉତ୍ତର ଭାରତର ଆଉ କୌଣସି କର୍ତ୍ତୃତ୍ୱ ରହିଲା ନାହିଁ । ପଞ୍ଚଦଶ ଶତାବ୍ଦୀର ଶେଷଆଡ଼କୁ ଦାକ୍ଷିଣାତ୍ୟ ପାଞ୍ଚୋଟି ରାଜ୍ୟରେ ବିଭକ୍ତ ହେଲା । ଏହି ପାଞ୍ଚୋଟି ରାଜ୍ୟ ମଧ୍ୟରୁ କୁତବସାହି ରାଜବଂଶ ଗୋଲକୁଣ୍ଡାରେ, ଆଦିଲସାହି ରାଜବଂଶ ବିଜାପୁରରେ ଏବଂ ନିଜାମସାହି ରାଜବଂଶ ଅହମ୍ମଦ ନଗରରେ ଶାସନ କଲେ । ସେମାନେ ସମସ୍ତେ ଖୁବ୍ ପରାକ୍ରମଶାଳୀ ଥିଲେ । ଏହି ତିନୋଟି ଧନଶାଳୀ ରାଜ୍ୟ ଉପରେ ସର୍ବଦା ମୋଗଲମାନଙ୍କର ଲୋଲୁପ ଦୃଷ୍ଟି ପଡ଼ୁଥିଲା ।

**ଦାକ୍ଷିଣାତ୍ୟ ଓ ମୋଗଲ ନୀତି :**

ଆକବର ଏବଂ ଜାହାଙ୍ଗୀର ରାଜନୈତିକ ଦୃଷ୍ଟିକୋଣରୁ ଦାକ୍ଷିଣାତ୍ୟର ମୁସଲମାନ ରାଜ୍ୟ ଜୟ କରିବା ପାଇଁ ନୀତି ଅନୁସରଣ କରିଥିଲେ ମଧ୍ୟ କୌଣସି ଅଭିଯାନ ଚଳାଇ

ନ ଥିଲେ । ମୋଗଲ ସମ୍ରାଟମାନେ ମୋଗଲ ସାମ୍ରାଜ୍ୟ ଉପରେ ଦାକ୍ଷିଣାତ୍ୟରୁ ଯେପରି କୌଣସି ପ୍ରକାର ଆକ୍ରମଣ ନ ହୁଏ, ସେଥିପାଇଁ କେବଳ ଆବଶ୍ୟକ ପଦକ୍ଷେପମାନ ଗ୍ରହଣ କରିଥିଲେ । ଏଣୁ ଆକବର ଦାକ୍ଷିଣାତ୍ୟର ସୀମା ଖାନ୍ଦେଶ, ଅହମ୍ମଦନଗର, ବେରାର ଓ ଆସିରଗଡ଼ ପର୍ଯ୍ୟନ୍ତ ବିସ୍ତୃତ କରି, ସେ ସବୁ ସ୍ଥାନରେ ରାଜ୍ୟର ସୀମାକୁ ଜଗିବା ପାଇଁ ପ୍ରତିଷେଧମୂଳକ ବ୍ୟବସ୍ଥା କରିଥିଲେ । ବିଜାପୁର ଓ ଗୋଲକୁଣ୍ଡାର ସୁଲତାନମାନେ ମଧ୍ୟ ଆକବରଙ୍କ ବୀରତ୍ୱ ଯୋଗୁ ମୋଗଲ ଦରବାରକୁ ଦୂତ ପ୍ରେରଣ କରୁଥିଲେ ଏବଂ ବାର୍ଷିକ ରାଜକର ଦେଉଥିଲେ । ରାଜନୈତିକ ନୀତି ବ୍ୟତୀତ ଧର୍ମଗତ ନୀତି ମଧ୍ୟ ମୋଗଲମାନଙ୍କର ଦାକ୍ଷିଣାତ୍ୟ ନୀତିର ଏକ ପ୍ରଧାନ ଅଙ୍ଗ ହେଲା । ଦାକ୍ଷିଣାତ୍ୟରେ ସିହା ସମ୍ପ୍ରଦାୟର ମୁସଲମାନମାନେ ରାଜତ୍ୱ କରୁଥିଲେ ଏବଂ ଦିଲ୍ଲୀରେ ସୁନ୍ନୀ ସମ୍ପ୍ରଦାୟର ମୁସଲମାନମାନେ ରାଜତ୍ୱ କରୁଥିଲେ । ଏଣୁ ଏହି ଧର୍ମଗତ ନୀତି ଯୋଗୁ ପରବର୍ତ୍ତୀ କାଳରେ ମୋଗଲ ସମ୍ରାଟମାନେ ଦାକ୍ଷିଣାତ୍ୟ ନୀତିରେ ପରିବର୍ତ୍ତନ ଆଣିଥିଲେ । ଶାଜାହାନ ପ୍ରଥମେ ଏହି ଦାକ୍ଷିଣାତ୍ୟ ନୀତିରେ ପରିବର୍ତ୍ତନ ଆଣିଥିଲେ । ଫଳରେ ମୋଗଲମାନେ ଦାକ୍ଷିଣାତ୍ୟର ସିହା ସମ୍ପ୍ରଦାୟର କ୍ଷମତା କ୍ଷୁଣ୍ଣ କରିବା ପାଇଁ ବାଧ୍ୟ ହୋଇଥିଲେ ।

**ଆଉରଙ୍ଗଜେବଙ୍କର ଦାକ୍ଷିଣାତ୍ୟ ବିଷୟରେ ପୂର୍ବ ଅଭିଜ୍ଞତା :**

ଆଉରଙ୍ଗଜେବ ସିଂହାସନ ଆରୋହଣ କରିବା ପୂର୍ବରୁ ହିଁ ଦାକ୍ଷିଣାତ୍ୟ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରିଥିଲେ । ଶାଜାହାନଙ୍କ ସମୟରେ ରାଜପୁତ୍ର ଆଉରଙ୍ଗଜେବ ୧୬୩୬ ଖ୍ରୀ: ଅ: ରେ ଦାକ୍ଷିଣାତ୍ୟର ଶାସନଭାର ଗ୍ରହଣ କଲେ । ତାଙ୍କୁ ସେତେବେଳେ ମାତ୍ର ୧୮ ବର୍ଷ ବୟସ । ବିଜାପୁର ଓ ଗୋଲକୁଣ୍ଡାକୁ ମୋଗଲ ସାମ୍ରାଜ୍ୟଭୁକ୍ତ କରିବା ଏବଂ ମରହଟ୍ଟାମାନଙ୍କୁ ବିତାଡ଼ିତ କରିବା ପାଇଁ ତାଙ୍କର ଦାକ୍ଷିଣାତ୍ୟ ନୀତିର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଏହା ବ୍ୟତୀତ ମରହଟ୍ଟାମାନେ ବିଜାପୁର ଓ ଗୋଲକୁଣ୍ଡା ରାଜ୍ୟରୁ ସାମରିକ, ରାଜନୈତିକ ଓ ଅର୍ଥ ସାହାଯ୍ୟ ପାଉଥିବାରୁ ନିଜକୁ ସେମାନେ କ୍ଷମତାଶାଳୀ ବୋଲି ଭାବୁଥିଲେ । ଏଣୁ ରାଜପୁତ୍ର ଆଉରଙ୍ଗଜେବ ଦୌଲତାବାଦ, ଅହମ୍ମଦ ନଗର, ଖାନ୍ଦେଶ, ତେଲେଙ୍ଗାନା ଓ ବେରାର ପ୍ରଭୃତି ୬୪ଟା ଦୁର୍ଗ ଅଧିକାର କରିଥିଲେ ଏବଂ ପ୍ରାୟ ପାଞ୍ଚ କୋଟି ଟଙ୍କାର ଖଜଣା ପାଉଥିଲେ । ଏହାଛଡ଼ା ତାଙ୍କର ଯୁଦ୍ଧ କୌଶଳ ଯୋଗୁ ଗୋଲକୁଣ୍ଡାର ସୁଲତାନ ମୋଗଲମାନଙ୍କ ସହିତ ୧୬୫୬ ଖ୍ରୀ: ଅ: ରେ ଶାନ୍ତି ସ୍ଥାପନ କରିଥିଲେ । ସେହି-ପରି ଆଉରଙ୍ଗଜେବ ମଧ୍ୟ ମିରଜୁମଲାଙ୍କ ସାହାଯ୍ୟରେ ବିଜାପୁର ଆକ୍ରମଣ କରି ଧ୍ୱସ୍ତବିଧ୍ୱସ୍ତ କରି ଦେଇଥିଲେ । ଯେତେବେଳେ ବିଜାପୁରର ପତନ ଆସନ୍ନ ହୋଇ ଆସୁଥିଲା, ଠିକ୍ ସେତିକବେଳେ ସମ୍ରାଟ ଶାଜାହାନ ଏଥିରେ ହସ୍ତକ୍ଷେପ କରି ଯୁଦ୍ଧ ବନ୍ଦ କରିବା ପାଇଁ ଆଉରଙ୍ଗଜେବଙ୍କୁ ଆଦେଶ ଦେଲେ । ଏହାପରେ ହଠାତ୍ ୧୬୫୭ ଖ୍ରୀ: ଅ: ରେ ଶାଜାହାନ ଭୀଷଣ ଭାବେ ପୀଡ଼ିତ ହୋଇ ପଡ଼ିବାରୁ ଦାକ୍ଷିଣାତ୍ୟ ବିଜୟ ଭବିଷ୍ୟତକୁ ସ୍ଥଗିତ ରହିଗଲା ।

**ଦାକ୍ଷିଣାତ୍ୟ ଅଭିଯାନ :**

ସିଂହାସନ ଆରୋହଣ ପରେ ଆଉରଙ୍ଗଜେବ ପ୍ରଥମେ ଦାକ୍ଷିଣାତ୍ୟ ଅଭିଯାନ ପାଇଁ ବିଶେଷ ପଦକ୍ଷେପ ନେଇ ନ ଥିଲେ । କିନ୍ତୁ ୧୬୮୧ ଖ୍ରୀ: ଅ: ରେ ରାଜପୁତ୍ରମାନଙ୍କ ସହିତ ଯୁଦ୍ଧର ଅବସାନ ଘଟିବା ପରେ ସେ ଦାକ୍ଷିଣାତ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କଲେ । ବିଶେଷତଃ ଯେତେବେଳେ ରାଜପୁତ୍ର ଆକବର, ନିଜର ପିତା ଆଉରଙ୍ଗଜେବଙ୍କର ପ୍ରଧାନ ଶତ୍ରୁ ଏବଂ ମରହଟ୍ଟାମାନଙ୍କର ନେତା ଶମ୍ଭୁଜୀଙ୍କ ସହିତ ମୋଗଲମାନଙ୍କ ବିରୁଦ୍ଧରେ ଯୋଗଦେଲେ ସେତେବେଳେ ଆଉରଙ୍ଗଜେବ ଭୟ ବିହ୍ୱଳିତ ହୋଇପଡ଼ିଲେ । ଏହାଛଡ଼ା ଧର୍ମାନ୍ଧ ଆଉରଙ୍ଗଜେବ ଦାକ୍ଷିଣାତ୍ୟର ସିହା ସଂପ୍ରଦାୟର ମୁସଲମାନମାନଙ୍କୁ ଆଦୌ ସହ୍ୟ କରି ପାରୁ ନ ଥିଲେ ଏବଂ ସେମାନଙ୍କ ପ୍ରତି ସର୍ବଦା ଘୃଣାଭାବ ପୋଷଣ କରୁଥିଲେ । ତେଣୁ ଏହି ସିହା ସଂପ୍ରଦାୟ ମୁସଲମାନମାନଙ୍କୁ ଏବଂ ମରହଟ୍ଟାମାନଙ୍କୁ ନିଜ ଅଧୀନକୁ ଆଣିବା ପାଇଁ ଜୀବନର ଶେଷ ୨୬ ବର୍ଷ ସେ ନିଜେ ସେମାନଙ୍କ ସହିତ ଯୁଦ୍ଧ କରିଥିଲେ ।

**ବିଜାପୁର ଆକ୍ରମଣ :**

୧୬୬୫ ଖ୍ରୀ: ଅ: ରେ ଆଉରଙ୍ଗଜେବ ଜୟପୁରର ରାଜା ଜୟସିଂହଙ୍କୁ ବିଜାପୁର ଆକ୍ରମଣ ପାଇଁ ପଠାଇଲେ । କାରଣ ବିଜାପୁରର ସୁଲତାନ ୧୬୫୭ ଖ୍ରୀ: ଅ: ରେ ସ୍ୱାକ୍ଷରିତ ହୋଇଥିବା ସନ୍ଧିର ସର୍ତ୍ତିକୁ ଅବମାନନା କରିଥିବା ଯୋଗୁ ବିଜାପୁର ବିରୁଦ୍ଧରେ ଆଉରଙ୍ଗଜେବଙ୍କ କ୍ରୋଧ ବଢ଼ି ଯାଇଥିଲା । ଏହା ସଙ୍ଗେ ସଙ୍ଗେ ଶିବାଜୀଙ୍କୁ ପରାସ୍ତ କରିବା ପାଇଁ ଜୟସିଂହଙ୍କୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ୧୬୬୫ ଖ୍ରୀ: ଅ: ରେ ସେ ଶିବାଜୀଙ୍କୁ ପରାସ୍ତ କଲେ ଏବଂ ତାଙ୍କ ସହିତ ସନ୍ଧି ହେଲା । ଏହାପରେ ସେ ଶିବାଜୀଙ୍କ ସାହାଯ୍ୟରେ ବିଜାପୁର ଆକ୍ରମଣ କଲେ । ସୁଲତାନ ନିଜ ଦୁର୍ଗର ପ୍ରତିରକ୍ଷା ବ୍ୟବସ୍ଥା ପାଇଁ ଦୃଢ଼ ପଦକ୍ଷେପ ନେଇଥିଲେ ଏବଂ ରାଜ୍ୟର ପ୍ରାୟ ୧୨ କିଲୋମିଟର ପରିସରରେ ସମସ୍ତ କିଛି ଧ୍ୱଂସ କରି ଦେଇ ଯାଇଥିଲେ । ଏହାଦ୍ୱାରା ଶତ୍ରୁମାନେ ରାଜ୍ୟ ଭିତରକୁ ପଶି ଆସିଲେ । ସେମାନଙ୍କର ଜୀବନନିର୍ବାହ କରିବା କଷ୍ଟକର ହୋଇ ପଡ଼ିବା ନିମିତ୍ତ ଆୟୋଜନ କରିଥିଲେ । ଏଣୁ ବିଜାପୁର ଦୁର୍ଗ ଅଧିକାର କରିବା ବଡ଼ ଦୁରୂହ ଓ କଠିନ ହୋଇ ପଡ଼ିଥିଲା । ମୋଗଲମାନଙ୍କର ମଧ୍ୟ ଅକଥନୀୟ କ୍ଷତି ହେଲା । ଏଣୁ ଆଉରଙ୍ଗଜେବ ୧୬୬୬ ଖ୍ରୀ: ଅ: ରେ ଜୟସିଂହଙ୍କୁ ଦାକ୍ଷିଣାତ୍ୟରୁ ଡକାଇ ନେଲେ । ଏହି ଯୁଦ୍ଧରେ ଅକୃତକାର୍ଯ୍ୟ ହୋଇଥିବା ଯୋଗୁ ବାଟରେ ଭଗ୍ନ ହୃଦୟଜନିତ ମାନସିକ ଚିନ୍ତା ହେତୁ ସେ ମୃତ୍ୟୁ ବରଣ କଲେ ।

ଏହାପରେ ବିଜାପୁର ପ୍ରାୟ ୧୦ ବର୍ଷ ପର୍ଯ୍ୟନ୍ତ ମୋଗଲ ଆକ୍ରମଣରୁ ଅବ୍ୟାହତି ପାଇ ପାରିଥିଲା । କିନ୍ତୁ ୧୬୭୨ ଖ୍ରୀ: ଅ: ରେ ବିଜାପୁରର ସୁଲତାନ ଅଲ୍ଲୀ ଆଦିଲସାହା ଦ୍ୱିତୀୟଙ୍କର ମୃତ୍ୟୁ ହେବାରୁ ବିଜାପୁରର ଅଧଃପତନ ଆରମ୍ଭ ହେଲା । ସୁଲତାନଙ୍କର ମୃତ୍ୟୁବେଳକୁ ତାଙ୍କର ପୁତ୍ର ସିକନ୍ଦରଆଦିଲ ସାହାଙ୍କୁ କେବଳ ମାତ୍ର ଚାରି ବର୍ଷ ବୟସ

ହୋଇଥିଲା । ଏହି ନାବାଳକ ପୁତ୍ର କେତେକ ନ୍ୟସ୍ତସ୍ୱାର୍ଥ ରାଜମନ୍ତ୍ରୀଙ୍କଙ୍କ ଦ୍ୱାରା ସିଂହାସନ ଆରୋହଣ କଲେ । ଏହି ନ୍ୟସ୍ତସ୍ୱାର୍ଥ ରାଜମନ୍ତ୍ରୀଙ୍କମାନଙ୍କ ଦ୍ୱାରା ବିଜାପୁରର ପତନ ଆହୁରି ଦ୍ରୁତତର ହେବାକୁ ଲାଗିଲା । ଯେଉଁମାନେ ଏହି ନାବାଳକ ସୁଲତାନଙ୍କର ପ୍ରତିନିଧିତ୍ୱ କରୁଥିଲେ ସେମାନେ ପରସ୍ପର ମଧ୍ୟରେ ସଦାସର୍ବଦା କଳହ କରୁଥିଲେ । ତା'ଛଡ଼ା ମରହଟ୍ଟା ଓ ମୋଗଲମାନଙ୍କ ସହିତ ସେମାନଙ୍କୁ ମଧ୍ୟ ଯୁଦ୍ଧ କରିବାକୁ ପଡ଼ୁଥିଲା । ଏତଦ୍‌-ବ୍ୟତୀତ ବିଜାପୁରର ଶାସନ ସାମରିକ ଶାସନ ଉପରେ ପର୍ଯ୍ୟବସିତ ଥିଲା ଏବଂ ସେମାନେ ସ୍ୱେଚ୍ଛାଚାରିତା ତଥା ଅମଲାତନ୍ତ୍ର ଶାସନ ଚଳାଉଥିଲେ । ଫଳରେ ରାଜ୍ୟର ଅବସ୍ଥା କ୍ରମେ ଅବନତି ଆଡ଼କୁ ଗତି କଲା । ରାଜ୍ୟର ସାଧାରଣ ଲୋକମାନେ ଶାସନ ପ୍ରତି ଉଦାସୀନତା ପ୍ରକାଶ କଲେ ଏବଂ ଏକ ବଳିଷ୍ଠ ସରକାର ପ୍ରତିଷ୍ଠା କରିବା ପାଇଁ ସଦା ସର୍ବଦା ଆଗ୍ରହ ପ୍ରକାଶ କଲେ ।

ଆଉରଙ୍ଗଜେବ ବିଜାପୁରର ଏହି ରାଜନୈତିକ ପରିସ୍ଥିତିର ସୁଯୋଗ ନେଇଥିଲେ । ପ୍ରଥମେ ୧୬୭୬ ଖ୍ରୀ: ଅ: ରେ ଦାକ୍ଷିଣାତ୍ୟର ଗଭର୍ଣ୍ଣର ବାହାଦୁର ଖାଁ ବିଜାପୁର ଆକ୍ରମଣ କରି ପରାସ୍ତ ହେବାରୁ ଆଉରଙ୍ଗଜେବ ଖୁବ୍ ରାଗିଯାଇ ୧୬୭୯ ଖ୍ରୀ: ଅ: ରେ ଦିଲିର ଖାଁଙ୍କୁ **(Dilir Khan)** ଦାକ୍ଷିଣାତ୍ୟ ବିଜୟ ପାଇଁ ବିଜାପୁର ଅଭିଯାନରେ ପଠାଇଲେ । କିନ୍ତୁ ଯୁଦ୍ଧରେ ତାଙ୍କର ସୈନ୍ୟମାନେ ବିଦ୍ରୋହ ଘୋଷଣା କରିବା ଫଳରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏଣୁ ସେ ସମ୍ରାଟଙ୍କର ସମସ୍ତ ସଦିଚ୍ଛା ହରାଇଲେ । ୧୬୮୦ ଖ୍ରୀ: ଅ: ରେ ତାଙ୍କୁ ବରଖାସ୍ତ କରାଗଲା ।

୧୬୮୦ ଖ୍ରୀ: ଅ: ରୁ ୧୬୮୩ ଖ୍ରୀ: ଅ: ପର୍ଯ୍ୟନ୍ତ ବିଜାପୁର ସୁଲତାନ ଶାନ୍ତିରେ ସମୟ କଟାଇଥିଲେ । କାରଣ ଏହି ସମୟ ମଧ୍ୟରେ ଆଉରଙ୍ଗଜେବ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧରେ ବ୍ୟସ୍ତ ରହିଥିଲେ । ଶମ୍ଭୁଜୀ ତାଙ୍କ ପିତାଙ୍କ ପରି ଏହି ସମୟରେ ସୁଯୋଗ ଉଣ୍ଡି ମୋଗଲ ରାଜ୍ୟ ଆକ୍ରମଣ କରିଥିଲେ । ଆଉରଙ୍ଗଜେବ ନିଜର ଦୁଇ ପୁତ୍ର ମୁଆଜାମ **(Muazzam)** ଏବଂ ଆଜାମଙ୍କୁ **(Azam)** ଶମ୍ଭୁଜୀଙ୍କ ବିରୁଦ୍ଧରେ ବିଜାପୁର ପଠାଇଲେ । କିନ୍ତୁ ସେମାନେ କେତେକ ମରହଟ୍ଟା ଦୁର୍ଗ ଅଧିକାର କରିବା ଛଡ଼ା ଆଉ ବିଶେଷ କିଛି କରି ପାରିଲେ ନାହିଁ । ଏଣୁ ସମ୍ରାଟ ସ୍ୱୟଂ ଏହି ଅଭିଯାନ ପରିଚାଳନାର ଦାୟିତ୍ୱ ନେବା ପାଇଁ ୧୬୮୩ ଖ୍ରୀ: ଅ: ରେ ଅହମ୍ମଦ ନଗରରେ ଆସି ପହଞ୍ଚିଲେ । ଆଜାମ ସୋଲାପୁର ଅଧିକାର କଲେ ସତ; କିନ୍ତୁ ପ୍ରବଳ ପ୍ରତାପୀ ଶତ୍ରୁମାନଙ୍କ ଦ୍ୱାରା ସେ ବିଜାପୁର ଆଡ଼କୁ ଅଗ୍ରସର ହୋଇ ପାରିଲେ ନାହିଁ । ଏଣୁ ସମ୍ରାଟ ନିଜେ ସୋଲାପୁରଠାରେ ପହଞ୍ଚି ବିଜାପୁର ଅବରୋଧ କଲେ ।

ଏହି ଯୁଦ୍ଧରେ ମୋଗଲମାନେ ପ୍ରଥମେ ବିଶେଷ କିଛି ଆଶାଜନକ ଉନ୍ନତି କରି ପାରିଲେ ନାହିଁ । ମୋଗଲମାନଙ୍କର ପ୍ରବଳ ପ୍ରତିରୋଧକୁ ଦମନ କରିବା ପାଇଁ ସୁଲତାନ

ଶମ୍ଭୁଜୀ ଓ ଗୋଲକୁଣ୍ଡାର ସୁଲତାନଙ୍କର ସାହାଯ୍ୟ ସମର୍ଥନ ପାଇଲେ । ଏହି ଅବରୋଧ ବହୁ ଦିନ ପର୍ଯ୍ୟନ୍ତ ଅବିଶ୍ରାନ୍ତ ଭାବରେ ଚାଲିଲା । କିନ୍ତୁ ମୋଗଲ ସୈନ୍ୟ ବାହାରରେ ଦୁର୍ଭିକ୍ଷ ତଥା ଖାଦ୍ୟାଭାବ ଓ ଅନଟନ ଯୋଗୁ ଆଉରଙ୍ଗଜେବ ହତାଶ ହୋଇ ପଡ଼ିଲେ । ସେ ରାଜପୁତ୍ର ଆଜାମଙ୍କୁ ବିଜାପୁରରୁ ଅପସର ଯିବା ପାଇଁ ଆଦେଶ ଦେଲେ । କିନ୍ତୁ ଆଜାମ ତାଙ୍କ ନିଷ୍ପତ୍ତିରେ ଖୁବ୍ ଦୃଢ଼ ଥିଲେ । ଯୁଦ୍ଧ ପରିଚାଳନା ପରିଷଦର ନିଷ୍ପତ୍ତି ସତ୍ତ୍ୱେ ସେ ତାଙ୍କର ବେଗମ ଓ ଦୁଇ ପୁତ୍ର ସହ ଜୀବନର ଶେଷନିଃଶ୍ୱାସ ପର୍ଯ୍ୟନ୍ତ କର୍ତ୍ତବ୍ୟରେ ଅଟଳ ରହିବେ ବୋଲି ଜଣାଇ ଦେବାରୁ, ଆଉରଙ୍ଗଜେବ ତାଙ୍କ ନିକଟକୁ ନୂଆ ସୈନ୍ୟବାହିନୀ ପଠାଇଲେ । ଫଳରେ ଅବରୋଧ ଅବ୍ୟାହତ ରହିଲା । ଏହି ସମୟରେ ଆଉରଙ୍ଗଜେବ ନିଜେ ୧୬୮୬ ଖ୍ରୀ: ଅ: ରେ ବିଜାପୁର ନିକଟବର୍ତ୍ତୀ ଏକ ଗ୍ରାମକୁ ଯାଇ ଯୁଦ୍ଧ ପରିଚାଳନା ଦେଖାଶୁଣା କରିବା ଭାର ନେବାରୁ, ବିଜପୁରବାସୀମାନେ ହତୋତ୍ସାହ ହୋଇ ପଡ଼ିଲେ । ଇତି ମଧ୍ୟରେ ଖାଦ୍ୟ ସାମଗ୍ରୀର ଅଭାବ ଦେଖା ଦେବାରୁ ବିଜାପୁର ସୁଲତାନ ବାଧ୍ୟ ହୋଇ ୧୬୮୬ ଖ୍ରୀ: ଅ: ରେ କେତେକ ସର୍ତ୍ତରେ ଆତ୍ମସମର୍ପଣ କଲେ । ଆଉରଙ୍ଗଜେବ ଯୁଦ୍ଧ ପରେ ରାଜପ୍ରାସାଦରେ ପ୍ରବେଶ କରି କାନ୍ଥରେ ଥିବା ସମସ୍ତ ସିହ୍ନ ଅନୁଶାସନ ଏବଂ ଚିତ୍ରକୁ ଲିଭାଇ ଦେଲେ ।

ସୈନ୍ୟ ଶ୍ରେଣୀରେ ବିଜାପୁର ସୁଲତାନ ସିକନ୍ଦର ଆଦିଲ ଶାହାଙ୍କୁ ଯେତେବେଳେ ବନ୍ଦୀ ଭାବରେ ଆଉରଙ୍ଗଜେବଙ୍କ ସମ୍ମୁଖକୁ ଅଣାଗଲା, ସେତେବେଳେ ସେ ସୁଲତାନଙ୍କର ଦୟନୀୟ ଅବସ୍ଥା ଦେଖି କ୍ଷଣକ ପାଇଁ ଅନୁକମ୍ପା ଜାତ ହୋଇଥିଲା । ତଥାପି ବିଜାପୁରକୁ ମୋଗଲ ସାମ୍ରାଜ୍ୟ ସହିତ ମିଶାଇ ଦିଆଗଲା ଏବଂ ସିକନ୍ଦର ବନ୍ଦୀ ଭାବରେ ଦୌଲତାବାଦ ଜେଲରେ ଅତି ଦୁଃଖରେ ଜୀବନ କଟାଇବାକୁ ଲାଗିଲେ । ଏହି ଦୁଃଖ ଓ ନୈରାଶ୍ୟରେ ସେ ଏପରି ମ୍ରିୟମାଣ ହୋଇ ପଡ଼ିଥିଲେ ଯେ ମାତ୍ର ୩୨ ବର୍ଷ ବୟସରେ ମୃତ୍ୟୁବରଣ କଲେ । ତାଙ୍କର ଏହି ଅକାଳମୃତ୍ୟୁ ବିଜାପୁରରେ ଶୋକର ଛାୟା ଖେଳାଇ ଦେଇଥିଲା ।

**ଗୋଲକୁଣ୍ଡା ଆକ୍ରମଣ :**

ରାଜପୁତ୍ର ଆଉରଙ୍ଗଜେବ ସମ୍ରାଟ ଶାଜାହାନଙ୍କର ନିର୍ଦ୍ଦେଶ କ୍ରମେ ୧୬୫୬ ଖ୍ରୀ: ଅ: ରେ ଗୋଲକୁଣ୍ଡାର ସୁଲତାନ ଅବଦୁଲ୍ଲା କୁତବସାହାଙ୍କ ସହିତ ଶାନ୍ତିସ୍ଥାପନ କରିଥିଲେ । ୧୬୭୨ ଖ୍ରୀ: ଅ: ରେ କୁତବସାହାଙ୍କର ମୃତ୍ୟୁ ହେବା ପରେ ଗୋଲକୁଣ୍ଡା ରାଜ୍ୟରେ ଶାସନଗତ ବିଶୃଙ୍ଖଳା ଦେଖାଗଲା । କାରଣ କୁତବ ସାହାଙ୍କର ପୁତ୍ର ନ ଥିବାରୁ ସେହି ରାଜବଂଶର ଆବୁଲ ହାସାନ ନାମକ ଜଣେ ରାଜପୁତ୍ର ଗୋଲକୁଣ୍ଡାର ସିଂହାସନ ଆରୋହଣ କଲେ । ରାଜ୍ୟର କେତେକ ସ୍ୱାର୍ଥାନ୍ଧ ରାଜନୀତିଜ୍ଞ ନିଜର ସ୍ୱାର୍ଥ ହାସଲ ପାଇଁ ଆବୁଲ ହାସାନଙ୍କୁ ସିଂହାସନ ଆରୋହଣ କରିବା ପାଇଁ ସୁଯୋଗ ଦେଇଥିଲେ । କାରଣ ଆବୁଲ ହାସାନ ଦୁର୍ବଳ ତଥା ନିର୍ବୋଧ ଥିଲେ । ନିଜେ ଗୋଟିଏ ବିରାଟ ରାଜ୍ୟର ମାଲିକ ହୋଇ-

ଥିବାରୁ ଏବଂ ରାଜ୍ୟଟି ଧନସମ୍ପଦରେ ପୂର୍ଣ୍ଣ ରହିଥିବା ଯୋଗୁ, ସେ ସର୍ବଦା ଭୋଗ ବିଳାସରେ ଦିନ କାଟିବାକୁ ଲାଗିଲେ । ରାଜ୍ୟର ଶାସନ ସମ୍ବନ୍ଧରେ ସେ କୌଣସି ପ୍ରକାର ଆଗ୍ରହ ପ୍ରକାଶ କଲେ ନାହିଁ । ରାଜ୍ୟର ଶାସନ ଦାୟିତ୍ୱ ଦୁଇ ଜଣ ବ୍ରାହ୍ମଣ ମନ୍ତ୍ରୀଙ୍କ ଉପରେ ନ୍ୟସ୍ତକରି ନିଜେ ଆମୋଦ ପ୍ରମୋଦରେ ସମସ୍ତ ଅତିବାହିତ କରିବାକୁ ଲାଗିଲେ । ମଦାନ୍ନା ବୋଲି ଜଣେ ବ୍ରାହ୍ମଣଙ୍କୁ ଓ୍ୟାଜିର ପଦରେ ଏବଂ ତାଙ୍କ ଭାଇ ଅକନ୍ନାଙ୍କୁ ମୁଖ୍ୟ ସେନାପତି ପଦରେ ସେ ନିଯୁକ୍ତ କରିଥିଲେ । ବିଶେଷତଃ ତାଙ୍କର ଏହି କାର୍ଯ୍ୟ ଯୋଗୁ ସେ ଆଉରଙ୍ଗଜେବଙ୍କର ପରମଶତ୍ରୁ ହୋଇ ପଡ଼ିଲେ । ଏହା ବ୍ୟତୀତ ଯେତେବେଳେ ଜୟସିଂହ ଓ ଦିଲିର ଖାଁ ଏବଂ ରାଜପୁତ୍ର ମୁଆଜାମ ବିଜାପୁର ଆକ୍ରମଣ କଲେ, ସେତେବେଳେ ଗୋଲକୁଣ୍ଡାର ସୁଲତାନ କୁତବସାହା ନିରାଶ୍ରୟ ବିଜାପୁର ସୁଲତାନଙ୍କୁ ସାହାଯ୍ୟ କରିଥିଲେ ।

ଆଉରଙ୍ଗଜେବ ନିଜକୁ ସମ୍ରାଟ ବୋଲି ଘୋଷଣା କରି ସାରିଲା ପରେ, ଗୋଲକୁଣ୍ଡା ଅଧିକାର କରିବା ପାଇଁ ସେ ତତ୍ପର ହୋଇ ପଡ଼ିଲେ । ଗୋଲକୁଣ୍ଡା ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଥିବା ଯୋଗୁ ସେଠାରେ ହୀରା ଓ ଲୁହାର ଖଣି ଥିବାରୁ ଏବଂ ବାଣିଜ୍ୟ ବ୍ୟବସାୟ ପାଇଁ ଉତ୍ତମ ବନ୍ଦରମାନ ରହିଥିବାରୁ, ଏହି ରାଜ୍ୟକୁ କରଗତ କରିବା ତାଙ୍କର ଗୋଟିଏ କର୍ତ୍ତବ୍ୟ ବୋଲି ସେ ଭାବ ନେଇଥିଲେ । ଏହା ବ୍ୟତୀତ ଯେଉଁ ସର୍ତ୍ତ ବଳରେ ୧୬୫୬ ଖ୍ରୀ: ଅ: ରେ କୁତବସାହାଙ୍କ ସହିତ ଶାନ୍ତି ସ୍ଥାପନ ହୋଇଥିଲା ତାହା ସେ ଠିକ୍ ରୂପେ ପାଳନ କରି ପାରିଲେ ନାହିଁ । କୁତବସାହା ଏହି ସର୍ତ୍ତ ଅନୁସାରେ ଯେଉଁ ପରିମାଣରେ କ୍ଷତିପୂରଣ ଦେବାର କଥା, ତାହା ଦେଲେ ନାହିଁ ଏବଂ ବାର୍ଷିକ ରାଜକର ପ୍ରାୟ ୨ ଲକ୍ଷ ମୁଦ୍ରା ବାକି ପଡ଼ିଲା । କିନ୍ତୁ ଏହି ଯୁଦ୍ଧର ପ୍ରଧାନ କାରଣ ହେଲା ଯେ ଆବୁଲ ହାସାନଙ୍କ ସିଂହାସନ ଆରୋହଣରେ କୌଣସି ଜନ୍ମଗତ ଅଧିକାର ନ ଥିଲା ଏବଂ ରାଜ୍ୟର ଶାସନଭାର ହିନ୍ଦୁ ବ୍ରାହ୍ମଣ ମନ୍ତ୍ରୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିବାରୁ, ଧର୍ମାନ୍ଧ ଆଉରଙ୍ଗଜେବ ତାହା ସହ୍ୟ କରି ପାରିଲେ ନାହିଁ ।

ଏହାଛଡ଼ା ଅନ୍ୟାନ୍ୟ କାରଣ ଯୋଗୁ ଆଉରଙ୍ଗଜେବ ଗୋଲକୁଣ୍ଡା ଆକ୍ରମଣ କରିଥିଲେ । ୧୬୬୬ ଖ୍ରୀ: ଅ: ରେ ଶିବାଜୀ ଆଗ୍ରା ବନ୍ଦୀଶାଳାରୁ ପଳାଇ ଆସିଲେ । ତା'ପରେ ସେ ଗୋଲକୁଣ୍ଡାର ସୁଲତାନ କୁତବସାହାଙ୍କ ସାହାଯ୍ୟରେ ମୋଗଲମାନଙ୍କର କେତେକ ଦୁର୍ଗ ଅଧିକାର କଲେ । ୧୬୭୭ ଖ୍ରୀ: ଅ: ରେ ସୁଲତାନ ଶିବାଜୀଙ୍କୁ ହାଇଦ୍ରାବାଦଠାରେ ସ୍ୱାଗତ ଜଣାଇଥିଲେ । ସେ ଶିବାଜୀଙ୍କୁ ସାମନ୍ତ ରାଜା ପରି ବ୍ୟବହାର ଦେଖାଇ ତାଙ୍କ ଅଶ୍ୱ ଗଳାରେ ଗୋଟିଏ ହାର ପିନ୍ଧାଇ ଦେଇଥିଲେ । ଏହା ବ୍ୟତୀତ ନିଜ ରାଜ୍ୟର ପ୍ରତିରକ୍ଷା ପାଇଁ ସେ ଶିବାଜୀଙ୍କୁ ବାର୍ଷିକ ଏକ ଲକ୍ଷ ହୁଣ ବା ମୁଦ୍ରା ଦେବେ ବୋଲି ମଧ୍ୟ ଚୁକ୍ତି କରିଥିଲେ । ଶିବାଜୀଙ୍କର ମୃତ୍ୟୁ ପରେ ସୁଲତାନ ଆବୁଲ ହାସାନ ଶମ୍ଭୁଜୀଙ୍କ ସହିତ

ସୁସମ୍ପର୍କ ସ୍ଥାପନ କରିଥିଲେ । ଆନ୍ତର ମଧ୍ୟ ଆଉରଙ୍ଗଜେବ ଯେତେବେଳେ ବିଜାପୁରର ନାବାଳକ ଶିଶୁ ସୁଲତାନ ସିକନ୍ଦର ଆଦିଲ ସାହାଙ୍କୁ ଆକ୍ରମଣ କଲେ, ସେତେବେଳେ ସୁଲତାନ ତାଙ୍କୁ ନୀଚମନା, ଭୀରୁ, କାପୁରୁଷ ବୋଲି ଭର୍ତ୍ସନା କରିଥିଲେ ।

ଏହିସବୁ କାରଣ ଯୋଗୁ ଆଉରଙ୍ଗଜେବ କ୍ରୋଧାନ୍ୱିତ ହୋଇ ୧୬୮୫ ଖ୍ରୀ: ଅ: ରେ ରାଜପୁତ୍ର ମୁଆଜାମଙ୍କୁ ହାଇଦ୍ରାବାଦ ଅଧିକାର ପାଇଁ ପଠାଇଲେ । ସୁଲତାନଙ୍କର ସେନାପତି ମିର ମହମ୍ମଦ ଇବ୍ରାହିମ ବିଶ୍ୱାସଘାତକତା କରି ଆଉରଙ୍ଗଜେବଙ୍କ ସହିତ ଯୋଗ ଦେବାରୁ ସୁଲତାନ ଗୋଲକୁଣ୍ଡାକୁ ପଳାୟନ କଲେ ଏବଂ ହତାଶ ହୋଇ ମୋଗଲମାନଙ୍କ ସହିତ ସନ୍ଧି କଲେ । କେତେକ ସର୍ତ୍ତରେ ଅବଶ୍ୟ ତାଙ୍କୁ କ୍ଷମା ଦିଆଗଲା । ଏହି ସନ୍ଧିର ସର୍ତ୍ତ ଅନୁସାରେ ସେ ନଗଦ ଏକ କୋଟି କୋଡ଼ିଏ ଲକ୍ଷ ଟଙ୍କା ବ୍ୟତୀତ ବାର୍ଷିକ ଦୁଇ ଲକ୍ଷ ହୁଣ ବା ମୁଦ୍ରା ରାଜକର ଦେଲେ ଏବଂ ମଦନ୍ନା ଓ ଅକାନ୍ନାଙ୍କୁ ଚାକିରିରୁ ବରଖାସ୍ତ କରିଦେବା ସଙ୍ଗେ ସଙ୍ଗେ ସିରାମ ଓ ମାଲଖେଦ ରାଜ୍ୟଦ୍ୱୟ ମୋଗଲମାନଙ୍କୁ ଛାଡ଼ି ଦେଲେ । କିନ୍ତୁ ମଦନ୍ନା ଓ ଆକାନ୍ନାଙ୍କୁ ବରଖାସ୍ତ କରିବାକୁ ସୁଲତାନ ପ୍ରଥମେ ଦ୍ୱିଧା ବୋଧ କରିବାରୁ ଗୋଲକୁଣ୍ଡାର ଶାସନ କ୍ଷେତ୍ରରେ ବିଭ୍ରାଟ ଦେଖାଗଲା ଏବଂ ଅଶାନ୍ତିର ବହ୍ନି ଜଳି ଉଠିଲା । ଏଣୁ ରାଜ୍ୟର ମାନ୍ୟଗଣ୍ୟ ବ୍ୟକ୍ତି ଓ ଉଚ୍ଚପଦସ୍ଥ କର୍ମଚାରୀମାନେ ବ୍ରାହ୍ମଣ ଉଜୀର ମଦନ୍ନାଙ୍କ ଉପରେ ଅତ୍ୟନ୍ତ ଭାବରେ ଉତ୍‌କ୍ଷିପ୍ତ ହୋଇ ଉଠିଲେ । ଏଣୁ ୧୬୮୬ ଖ୍ରୀ: ଅ: ମାର୍ଚ୍ଚ ମାସର କୌଣସି ଏକ ରାତିରେ କେତେକ ଷଡ଼ଯନ୍ତ୍ରକାରୀ ମଦନ୍ନାଙ୍କୁ ରାସ୍ତାରେ ହତ୍ୟା କଲେ ଏବଂ ତାଙ୍କ ଭାଇ, ଯେ କି ରାଜ୍ୟର ମୁଖ୍ୟ ସେନାପତି ଥିଲେ, ସେ ମଧ୍ୟ ନିହତ ହେଲେ । ଏହି ଦୁଇ ଜଣଙ୍କର ମୃତ୍ୟୁପରେ ଆଉରଙ୍ଗଜେବ ଆସ୍ୱସ୍ତି ଅନୁଭବ କଲେ ଏବଂ ମୋଗଲମାନେ ଗୋଲକୁଣ୍ଡାକୁ ଛାଡ଼ି ଚାଲିଗଲେ ।

କିନ୍ତୁ ଦାକ୍ଷିଣାତ୍ୟରେ ସ୍ୱାଧୀନ ଗୋଲକୁଣ୍ଡା ରାଜ୍ୟର ଅବସ୍ଥିତି ତାଙ୍କ ପକ୍ଷରେ ଅସହ୍ୟ ହେଉଥିଲା । ଏଣୁ ୧୬୮୭ ଖ୍ରୀ: ଅ: ରେ ଆଉରଙ୍ଗଜେବ ନିଜେ ପୁଣି ଗୋଲକୁଣ୍ଡା ସହର ଅବରୋଧ କଲେ । କିନ୍ତୁ ମୁଆଜାମ ଓ ଆଉରଙ୍ଗଜେବଙ୍କ ମଧ୍ୟରେ ସାମାନ୍ୟ ଭୁଲ ବୁଝାମଣା ଯୋଗୁ ଆଉରଙ୍ଗଜେବ ବିଶେଷ ଭାବରେ କୃତକାର୍ଯ୍ୟ ହୋଇ ପାରିଲେ ନାହିଁ । ଏହି ଭୁଲ ବୁଝାମଣା ଯୋଗୁ ମୁଆଜାମ ଆବୁଲ ସାହାଙ୍କୁ ସାହାଯ୍ୟ କଲେ । ଫଳରେ ଆଉରଙ୍ଗଜେବଙ୍କର ନିର୍ଦ୍ଦେଶରେ ମୁଆଜାମଙ୍କୁ ସାତ ବର୍ଷ କାରାବରଣ କରିବାକୁ ପଡ଼ିଥିଲେ ସୁଦ୍ଧା, ଅବରୋଧ କାର୍ଯ୍ୟ ଚାଲୁ ରହିଥିଲା । ମୋଗଲମାନଙ୍କୁ ଶତ୍ରୁମାନଙ୍କର ଆକ୍ରମଣ ଏବଂ ଦୁର୍ଭିକ୍ଷ ଓ ସଂକ୍ରାମକ ରୋଗ ଯୋଗୁ ବହୁତ କ୍ଷତି ସହ୍ୟ କରିବାକୁ ପଡ଼ିଥିଲା । ଏଥିଯୋଗୁ ଆଉରଙ୍ଗଜେବ ବିବ୍ରତ ହୋଇ ପଡ଼ିଥିଲେ । ସିଧାସଳଖ ଯୁଦ୍ଧରେ ଜୟ ଲାଭ କରିବାର କୌଣସି ଆଶା ନ ଦେଖିବାରୁ ସେ ବିଶ୍ୱାସଘାତକତା ଦ୍ୱାରା ଶତ୍ରୁମାନଙ୍କୁ ପରାସ୍ତ କରିବା ପାଇଁ ଚେଷ୍ଟା କଲେ । ଆବୁଲ ହାସାନଙ୍କର ଜଣେ ଆଫଗାନ କର୍ମଚାରୀ ମୋଗଲମାନଙ୍କ-

ଠାରୁ ଲାଞ୍ଚ ନେଇ ଦୁର୍ଗର ଗୁପ୍ତ ଦ୍ୱାର ଖୋଲା ରଖିବାରୁ, ମୋଗଲ ସୈନ୍ୟମାନେ ସେହି ରାସ୍ତାଦେଇ ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ଏହା ସତ୍ତ୍ୱେ ମଧ୍ୟ ବିନା ଯୁଦ୍ଧରେ ସେ ଦୁର୍ଗ ଅଧିକାର କରିପାରିଲେ ନାହିଁ । ଦୁର୍ଗର ରକ୍ଷକ ଅବଦୁର୍ ରଜାକ୍‌ଲାରି ଶରୀରରେ ଶେଷ ବିନ୍ଦୁ ରକ୍ତ ଥିବା ପର୍ଯ୍ୟନ୍ତ ମୋଗଲମାନଙ୍କ ସହିତ ପ୍ରାଣମୂର୍ଚ୍ଛା ସଂଗ୍ରାମ କଲେ ଏବଂ ମୋଗଲ ସୈନ୍ୟମାନଙ୍କୁ ଅସ୍ତ ବ୍ୟସ୍ତ କରିପକାଇଲେ । ଆଓରଙ୍ଗଜେବ ଲାଞ୍ଚ ଦେଇ ତାଙ୍କୁ ବଶୀଭୂତ କରିବା ପାଇଁ ଚେଷ୍ଟା କରିଥିଲେ ସୁଦ୍ଧା ସଫଳ ହୋଇ ପାରି ନ ଥିଲେ । ଦୁର୍ଗର ସମସ୍ତ ସୈନ୍ୟ ଯେତେବେଳେ ମୋଗଲମାନଙ୍କ ଦ୍ୱାରା ବିତାଡ଼ିତ ହୋଇ ସାରିଥିଲେ, ସେତେ-ବେଳେ ମଧ୍ୟ ସେ ଏକାକୀ ଶତ୍ରୁମାନଙ୍କର ମୁକାବିଲା କରୁଥିଲେ । ପ୍ରତ୍ୟେକ ପଦକ୍ଷେପରେ ଶହ ଶହ ମୋଗଲମାନଙ୍କର ସମ୍ମୁଖୀନ ହୋଇ ସୁଦ୍ଧା ଏବଂ ଅଙ୍ଗପ୍ରତ୍ୟଙ୍ଗରେ ବାରମ୍ବାର ଘାତ ପ୍ରତିଘାତ ପାଇ ମଧ୍ୟ ସେ ଦୁର୍ଗର ଦ୍ୱାର ଦେଶ ପର୍ଯ୍ୟନ୍ତ ଆଗେଇ ଯାଇ ପାରିଥିଲେ । ସେ ମୁହଁରେ କେବଳ ବାରୋଟି ଆଘାତ ପାଇଥିଲେ ଏବଂ ଏହା ଫଳରେ ତାଙ୍କର କପାଳରେ ଥିବା ଚମଡ଼ା, ଆଖି ଓ ନାକ ଉପରକୁ ଝୁଲି ପଡ଼ିଥିଲା । ଏହାଛଡ଼ା ଦେହରେ ସେ ବହୁତ ଆଘାତ ପାଇଥିଲେ । ପରିଶେଷରେ ସେ ବାଧ୍ୟ ହୋଇ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ । କିନ୍ତୁ ପରେ ଆଓରଙ୍ଗଜେବ ନିଜେ ଭାରତୀୟ ଓ ଇଉରୋପୀୟ ଚିକିତ୍ସକମାନଙ୍କୁ ପଠାଇ ତାଙ୍କୁ ଯେ କୌଣସି ପ୍ରକାରେ ଆରୋଗ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଅବଦୁର ରଜାକ୍‌ଲାରିଙ୍କ ପରାଜୟ ପରେ ଆବୁଲ ହାସାନ ଜୟଯୁକ୍ତ ହେବାର ସମସ୍ତ ଆଶା ପରିତ୍ୟାଗ କରି ଶେଷରେ ମୋଗଲମାନଙ୍କର ବଶ୍ୟତା ସ୍ୱୀକାର କଲେ । ଆଓରଙ୍ଗଜେବ ଗୋଲକୁଣ୍ଡାରୁ ସାତ କୋଟି ଟଙ୍କା, ବହୁ ସୁନା, ରୂପା, ଅଲଙ୍କାର ଏବଂ ଅନ୍ୟାନ୍ୟ ମୂଲ୍ୟବାନ ଜିନିଷ କରଗତ କଲେ । ୧୬୮୭ ଖ୍ରୀ: ଅ: ରେ ଗୋଲକୁଣ୍ଡାକୁ ମୋଗଲ ସାମ୍ରାଜ୍ୟ ସହିତ ମିଶାଇ ଦିଆଗଲା । ଦୌଲତାବାଦ ଦୁର୍ଗରେ ଆବୁଲ ହାସାନ ବନ୍ଦୀ ରୂପେ ଜୀବନ କଟାଇଲେ ଏବଂ ବାର୍ଷିକ ୫୦,୦୦୦ ମୁଦ୍ରା ପେନସନ୍ ପାଇଲେ ।

**ଦାକ୍ଷିଣାତ୍ୟ ଅଭିଯାନର ଫଳାଫଳ :**

ଦାକ୍ଷିଣାତ୍ୟରେ ଦୀର୍ଘ ୨୫ ବର୍ଷକାଳ ଅବିଶ୍ରାନ୍ତ ଯୁଦ୍ଧ କରିବା ଫଳରେ ଆଓରଙ୍ଗଜେବଙ୍କର ବିଶେଷ କିଛି ସ୍ଥାୟୀ ଉପକାର ହୋଇ ନ ଥିଲା । ଦାକ୍ଷିଣାତ୍ୟ ବିଜୟ ପାଇଁ ତାଙ୍କୁ କଠୋର ପରିଶ୍ରମ ତଥା ମୋଗଲ ରାଜକୋଷରୁ ବହୁ ଅର୍ଥ ବ୍ୟୟ କରିବାକୁ ପଡ଼ିଥିଲା । ଶାଜାହାନଙ୍କ ସମୟରେ ସେ ଯେତେବେଳେ ଦାକ୍ଷିଣାତ୍ୟର ମୁଖ୍ୟ ଶାସକ ଥିଲେ ସେତେବେଳଠାରୁ ବିଜାପୁର ଓ ଗୋଲକୁଣ୍ଡା ଅଧିକାର ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ ମଧ୍ୟ ସଫଳତା ହାସଲ କରିପାରି ନ ଥିଲେ । ନିଜେ ଯେତେବେଳେ ମୋଗଲ ସାମ୍ରାଜ୍ୟର ସମ୍ରାଟ ହେଲେ, ସେତେବେଳେ କିନ୍ତୁ ବହୁଶ୍ରମ ସ୍ୱୀକାର କରି ସେ ଏହି ରାଜ୍ୟ ଦ୍ୱୟକୁ କରଗତ କରି ପାରିଥିଲେ । ଦାକ୍ଷିଣାତ୍ୟର ଏହି ଦୁଇ ବିଶିଷ୍ଟ ରାଜ୍ୟ ବ୍ୟତୀତ ସେ

ମରହଟ୍ଟାମାନଙ୍କ ସହିତ ବହୁବର୍ଷ ଯୁଦ୍ଧରେ ଲିପ୍ତ ରହିବାରୁ ତାଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା ଏବଂ ମୋଗଲମାନଙ୍କର ନୈତିକ ବଳ ଏହି ମରହଟ୍ଟା ଜାତିଠାରେ ହାରମାନିଥିଲେ । ଭିନ୍‌ସେଣ୍ଟସ୍ମିଥ୍‌ଙ୍କ ମତରେ ଦାକ୍ଷିଣାତ୍ୟ ଯୁଦ୍ଧ କେବଳ ତାଙ୍କ ନିଜର ସମାଧି ପୀଠ ନ ହୋଇ, ତାଙ୍କ ସାମ୍ରାଜ୍ୟର ସମାଧି ପୀଠ ହୋଇଥିଲା । ରାଜନୈତିକ ଦୂରଦୃଷ୍ଟିରୁ ଆଉରଙ୍ଗଜେବ ଏତେଦୂର ଧର୍ମାନ୍ଧ ନ ହୋଇ, ଯଦି ସିହା ସମ୍ପ୍ରଦାୟ ଦ୍ୱାରା ଶାସିତ ହେଉଥିବା ଗୋଲକୁଣ୍ଡା ଓ ବିଜାପୁର ରାଜ୍ୟକୁ ଅଧିକାର କରି ନ ଥାନ୍ତେ, ତାହା ତାଙ୍କ ପକ୍ଷରେ ବରଂ ଭଲ ହୋଇଥା'ନ୍ତା । ଏହି ଦୁଇ ରାଜ୍ୟକୁ ଅଧିକାର କରିବାକୁ ଯାଇ, ମରହଟ୍ଟାମାନଙ୍କୁ ଦମନ କରିବା ତାଙ୍କ ପକ୍ଷରେ ଦୁଃସାଧ ହୋଇ ପଡ଼ିଲା । ତେଣୁ ରାଜତ୍ୱର ଅବଶିଷ୍ଟ ସମୟତକ ତାଙ୍କୁ ଏହି ମରହଟ୍ଟାମାନଙ୍କୁ ଦମନ କରିବା ପାଇଁ ଦାକ୍ଷିଣାତ୍ୟରେ ରହିବାକୁ ପଡ଼ିଲା । ଉତ୍ତର ଭାରତରେ ସେ ବହୁଦିନ ଧରି ଅନୁପସ୍ଥିତ ରହୁଥିବାରୁ ଶାସନ କ୍ଷେତ୍ରରେ ବହୁ ବିଶୃଙ୍ଖଳା ଦେଖା ଦେଇଥିଲା । ପ୍ରାଦେଶିକ ଶାସନ କର୍ତ୍ତା ଏବଂ ଫୌଜଦାର-ମାନେ କେନ୍ଦ୍ରୀୟ ଆଦେଶକୁ ଅବମାନନା କଲେ ମୁଦ୍ଧା, ସେମାନଙ୍କୁ ଆୟତ୍ତ କରିବା ପାଇଁ ରାଜଶକ୍ତି ଦୁର୍ବଳ ହୋଇ ପଡ଼ିଲା । ଏଣୁ ରାଜତ୍ୱର ଶେଷ ସମୟରେ ମୋଗଲ ସାମ୍ରାଜ୍ୟ ଭାଙ୍ଗି ପଡ଼ିବାର ଲକ୍ଷଣ ସେ ନିଜେ ଦେଖି ପାରିଲେ । ତାଙ୍କର ଏହି ଦୁର୍ବଳତାର ସୁଯୋଗ ନେଇ ଜାଠ୍, ଶିଖ୍ ଓ ସତ୍‌ନାମମାନେ ପ୍ରବଳ ପ୍ରତାପୀ ହୋଇ ଉଠିଲେ ।

ଏହି ଦାକ୍ଷିଣାତ୍ୟ ଯୁଦ୍ଧ ଯୋଗୁ ରାଜନୈତିକ କ୍ଷତି ଅପେକ୍ଷା ଅର୍ଥନୀତିକ କ୍ଷତି ବିଶେଷ ଭାବରେ ପରିଲକ୍ଷିତ ହୁଏ । ବାରମ୍ବାର ଯୁଦ୍ଧ ଏବଂ ସୈନ୍ୟଚାଳନା ଫଳରେ ଶସ୍ୟ କ୍ଷେତ୍ର ସବୁ ନଷ୍ଟ ହୋଇ ଛାରଖାର ହୋଇଗଲା । ବୋଝ ଉପରେ ନଳିତା ବିଡ଼ା ପରି ମରହଟ୍ଟାମାନେ ମଧ୍ୟ ରାଜ୍ୟ ଲୁଣ୍ଠିତ କଲାବେଳେ ଶସ୍ୟକ୍ଷେତ୍ରଗୁଡ଼ିକୁ ନଷ୍ଟ କରି ଦେଉଥିଲେ ଏବଂ ଘରଦ୍ୱାର ସବୁ ପୋଡ଼ି ଧ୍ୱଂସ କରି ଦେଉଥିଲେ । ଫଳରେ ରାଜ୍ୟର ଆର୍ଥିକ ମାନଦଣ୍ଡ ଭାଙ୍ଗି ପଡ଼ିଲା । ୧୭୦୫ ଖ୍ରୀ: ଅ: ରେ ଆଉରଙ୍ଗଜେବ ଯେତେବେଳେ ଦାକ୍ଷିଣାତ୍ୟ ଜୟ କରି ଫେରିଗଲେ ସେତେବେଳେ ଦାକ୍ଷିଣାତ୍ୟ ପ୍ରାୟ ଜନଶୂନ୍ୟ ହୋଇ ଯାଇଥିଲା । ଶସ୍ୟକ୍ଷେତ୍ର ଓ ବଣ ଜଙ୍ଗଲ ନଷ୍ଟ ବିନଷ୍ଟ ହୋଇ ଯାଇଥିଲା । ମଣିଷ ଓ ପଶୁମାନଙ୍କର କଙ୍କାଳ ଦ୍ୱାରା ଶସ୍ୟକ୍ଷେତ୍ର, ପଡ଼ିଆ ଓ ବଣ ଜଙ୍ଗଲ ପରିପୂର୍ଣ୍ଣ ହୋଇ ଯାଇଥିଲା । ଦୁର୍ଭିକ୍ଷ ଓ ମରୁଡ଼ି ଯୋଗୁ ଚାଷୀ ଓ ଗରିବ ଶ୍ରେଣୀର ଲୋକମାନେ ମଶା ମାଛି ପରି ମୃତ୍ୟୁ ମୁଖରେ ପଡ଼ିଲେ । ଏହି ସମୟରେ ସବୁ ପ୍ରକାର ବାଣିଜ୍ୟ ବ୍ୟବସାୟ ପ୍ରାୟ ବନ୍ଦ ହୋଇଯାଇଥିଲା ଏବଂ ଗ୍ରାମ୍ୟ ଶିଳ୍ପ ଲୋପ ପାଇ ଯାଇଥିଲା ।

ମୋଗଲ ସୈନ୍ୟମାନେ ଯୁଦ୍ଧ ଯାତ୍ରାବେଳେ ଶସ୍ୟକ୍ଷେତ୍ରଗୁଡ଼ିକ ନଷ୍ଟ କରି ଦେଉଥିଲେ ମଧ୍ୟ ଏହାର କ୍ଷତିପୂରଣ ସମ୍ରାଟ ଦେଉ ନ ଥିଲେ । ସେମାନେ ବାଟରେ ପଡ଼ୁଥିବା ଗ୍ରାମଗୁଡ଼ିକୁ ମଧ୍ୟ ଲୁଣ୍ଠନ କରୁଥିଲେ । ପ୍ରଦେଶର ଜାଗିରଦାରମାନଙ୍କର

ପ୍ରଜାମାନଙ୍କ ପ୍ରତି କୌଣସି ପ୍ରକାର ସହାନୁଭୂତି ନ ଥିଲା । ସେମାନେ ମଧ୍ୟପ୍ରଦେଶରେ ଯଥେଚ୍ଛାଚାର ଶାସନ ଚଳାଉଥିଲେ । ମୋଗଲ ସାମ୍ରାଜ୍ୟର ଆର୍ଥିକ ଦୁରବସ୍ଥା ଏପରି ଏକ ଚରମ ସୀମାରେ ଆସି ପହଞ୍ଚିଥିଲା ଯେ ସୈନ୍ୟବାହିନୀର ବହୁ ସୈନ୍ୟ ପ୍ରାୟ ତିନି ବର୍ଷ ପର୍ଯ୍ୟନ୍ତ ସେମାନଙ୍କର ଦରମା ପାଇ ନ ଥିଲେ । ମୋଗଲ ସାମ୍ରାଜ୍ୟ ଦେବାଳିଆ ଅବସ୍ଥାକୁ ଆସି ଯାଇଥିଲା ।

ସାର୍ ଯଦୁନାଥ ସରକାରଙ୍କ ମତରେ ମୋଗଲ ସାମ୍ରାଜ୍ୟ ଖୁବ୍ ବିରାଟ ହୋଇ ଯିବାରୁ ଏବଂ ଜଣେ ବ୍ୟକ୍ତି ପକ୍ଷରେ ଏହାକୁ ଶାସନ କରିବା କାଠିକର ପାଠ ହୋଇ ପଡ଼ିବାରୁ, ଶତ୍ରୁମାନେ ରାଜ୍ୟର ଚାରିଆଡ଼େ ପ୍ରବଳ ହୋଇ ଉଠିଲେ । ଏହି ଶତ୍ରୁମାନଙ୍କୁ ସମସ୍ତ ସମୟରେ ସେ ନିଜ ଅଧୀନକୁ ଆଣୁଥିଲେ ସୁଦ୍ଧା ସବୁଦିନ ପାଇଁ ସେମାନଙ୍କୁ ଆୟତ୍ତରେ ରଖିପାରୁ ନ ଥିଲେ । ଏଣୁ ରାଜ୍ୟରେ ସର୍ବଦା ଯୁଦ୍ଧ ଲାଗି ରହୁଥିବାରୁ ଏବଂ ରାଜକୀୟ ପୃଷ୍ଠପୋଷକତା ଅଭାବରୁ ଶିକ୍ଷା, ସଂସ୍କୃତି ଓ କଳା ହ୍ରାସ ପାଇଲା । ସୁତରାଂ ସମ୍ରାଟ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ପରେ ଏହି ବିରାଟ ମୋଗଲ ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡିତ ହୋଇଗଲା ।



# ଷଷ୍ଠ ଅଧ୍ୟାୟ
## ମରହଟ୍ଟା ନୀତି

**ମହାରାଷ୍ଟ୍ର :**

ଦାକ୍ଷିଣାତ୍ୟର ପଶ୍ଚିମ ଦିଗରେ ମହାରାଷ୍ଟ୍ର ଅଞ୍ଚଳ ଅବସ୍ଥିତ । ଏହି ଅଞ୍ଚଳ ପର୍ବତ ଓ ଅରଣ୍ୟରେ ପରିପୂର୍ଣ୍ଣ । ବିନ୍ଧ୍ୟ, ସହ୍ୟାଦ୍ରି ଓ ସାତପୁରା ପର୍ବତମାନଙ୍କ ଦ୍ୱାରା ଏହି ରାଜ୍ୟ ପରିବେଷ୍ଟିତ । ପୁନା, ନାସିକ୍ ଓ ସାତରା ପ୍ରଭୃତି ସହରମାନ ଏହି ରାଜ୍ୟରେ ଅବସ୍ଥିତ । ଏହାର ଉତ୍ତରରେ ନର୍ମଦା ଓ ତାପ୍ତି ନଦୀ ପ୍ରବାହିତ ହୋଇ ରାଜ୍ୟର ସୀମା ନିର୍ଦ୍ଧାରଣ କରୁଅଛି । ମହାରାଷ୍ଟ୍ରର ଅଧିବାସୀଗଣ ମରହଟ୍ଟା ନାମରେ ପରିଚିତ । ଏହି ମରହଟ୍ଟାମାନେ ଖର୍ବକାୟ, ପରିଶ୍ରମୀ, ଯୁଦ୍ଧପ୍ରିୟ ଓ କଷ୍ଟସହିଷ୍ଣୁ ଅଟନ୍ତି । ଏମାନେ ଯୁଦ୍ଧ କୌଶଳରେ ଅତ୍ୟନ୍ତ ନିପୁଣ । ମହାରାଷ୍ଟ୍ରର ଅଧିକାଂଶ ଅଞ୍ଚଳ ପାର୍ବତ୍ୟ ଭୂମି ଓ ଅନୁର୍ବର ହୋଇଥିବାରୁ, ଏଠାକାର ଅଧିବାସୀମାନଙ୍କୁ ସର୍ବଦା କଠିନ ପରିଶ୍ରମ କରି ଜୀବିକାନିର୍ବାହ କରିବାକୁ ପଡ଼ୁଥିଲା । ଫଳରେ ସେମାନେ ଆତ୍ମନିର୍ଭରଶୀଳ ଥିଲେ । ଏହି ମରହଟ୍ଟାମାନେ ପ୍ରଥମରୁ ଏକ ସ୍ୱତନ୍ତ୍ର ଜାତିରୂପେ ଅବଶ୍ୟ ପରିଚିତ ନ ଥିଲେ । ପରବର୍ତ୍ତୀକାଳରେ ଏମାନେ ଯୁଦ୍ଧ ବିଦ୍ୟା ଶିକ୍ଷା କରି ପଡ଼ୋଶୀ ରାଜ୍ୟ ବିଜାପୁର ଓ ଅହମ୍ମଦନଗର ରାଜ୍ୟର ସୈନ୍ୟ ବିଭାଗରେ କାର୍ଯ୍ୟ କଲେ ଏବଂ ସପ୍ତଦଶ ଶତାବ୍ଦୀ ବେଳକୁ ସେମାନେ ଏକ ପ୍ରଧାନ ଶକ୍ତିରୂପେ ପରିଗଣିତ ହେଲେ ।

**ଶାହାଜୀ ଭୋନ୍‌ସଲ :**

ଶାଜାହାନ ସମ୍ରାଟ ଥିଲାବେଳେ ମରହଟ୍ଟାମାନଙ୍କ ମଧ୍ୟରେ ପ୍ରଥମ କରି ଏକ ଜାତୀୟ ଚେତନା ଆବିର୍ଭାବ ହେଲା । ସେମାନଙ୍କର ପ୍ରତିଭାଶାଳୀ ନେତା ଶାହାଜୀ ଭୋନ୍‌ସଲ ଅହମ୍ମଦନଗରରେ ପ୍ରାଧାନ୍ୟ ଲାଭ କରି ଉକ୍ତ ରାଜ୍ୟକୁ ମୋଗଲମାନଙ୍କଠାରୁ ରକ୍ଷା କରିବାକୁ ଯଥାସାଧ୍ୟ ଚେଷ୍ଟା କରିଥିଲେ । କିନ୍ତୁ ସେ ମୋଗଲମାନଙ୍କ ଦ୍ୱାରା ପରାସ୍ତ ହୋଇଥିଲେ ଏବଂ ପରେ ଶାଜାହାନଙ୍କ ଅନୁମତି ପାଇ ବିଜାପୁର ରାଜାଙ୍କ ଅଧୀନରେ କାର୍ଯ୍ୟ କଲେ । ସେ ମଧ୍ୟ ପୁନା ଓ ବାଙ୍ଗାଲୋରର ଶାସକ ଥିଲେ ।

**ଶିବାଜୀଙ୍କ ବାଲ୍ୟ ଜୀବନ ଓ ସାମରିକ ଶିକ୍ଷା :**

ଏହି ମରହଟ୍ଟାମାନେ ଶିବାଜୀଙ୍କ ନେତୃତ୍ୱରେ ଅତିଶୟ ପରାକ୍ରମଶାଳୀ ହୋଇ ମୋଗଲମାନଙ୍କୁ ଭୀଷଣ ଭାବରେ ଅସ୍ତବ୍ୟସ୍ତ କରି ପକାଇଥିଲେ । ତାଙ୍କ ଜନ୍ମ ବିଷୟରେ ଏକ ସୁନ୍ଦର ଗଳ୍ପ ଅଛି । ଦିନେ ରାତିରେ ଶାହାଜୀ ଏକ ସ୍ୱପ୍ନ ଦେଖିଲେ ଯେ ଗେରୁଆ ବସ୍ତ୍ର ପରିଧାନ କରିଥିବା ଜଣେ ସନ୍ନ୍ୟାସୀ ତାଙ୍କ ପାଖରେ ଛିଡ଼ା ହୋଇ ତାଙ୍କ ହାତରେ ଗୋଟିଏ ଆମ୍ବ ଦେଇ କହୁଛନ୍ତି—"ଏହି ଫଳଟିକୁ ତୁମେ ସ୍ୱାମୀ-ସ୍ତ୍ରୀ ଉଭୟେ ଖାଇଲେ ତୁମର

ଏକ ପୁତ୍ର ସନ୍ତାନ ଜାତ ହେବ । ସେ ଭଗବାନ ଶିବଙ୍କର ଅବତାର ହେବ । ତୁମେ ତାଙ୍କୁ ମୁସଲମାନମାନଙ୍କୁ ନମସ୍କାର ହେବା ପାଇଁ ବାଧ୍ୟ କରିବ ନାହିଁ ଏବଂ ପୁତ୍ରକୁ ବାର ବର୍ଷ ହେବା ପରେ ତା'କୁ ନିଜ ସ୍ୱଇଚ୍ଛାରେ କାର୍ଯ୍ୟ କରିବା ପାଇଁ ସୁଯୋଗ ଦେବ ।" ଶାହାଜୀ ନିଦରୁ ଉଠି ଦେଖିଲେ ଯେ ସତରେ ତାଙ୍କ ହାତରେ ଗୋଟିଏ ଆମ୍ବ ଅଛି । ସେ ସଙ୍ଗେ ସଙ୍ଗେ ସ୍ତ୍ରୀଙ୍କୁ ଡକାଇ ଆମ୍ବଟିକୁ ବାଣ୍ଟି କରି ଖାଇଲେ ଏବଂ ଫଳରେ ଶାହାଜୀଙ୍କର ଦ୍ୱିତୀୟ ପୁତ୍ର ଶିବାଜୀ ୧୬୨୭ ଖ୍ରୀ: ଅ: ଏପ୍ରିଲ ମାସ ୧୦ ତାରିଖରେ ଦୁନ୍ନାର ନିକଟସ୍ଥ ଶିବ୍‌ନର ଦୁର୍ଗରେ ଜନ୍ମଗ୍ରହଣ କରିଥିଲେ ।



( ଶିବାଜୀ )

କିନ୍ତୁ ଶିବାଜୀଙ୍କର ବାଲ୍ୟ ଜୀବନ ଅତି ଦୁଃଖରେ ଅତିବାହିତ ହୋଇଥିଲା । ତାଙ୍କର ପିତାମହ ଲଖୋଜୀ ମାଧବ ରାଓ ମୋଗଲ ସୈନ୍ୟ ବିଭାଗରେ ଯୋଗ ଦେଇଥିଲେ ମଧ୍ୟ, ତାଙ୍କ ପୁତ୍ର ଶାହାଜୀ ପ୍ରଥମରୁ ମୋଗଲମାନଙ୍କର ବିରୋଧ କରିବାରୁ, ସେ ତତ୍କାଳୀନ ମୋଗଲ ସମ୍ରାଟ ଶାଜାହାନଙ୍କର ଶତ୍ରୁ ହୋଇ ପଡ଼ିଥିଲେ । ଏଣୁ ମୋଗଲମାନେ ଶିବାଜୀଙ୍କୁ ବାଲ୍ୟକାଳରୁ ବନ୍ଦୀ କରିବା ପାଇଁ ଚେଷ୍ଟା କରିଥିଲେ ମଧ୍ୟ, ଜିଜାବାଈଙ୍କର ଚତୁରତା ଯୋଗୁ ତାହା କରିପାରି ନ ଥିଲେ । ଏହାଛଡ଼ା ୧୬୩୦ ଖ୍ରୀ: ଅ: ରେ ଶାହାଜୀ ଜୀଜାବାଈଙ୍କୁ

ବିବାହ କରିଥିବାରୁ, ଜିଜାବାଈ ସ୍ୱାମୀଙ୍କ ସହିତ ପ୍ରାୟ ସମସ୍ତ ଆନ୍ତରିକ ସମ୍ପର୍କ ତୁଟାଇ ଦେଇ, କେବଳ ବାହ୍ୟ ସମ୍ପର୍କ ରଖିଥିଲେ । ପୁନଶ୍ଚ ଶାହାଜୀ ସଦାସର୍ବଦା ଦୂର ବିଜାପୁରରେ ରାଜକାର୍ଯ୍ୟରେ ବ୍ୟସ୍ତ ରହୁଥିବାରୁ, ଶିବାଜୀ ମାତା ଜିଜାବାଈଙ୍କ ତତ୍ତ୍ୱାବଧାନରେ ରହି ବାଲ୍ୟଜୀବନ ଅତିବାହିତ କରିଥିଲେ । ଧର୍ମପରାୟଣା ମାତାଙ୍କ ପ୍ରଭାବରେ, ସେ କିପରି ଭାବରେ ମୋଗଲମାନଙ୍କ ଦୌରାତ୍ମ୍ୟରୁ ହିନ୍ଦୁ ଧର୍ମକୁ ରକ୍ଷା କରି ଏକ ସ୍ୱାଧୀନ ରାଜ୍ୟ ଗଠନ କରି ପାରିବେ, ତାହା ସେ ଶୈଶବ କାଳରୁ ଚିନ୍ତା କରୁଥିଲେ । ଦାଦାଜୀ କୋଣ୍ଡଦେବ ତାଙ୍କର ଶିକ୍ଷାଗୁରୁ ଥିଲେ ଏବଂ ଶିବାଜୀ ତାଙ୍କ ତତ୍ତ୍ୱାବଧାନରେ ନିଜର ଚରିତ୍ର ଗଠନ କରିବା ସଙ୍ଗେ ସଙ୍ଗେ ଯୁଦ୍ଧ ବିଦ୍ୟା ଶିକ୍ଷା କରି ଅଶ୍ୱାରୋହଣ, ଧନୁର୍ବିଦ୍ୟା, ଅସ୍ତ୍ରଚାଳନା ପ୍ରଭୃତିରେ ବିଶେଷ ଦକ୍ଷତା ଲାଭ କରିଥିଲେ । ରାମଦାସ ତାଙ୍କର ଧର୍ମଗୁରୁ ଥିଲେ । ସେ ହିନ୍ଦୁ ଧର୍ମକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ବ୍ରାହ୍ମଣ ଓ ହିନ୍ଦୁ ଧର୍ମର ପୂଜ୍ୟ ଗୋମାତାଙ୍କୁ ରକ୍ଷା କରିବା ପାଇଁ ଶିବାଜୀଙ୍କ ମନରେ ଉତ୍ସାହ ଓ ପ୍ରେରଣା ଯୋଗାଇ ଦେଇଥିଲେ । ଏହାଛଡ଼ା ତୁକାରାମଙ୍କର ଚିନ୍ତାଧାରାର ପ୍ରଭାବ ମଧ୍ୟ ତାଙ୍କ ଉପରେ ପଡ଼ିଥିଲା । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ଶିବାଜୀ ନିଜ ଜନ୍ମ ଭୂମିକୁ ମୋଗଲମାନଙ୍କ ହାତରୁ ଉଦ୍ଧାର କରିବା ପାଇଁ ଦୃଢ଼ ପରିକର ହେଲେ । ସେ ପଶ୍ଚିମଘାଟ ପର୍ବତମାଳାରେ ବାସ କରୁଥିବା ମାଓ୍ୱାଲି ନାମକ ଏକ ପାହାଡ଼ିଆ ଜାତିର ଲୋକମାନଙ୍କୁ ଯୁଦ୍ଧ ବିଦ୍ୟା ଶିକ୍ଷା ଦେଇ ଗୋଟିଏ ସୈନ୍ୟ ଦଳ ଗଠନ କଲେ । ଏହି ମାଓ୍ୱାଲିମାନେ କଠିନ ପରିଶ୍ରମୀ ଓ ସାହସୀ । ଏମାନେ ରାଜ୍ୟର ସବୁ ପ୍ରାନ୍ତ ସହିତ ପରିଚିତ ଥିବାରୁ ଶିବାଜୀ ଏମାନଙ୍କ ସାହାଯ୍ୟରେ ପଶ୍ଚିମଘାଟ ପର୍ବତମାଳାର ଉପତ୍ୟକା ଓ ଗିରିପଥ ବିଷୟରେ ବିଶେଷ ଜ୍ଞାନ ଲାଭ କରିଥିଲେ ।

## ମରହଟ୍ଟା ଶକ୍ତିର ବିସ୍ତାର :

୧୬୪୬ ଖ୍ରୀ: ଅ: ରେ ବିଜାପୁର ସୁଲତାନ ଭୀଷଣ ଭାବରେ ପୀଡ଼ିତ ହୋଇ ପଡ଼ିବାରୁ ରାଜ୍ୟରେ ବିଶୃଙ୍ଖଳା ଦେଖାଗଲା । ନିଜ ବାହୁବଳର ପରିଚୟ ଦେବା ପାଇଁ ଶିବାଜୀ ଉଣେଇଶି ବର୍ଷ ବୟସରେ ଏହାର ସୁଯୋଗ ନେଲେ । ସେହି ବର୍ଷ ପୁନା ଠାରୁ ବାଉଶି କିଲୋମିଟର ଦୂରରେ ଥିବା ରାୟଗଡ଼ ଦୁର୍ଗ ବିନା ରକ୍ତପାତରେ ଅଧିକାର କଲେ । ଏହାପରେ ସେ ଚକନ୍, ସିନଗଡ଼, କୋନ୍ଦନ୍ ଓ ପୁରନ୍ଦର ଦୁର୍ଗ ଏବଂ ବାରମାଟି ଓ ଇନ୍ଦ୍ପୁର ଫାଣ୍ଡି କରଗତ କଲେ । ଏହି ସାହସିକତା କାର୍ଯ୍ୟ ଯୋଗୁ ପୁନା ଓ ପଡ଼ୋଶୀ ରାଜ୍ୟର ଯୁବକ ବ୍ରାହ୍ମଣମାନେ ଅତି ଉତ୍ସାହର ସହିତ ଶିବାଜୀଙ୍କ ସହିତ ଯୋଗଦେଲେ । ଦିନକୁ ଦିନ ବିଜାପୁର ରାଜ୍ୟରେ ତାଙ୍କର ଦୌରାତ୍ମ୍ୟ ବଢ଼ିବାକୁ ଲାଗିଲା ।

ଶିବାଜୀଙ୍କର ଏପ୍ରକାର ମତିଗତି ଦେଖି ସୁଲତାନ ଶାହାଜୀଙ୍କୁ ଏକ କୈଫିୟତ୍ ମାଗିଲେ ଏବଂ ଶିବାଜୀଙ୍କ ଉପରେ ତାଙ୍କର ପ୍ରଭାବ ପକାଇବା ପାଇଁ ତାଙ୍କୁ ନିର୍ଦ୍ଦେଶ ଦେଲେ । ଶାହାଜୀ ତାଙ୍କ ବୀର ପୁତ୍ର ଶିବାଜୀଙ୍କ ନିକଟକୁ ଏଥିରୁ କ୍ଷାନ୍ତ ରହିବା ପାଇଁ

ଖଣ୍ଡିଏ ଚିଠି ପଠାଇଲେ । ଶିବାଜୀ ଉତ୍ତର ଦେଲେ ଯେହେତୁ ସେ ପିଲା ନୁହନ୍ତି ଏବଂ ତାଙ୍କ ଦ୍ୱାରା କରଗତ ହୋଇଥିବା ବିଜାପୁର ରାଜ୍ୟର କେତେକ ରାଜ୍ୟ ଉପରେ ସେ ମାଲିକ ଅଟନ୍ତି, ତେଣୁ ସେ ଏହି ନିର୍ଦ୍ଦେଶ ମାନି ନେଇ ପାରିବେ ନାହିଁ । କିନ୍ତୁ ବିଜାପୁର ସୁଲତାନ ଏହା ବୁଝିଲେ ନାହିଁ । ସେ ଭାବିଲେ ଯେ ଶାହାଜୀଙ୍କ ସହିତ ତାଙ୍କ ପୁତ୍ର ଶିବାଜୀଙ୍କର ଯୋଗସୂତ୍ର ରହିଛି । ଏହାଛଡ଼ା ସୁଲତାନଙ୍କର ନ୍ୟାୟାଳୟରେ ଥିବା କେତେକ ମୁସଲ-ମାନମାନେ ଶାହାଜୀଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ସୁଲତାନଙ୍କଠାରେ ତାଙ୍କ ବିରୁଦ୍ଧରେ କୁତ୍ସାରଟନା କଲେ । ଅନେକ ମଧ୍ୟ ଶାହାଜୀ ନିର୍ଦ୍ଦୋଷ ବୋଲି କହିଥିଲେ ମଧ୍ୟ ସୁଲତାନ ତାହା ବିଶ୍ୱାସ କଲେ ନାହିଁ । ଫଳରେ ସୁଲତାନ ଶିବାଜୀଙ୍କୁ ଜବତ କରିବା ପାଇଁ ତାଙ୍କ ପିତା ଶାହାଜୀଙ୍କୁ ବନ୍ଦୀକରି ଶାସ୍ତି ବିଧାନ କଲେ ।

ଜଣେ ଲୋକ ପଶିବା ଭଳି ଛୋଟ କୋଠରୀଟିଏ ତିଆରି କରି, ଶାହାଜୀଙ୍କୁ ତାହାରି ମଧ୍ୟରେ ଭର୍ତ୍ତି କରି ରଖିବା ପାଇଁ ସୁଲତାନ ରାଜମିସ୍ତ୍ରୀମାନଙ୍କୁ ଆଦେଶ ଦେଲେ । ଏହି କୋଠରୀ ମଧ୍ୟରେ ଶାହାଜୀଙ୍କୁ ରଖାଗଲା ଏବଂ କୋଠରୀର ଦ୍ୱାର ବନ୍ଦ କରିବାକୁ ଲାଗିଲେ । କାନ୍ଥ ଆସ୍ତେ ଆସ୍ତେ ଯେତେ ଉଚ୍ଚ ହେଉଥାଏ, ସୁଲତାନ ତାଙ୍କୁ ଦୋଷ ସ୍ୱୀକାର କରିବା ପାଇଁ ସେତିକି ବାଧ୍ୟ କରୁଥିଲେ । ଯେତେବେଳେ କାନ୍ଥ ତାଙ୍କର ଗଣ୍ଡଦେଶ ପର୍ଯ୍ୟନ୍ତ ଉଚ୍ଚ ହୋଇଗଲା, ସେତେବେଳେ ସୁଲତାନ ଆଉ କାନ୍ଥ ତିଆରି କରିବା ବନ୍ଦ କରିଦେଲେ । ଶାହାଜୀଙ୍କର ମୁହଁଟି କେବଳ ଦେଖା ଯାଉଥାଏ । ଶାହାଜୀ କିନ୍ତୁ ଏଥିରେ ଆଦୌ ବିଚଳିତ ହେଲେ ନାହିଁ । କାରଣ ଶିବାଜୀ ତାଙ୍କର ବିନା ପରାମର୍ଶରେ ସମସ୍ତ କାର୍ଯ୍ୟ କରୁଥା'ନ୍ତି ଏବଂ ଶିବାଜୀଙ୍କର କାର୍ଯ୍ୟକଳାପରେ ସେ ଆଦୌ ଲିପ୍ତ ନ ଥିଲେ । ସୁଲତାନ ଶାହାଜୀଙ୍କୁ ଶିବାଜୀଙ୍କ ନିକଟକୁ ଚିଠି ଲେଖିବା ପାଇଁ ଆଦେଶ ଦେଲେ ଏବଂ ଏହି ଚିଠି ପାଇ ଶିବାଜୀ ଯଦି ବିଜାପୁର ନ ଆସନ୍ତି ତା'ହେଲେ, ଯେତିକି କାନ୍ଥ ଉଠିବାକୁ ବାକି-ଅଛି ତାହା ଉଠାଇ ଦିଆଯିବ ବୋଲି ଧମକ ଦିଆଗଲା । ଏକ ପ୍ରକାର ବାଧ୍ୟ ହୋଇ ଶାହାଜୀ ଯେତେବେଳେ ଶିବାଜୀଙ୍କ ନିକଟକୁ ତାଙ୍କର ଏହି ଦୁର୍ଦ୍ଦଶା କଥା ବର୍ଣ୍ଣନା କରି ଚିଠି ଦେଲେ, ସେତେବେଳେ ଶିବାଜୀ ଟିକିଏ ବିବ୍ରତ ହୋଇ ପଡ଼ିଲେ ।

ସେତେବେଳକୁ ରାଜପୁତ୍ର ମୁରାଦ ଦାକ୍ଷିଣାତ୍ୟର ଶାସନକର୍ତ୍ତା ଥିଲେ । ଶିବାଜୀ ତାଙ୍କ ସହିତ ଯୋଗସୂତ୍ର ସ୍ଥାପନ କରି ମୋଗଲ ସୈନ୍ୟ ବିଭାଗରେ ଯୋଗଦେବା ପାଇଁ ଇଚ୍ଛା କଲେ । ତାଙ୍କର ଏହି କୂଟନୈତିକ କୌଶଳରେ ସୁଲତାନ ଭୟଭୀତ ହୋଇ ଶାହାଜୀଙ୍କୁ ମୁକ୍ତ କରିଦେଲେ ଏବଂ ସେ ବିଜାପୁର ରାଜ୍ୟ ଛାଡ଼ି ଯାଇ ପାରିବେ ନାହିଁ ବୋଲି ଆଦେଶ ଦେଲେ । କାରଣ ସୁଲତାନ ଯଦି ଶାହାଜୀଙ୍କୁ ହତ୍ୟା କରନ୍ତି, ତାହା-ହେଲେ ଶିବାଜୀ ବିଜାପୁର ସୁଲତାନଙ୍କର ମୋଗଲମାନଙ୍କୁ ଦେବାକୁ ଥିବା ବକେୟା

ରାଜସ୍ୱ ବାବଦରେ, ତାଙ୍କ ଅଧୀନରେ ଥିବା ବିଜାପୁର ଅଞ୍ଚଳକୁ ମୋଗଲମାନଙ୍କୁ ଦେଇ-ଦେବେ ଏବଂ ମୋଗଲମାନେ ପୁନଶ୍ଚ ଶାହାଜୀଙ୍କର ମୃତ୍ୟୁ ପାଇଁ ଅଧିକ କ୍ଷତିପୂରଣ ତାଙ୍କ-ଠାରୁ ଦାବୀ କରିବେ । ଏହାପରେ ଶାହାଜୀ ସୁଲତାନଙ୍କ ସହିତ ଶାନ୍ତିସ୍ଥାପନ କଲେ । ଛଅ ବର୍ଷ କାଳ ଶିବାଜୀ ନିଜର ଶକ୍ତିକୁ ଅଭିବୃଦ୍ଧି କରିବା ପାଇଁ ସର୍ବଦା ସଚେଷ୍ଟ ରହିଲେ ଏବଂ ଭବିଷ୍ୟତରେ ଦାକ୍ଷିଣାତ୍ୟରୁ ବିଦେଶୀମାନଙ୍କୁ ସମ୍ପୂର୍ଣ୍ଣରୂପେ ନିଶ୍ଚିହ୍ନ କରି ଏକ ସ୍ୱାଧୀନ ହିନ୍ଦୁ ରାଜ୍ୟ ଗଠନ କରିବା ପାଇଁ ଆଶାପୋଷଣ କଲେ ।

## ଶିବାଜୀ ଓ ଅଉରଙ୍ଗଜେବ :

୧୬୫୬ ଖ୍ରୀ: ଅ: ରେ ବିଜାପୁରର ସୁଲତାନ ମହମ୍ମଦ ଆଦିଲସାହା ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ଊଣେଇଶି ବର୍ଷର ପୁତ୍ର ଆଲି ଆଦିଲସାହା ବିଜାପୁର ସିଂହାସନ ଆରୋହଣ କଲେ । ଅଳ୍ପ ବୟସ ହେତୁ ଏବଂ ଶାସନଗତ ଅଭିଜ୍ଞତା ନ ଥିବାରୁ ସେ ଦୁର୍ବଳ ଥିଲେ । ସେତେବେଳେ ଆଉରଙ୍ଗଜେବ ଦାକ୍ଷିଣାତ୍ୟର ଶାସନକର୍ତ୍ତା ଥିଲେ । ଏଣୁ ଆଉରଙ୍ଗଜେବ ବିଜାପୁରର ମୃତ ସୁଲତାନ ମହମ୍ମଦ ଆଦିଲ ସାହାଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ଏହି ସୁଯୋଗରେ ବିଜାପୁର ରାଜ୍ୟ ଆକ୍ରମଣ କରିବା ପାଇଁ ଚିନ୍ତା କଲେ । ଏହି ଆକ୍ରମଣ ପୂର୍ବରୁ ସେ ସମ୍ରାଟ ଶାଜାହାନଙ୍କୁ ସୂଚାଇ ଦେଲେ ଯେ, ଆଲି ଆଦିଲସାହା ମୃତ ବିଜାପୁର ସୁଲତାନଙ୍କର ପୁତ୍ର ନୁହନ୍ତି । ବିଜାପୁର ସିଂହାସନକୁ ସେ ତାଙ୍କର ବିନା ସମ୍ମତିରେ ବଳପୂର୍ବକ ଅଧିକାର କରିଛନ୍ତି । ଏହାଛଡ଼ା ବିଜାପୁର ମୋଗଲ ସାମ୍ରାଜ୍ୟର ଗୋଟିଏ କରଦ ରାଜ୍ୟ ହୋଇଥିବାରୁ, ମୋଗଲ ସମ୍ରାଟଙ୍କ ବିନା ଅନୁମତିରେ ଆଲି ଆଦିଲସାହାଙ୍କର ବିଜାପୁର ସିଂହାସନ ଆରୋହଣ କରିବା ନିୟମ ବିରୁଦ୍ଧ ବୋଲି ଶାଜାହାନଙ୍କ ନିକଟରେ ସେ ଯୁକ୍ତି ଉପସ୍ଥାପନ କଲେ । ତାଙ୍କୁ ବିଜାପୁର ସିଂହାସନ ଅଧିକାର କରିବା କ୍ଷମତାରୁ ଯଥାଶୀଘ୍ର ବହିଷ୍କାର କରିବା ଏକାନ୍ତ ପ୍ରୟୋଜନ ବୋଲି ଦୃଢ଼ ଭାବରେ ମତବ୍ୟକ୍ତ କରିବା ଫଳରେ, ବିଜାପୁର ଆକ୍ରମଣ କରିବା ପାଇଁ ସେ ଶାଜାହାନଙ୍କର ସ୍ୱୀକୃତି ପାଇଲେ ଏବଂ ବିଜାପୁର ଆକ୍ରମଣ କଲେ । ଶିବାଜୀ ଏହି ସୁଯୋଗରେ ଆଉରଙ୍ଗଜେବଙ୍କ ସହିତ ଯୋଗସୂତ୍ର ସ୍ଥାପନ କରି ମିଳିତ ଭାବରେ ବିଜାପୁର ଆକ୍ରମଣ କରିବା ପାଇଁ ନିଷ୍ପତ୍ତି କଲେ । କିନ୍ତୁ ଚତୁର ଆଉରଙ୍ଗଜେବ ଶିବାଜୀଙ୍କୁ ବିଶ୍ୱାସ କରି ପାରିଲେ ନାହିଁ । ଫଳରେ ଆଉରଙ୍ଗଜେବ ଯେତେବେଳେ ବିଜାପୁର ଆକ୍ରମଣ କଲେ ଠିକ୍ ସେତିକି ବେଳେ ଶିବାଜୀ ମୋଗଲ ସାମ୍ରାଜ୍ୟ ଅନ୍ତର୍ଗତ ଜୁଆର ଓ ଅହମ୍ମଦନଗର ଆକ୍ରମଣ କରି ଲୁଣ୍ଠନ କଲେ । ଏହା ଦେଖି ଆଉରଙ୍ଗଜେବ ମଧ୍ୟ କେତେକ ମରହଟ୍ଟାଙ୍କୁ ଗ୍ରାମକୁ ଧ୍ୱସ୍ତ ବିଧ୍ୱସ୍ତ କରିଦେଲେ । ଏହି ସମୟରେ (୧୬୫୭ ଖ୍ରୀ: ଅ:) ବିଜାପୁର ସୁଲତାନ ମୋଗଲମାନଙ୍କ ସହିତ ଶାନ୍ତି ସ୍ଥାପନ କରିବାରୁ, ଶିବାଜୀ ମଧ୍ୟ ଆଉରଙ୍ଗଜେବଙ୍କଠାରେ ଆତ୍ମସମର୍ପଣ କଲେ ଓ ଆଉରଙ୍ଗଜେବ ତାଙ୍କୁ ବାହ୍ୟିକ କ୍ଷମାଦେଲେ । କିନ୍ତୁ ଭ୍ରାତୃଯୁଦ୍ଧର

ଅବସାନ ପରେ, ସେ ଶିବାଜୀଙ୍କର ସମସ୍ତ ଶକ୍ତିକୁ ଧ୍ୱଂସ କରିଦେବେ ବୋଲି ମନେ ମନେ ଠିକ୍ କଲେ । ସେହି ସମୟଠାରୁ ଆଉରଙ୍ଗଜେବ ଓ ଶିବାଜୀଙ୍କ ମଧ୍ୟରେ ପ୍ରଥମେ ଶତ୍ରୁତା ଆରମ୍ଭ ହେଲା । ୧୬୫୭ ଖ୍ରୀ: ଅ: ରେ ସମ୍ରାଟ ଶାଜାହାନ ପୀଡ଼ିତ ଥିବା ଖବର ଶୁଣି ଭ୍ରାତୃଯୁଦ୍ଧରେ ଯୋଗଦେବା ପାଇଁ ଉତ୍ତରକୁ ଅଗ୍ରସର ହେବାରୁ, ଶିବାଜୀ ଉତ୍ତର କୋଣ୍ କୋଣ୍ ପ୍ରଦେଶ ଅଧିକାର କରିନେଲେ । ଏହା ବ୍ୟତୀତ ଶିବାଜୀ ତାଙ୍କୁ ଭ୍ରାତୃଯୁଦ୍ଧରେ ଅଶ୍ୱାରୋହୀ ସୈନ୍ୟ ସାହାଯ୍ୟ କରିବାକୁ ଦୃଢ଼ ପ୍ରତିଶ୍ରୁତି ଦେଇଥିଲେ ମଧ୍ୟ କାର୍ଯ୍ୟରେ ତାହା କରି ନ ଥିଲେ ।

## ଆଫଜଲ ଖାଁ ଓ ଶିବାଜୀ :

ବିଜାପୁର ସୁଲତାନ ଶିବାଜୀଙ୍କୁ ଶକ୍ତିଶାଳୀ ହେବାର ଦେଖି ବିବ୍ରତ ହୋଇ ପଡ଼ିଲେ ଏବଂ ଶାହାଜୀଙ୍କୁ ତାଙ୍କ ପୁତ୍ରର ଏପରି ଶତ୍ରୁତା ଆଚରଣ ବନ୍ଦ କରିବାକୁ ନିର୍ଦ୍ଦେଶ ଦେବାରୁ, ସେ ଏଥିରେ ଅକ୍ଷମତା ପ୍ରକାଶ କଲେ । ଏଣୁ ବଳ ପ୍ରୟୋଗ ଦ୍ୱାରା ଶିବାଜୀଙ୍କୁ ଦମନ କରିବା ପାଇଁ ସୁଲତାନ ସ୍ଥିର କଲେ ଏବଂ ୧୬୫୯ ଖ୍ରୀ: ଅ: ରେ ଶିବାଜୀଙ୍କୁ ଜୀବିତ ବା ମୃତ ଅବସ୍ଥାରେ ଧରି ଆଣିବା ପାଇଁ, ସେ ତାଙ୍କର ସେନାପତି ଆଫଜଲ ଖାଁଙ୍କୁ ପଠାଇଲେ । ଯଦି ଆଫଜଲ ଖାଁ ଏହା କରି ନ ପାରନ୍ତି ତା'ହେଲେ ଅନ୍ତତଃ ସେ ଶିବାଜୀଙ୍କଠାରୁ ଅଧିକୃତ ବିଜାପୁର ଅଞ୍ଚଳ ଫେରାଇ ଆଣିବା ପାଇଁ ତାଙ୍କୁ ଆଦେଶ ଦିଆଗଲା ।

ଆଫଜଲ ଖାଁ ଓ୍ୱାଇଠାରେ ଶିବାଜୀଙ୍କୁ ଏକ ସମ୍ମିଳନୀରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କଲେ । ଶିବାଜୀ ପ୍ରଥମେ ଏହି ନିମନ୍ତ୍ରଣକୁ ବିଶ୍ୱାସ କରି ପାରିଲେ ନାହିଁ । ଏହି ସମୟରେ ଶିବାଜୀଙ୍କର ଗୁପ୍ତ ସଂସ୍ଥାର ମୁଖ୍ୟ କର୍ମଚାରୀ ବିଶ୍ୱାସ ରାଓ (Visvas Rao) ଫକୀର୍ ବେଶରେ ଆଫଜଲ ଖାଁଙ୍କର ଛାଉଣୀକୁ ଯାଇ ଖବର ଆଣିଲେ ଯେ, ଆଫଜଲ ଶିବାଜୀଙ୍କୁ ବନ୍ଦୀକରି ବିଜାପୁର ଆଣିବା ପାଇଁ ଗର୍ବରେ ଉନ୍ମତ୍ତ ହୋଇ ପଡ଼ିଛନ୍ତି । ଏହା-ପରେ ଆଫଜଲ ଓ୍ୱାଇର କୁଳକର୍ଣ୍ଣୀ ଓ ତାଙ୍କର ଦିଓ୍ୱାନ, କିଷ୍ଟାଜୀ ଭାସ୍କରଙ୍କୁ ଶିବାଜୀଙ୍କ ନିକଟକୁ ବାର୍ତ୍ତା ଦେଇ ପଠାଇଲେ ଯେ ଆଫଜଲ ଶିବାଜୀଙ୍କ ସହିତ ସାକ୍ଷାତ କରିବାକୁ ଚାହାନ୍ତି ଏବଂ ଏହି ସାକ୍ଷାତ ଫଳରେ ଆଫଜଲ ବିଜାପୁର ସୁଲତାନଙ୍କ ଉପରେ ପ୍ରଭାବ ପକାଇ ତାଙ୍କ ପାଇଁ କ୍ଷମାଭିକ୍ଷା କରାଇଦେବେ ଓ ତାଙ୍କର ଅଧିକୃତ ରାଜ୍ୟଗୁଡ଼ିକ ଯେପରି ତାଙ୍କ ଅଧୀନରେ ରହିବ ତାହାର ବ୍ୟବସ୍ଥା ସେ କରାଇ ଦେବେ । କିଷ୍ଟାଜୀ ସେଠାରେ ଗୋଟିଏ ରାତି ଅବସ୍ଥାନ କଲେ । ସେହି ରାତିରେ ଶିବାଜୀ ତାଙ୍କୁ ହିନ୍ଦୁଧର୍ମ ନାମରେ ଶପଥ କରାଇ ଆଫଜଲଙ୍କର ପ୍ରକୃତ ଉଦ୍ଦେଶ୍ୟ ବିଷୟରେ ଜାଣିବାକୁ ଆଗ୍ରହ ପ୍ରକାଶ କଲେ । ଶିବାଜୀ ମଧ୍ୟ ତାଙ୍କ ଗୁପ୍ତଚର କଥା ତାଙ୍କୁ ଜଣାଇବାରୁ, କିଷ୍ଟାଜୀ ପ୍ରକୃତ ସତ୍ୟ ସ୍ୱୀକାର କଲେ । ଏହାପରେ ଶିବାଜୀ ଆଫଜଲ ଖାଁଙ୍କୁ ପନ୍ଦର ଦିନ ପରେ ପ୍ରତାପ ଗଡ଼ଠାରେ ସାକ୍ଷାତ କରିବା ପାଇଁ ଖବର ଦେଲେ ।

ଠିକ୍ ସମୟରେ ଆଫଜଲ ଖାଁ ମାଛି ପ୍ରତାପଗଡ଼ର ପାଦଦେଶରେ ପହଞ୍ଚିଲେ ଏବଂ ସେଠାରୁ ସେ ସବାରି ଦ୍ୱାରା ଗଡ଼ର ଉପରକୁ ଗଲେ । ତାଙ୍କର ସମ୍ମାନାର୍ଥେ ଶିବାଜୀ ରାସ୍ତାରେ ତାଙ୍କର ରହିବା ଓ ଖାଇବା ପାଇଁ ସମସ୍ତ ବ୍ୟବସ୍ଥା କରିଥିଲେ । ଆଫଜଲ ଜାଣି ପାରିଲେ ନାହିଁ ଯେ ଘନଜଙ୍ଗଲ ମଧ୍ୟରୁ ତାଙ୍କର ଗତିବିଧିକୁ ଜଗି ରହିବା ପାଇଁ ଶହ ଶହ ମରହଟ୍ଟା ସୈନିକମାନଙ୍କର ଆଖି ସର୍ବଦା ଘୂରି ବୁଲୁଛି । ଏହା ବ୍ୟତୀତ ଶିବାଜୀ ଯେଉଁ ସ୍ଥାନଟିରେ ଉଭୟଙ୍କର ସାକ୍ଷାତ ହେବ, ସେହି ସ୍ଥାନକୁ ସୁନା ରୂପା ଜରି କାର୍ଯ୍ୟରେ ଏବଂ ସୁନ୍ଦର କାର୍ପେଟ ଓ ଚାନ୍ଦୁଆ ଦ୍ୱାରା ସୁସଜ୍ଜିତ କରିଥିଲେ । ନିଜେ ଦେହରେ ପ୍ରଥମେ ଲୁହାର ବର୍ମ ପିନ୍ଧି ତା' ଉପରେ ସୁନା ଜରିର ଗୋଟିଏ କୋର୍ଟ ପିନ୍ଧିଲେ । ମସ୍ତକରେ ସେହିପରି ଲୁହାର ଟୋପି ପିନ୍ଧି ତା' ଉପରେ ଲୁଗାର ପଗଡ଼ି ପିନ୍ଧିଲେ ଏବଂ ବାମ ହାତରେ ବାଘନଖ ଅସ୍ତ୍ର ପରିଧାନ କରି ଆଫଜଲ ଖାଁଙ୍କୁ ସାକ୍ଷାତ କରିବା ପାଇଁ ବାହାରି ପଡ଼ିଲେ ।

ଆଫଜଲ ଖାଁଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ଶିବାଜୀ ଆଗ୍ରହର ସହିତ ଅପେକ୍ଷା କରୁଥା'ନ୍ତି । ଏହି ସମୟରେ ସବାରିରୁ ଆଫଜଲ ଅବତରଣ କରୁ କରୁ ଶିବାଜୀଙ୍କୁ ଅପମାନ ସୂଚକ ଭାଷାରେ କହିଲେ ଯେ ତାଙ୍କପରି ଜଣେ ସାଧାରଣ କୃଷକ ପକ୍ଷରେ ଚାନ୍ଦୁଆ ତଳେ ଥିବା ଏତେ ମୂଲ୍ୟବାନ ପଦାର୍ଥ ସମ୍ଭବ ହୋଇ ପାରିଲା କିପରି ? ଏହା ଶୁଣି ଶିବାଜୀ ରାଗାନ୍ୱିତ ହୋଇ ଉତ୍ତର ଦେଲେ — "ଯାହାଙ୍କର ପିତା ବିଜାପୁର ସୁଲତାନଙ୍କର ରନ୍ଧନାଗାରର ସାମାନ୍ୟ ଜଣେ ତତ୍ତ୍ୱାବଧାରକ ଥିଲେ, ତାଙ୍କର ପୁତ୍ରର ଏ ବିଷୟରେ କିଛି କହିବାର ନାହିଁ ।" ଏଥିରେ ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ଆଫଜଲ ଶିବାଜୀଙ୍କୁ ଅତି ତୀବ୍ର ଭାବରେ ଆକ୍ରମଣ କଲେ । ପ୍ରଥମେ ଶିବାଜୀ ତାଙ୍କର ଏହି ଆକ୍ରମଣରେ ବୁଦ୍ଧିଶୂନ୍ୟ ହୋଇ ପଡ଼ିଲେ । କିନ୍ତୁ ପରେ ସାହସ ଓ ଧୈର୍ଯ୍ୟସଞ୍ଚୟ କରି ବାଘ ନଖ ଦ୍ୱାରା ତାଙ୍କୁ ଅତି ତୀବ୍ର ଭାବରେ ପ୍ରତିଆକ୍ରମଣ କଲେ ଓ ଶେଷରେ ନିଜ ସହକର୍ମୀର ଖଡ଼୍ଗରେ ତାଙ୍କର ଶିରଚ୍ଛେଦନ କଲେ । ଏହି ରକ୍ତାକ୍ତ ମସ୍ତକକୁ ସେ ତାଙ୍କ ମାଆଙ୍କୁ ନେଇ ଭେଟି ଦେଲା ପରେ ପ୍ରତାପଗଡ଼ ପର୍ବତର ଶିଖର ଦେଶରେ ସମାଧିସ୍ଥ କଲେ ଏବଂ ଏହାକୁ ଆଫଜଲ ବୁରଜ ବା ଆଫଜଲ ଖାଁଙ୍କର ଗମ୍ବୁଜ କୁହାଗଲା । ଏହାଦ୍ୱାରା ଶିବାଜୀଙ୍କର କ୍ଷମତା ଆହୁରି ବଢ଼ିଗଲା ଏବଂ ସେ ଦକ୍ଷିଣ କୋନୁ କୋନ୍ ଅଧିକାର କରିବାକୁ ବସିଲେ ।

ଏହି ଘଟଣା ପରେ ନିଜେ ବିଜାପୁର ସୁଲତାନ ଶିବାଜୀଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ । କିନ୍ତୁ ପରିଶେଷରେ ସେ ଶିବାଜୀଙ୍କୁ ପରାସ୍ତ କରି ନ ପାରି ବିଜାପୁର ଅଧିକୃତ ଅଞ୍ଚଳ ତାଙ୍କୁ ଛାଡ଼ି ଦେଲେ । ଏହାପରେ ମୋଗଲମାନଙ୍କଠାରୁ ନିରାପଦରେ ରହିବା ପାଇଁ ଏବଂ ସେମାନଙ୍କଠାରୁ ମରହଟ୍ଟା ରାଜ୍ୟମାନ ଫେରାଇ ଆଣିବା ପାଇଁ, ଶିବାଜୀ ବିଜାପୁର ଓ ଗୋଲକୁଣ୍ଡା ସହିତ ଏକ ତ୍ରିପକ୍ଷୀୟ ସନ୍ଧି କରିବା ପାଇଁ ଇଚ୍ଛା କଲେ । ବିଜାପୁର ସୁଲତାନ ମଧ୍ୟ ଶାହାଜୀଙ୍କୁ ମୁକ୍ତ କରି ଦେଲେ ।

**ଶାୟସ୍ତା ଖାଁଙ୍କ ପରାଜୟ :**

ପରେ ପରେ ଶିବାଜୀ ମୋଗଲ ସାମ୍ରାଜ୍ୟ ଆକ୍ରମଣ କରିବା ପାଇଁ ସ୍ଥିର କଲେ । ଏତିକବେଳକୁ ଆଉରଙ୍ଗଜେବ ତାଙ୍କର ଭାଇମାନଙ୍କୁ ପରାସ୍ତ କରି ନିଜେ ମୋଗଲ ସମ୍ରାଟ ହୋଇ ସାରିଥିଲେ । ଇତିମଧ୍ୟରେ ଶିବାଜୀ ଆଉରଙ୍ଗାବାଦଠାରେ ମୋଗଲମାନଙ୍କୁ ପରାସ୍ତ କରି, ମୋଗଲ ରାଜ୍ୟମାନଙ୍କରୁ ଖଜଣା ଆଦାୟ କରିବାକୁ ଲାଗିଲେ । ଆଉରଙ୍ଗଜେବ ଏହି ଖବର ପାଇ ୧୬୬୦ ଖ୍ରୀ: ଅ:ରେ ଶିବାଜୀଙ୍କୁ ଦମନ କରିବା ପାଇଁ, ନିଜର ମାଉଳ ଶାୟସ୍ତା ଖାଁଙ୍କୁ ଦାକ୍ଷିଣାତ୍ୟରେ ଥିବା ମୋଗଲ ସାମ୍ରାଜ୍ୟର ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ ଏବଂ ବିଜାପୁର ସୁଲତାନଙ୍କଠାରୁ ଶିବାଜୀ ଯେଉଁସବୁ ରାଜ୍ୟ ପାଇଥିଲେ, ତାହାକୁ ଅଧିକାର କରିବା ପାଇଁ ତାଙ୍କ ନିକଟକୁ ନିର୍ଦ୍ଦେଶ ପଠାଇଲେ । ଶାୟସ୍ତା ଖାଁ, ଯୋଧପୁରର ମହାରାଜା ଯଶୋବନ୍ତ ସିଂହଙ୍କ ସହ ଅହମ୍ମଦନଗର ଆଡ଼କୁ ଅଗ୍ରସର ହେଲେ ଏବଂ ସୁପା ଓ ପରେ ପୁନା ଅଧିକାର କଲେ । ଏହାପରେ ସେ ଚକନ୍ ଆକ୍ରମଣ କରି ଅଧିକାର କଲେ । ଦୁଇ ବର୍ଷ କାଳ ମରହଟ୍ଟାମାନଙ୍କ ସହିତ ଦୁର୍ଦ୍ଧର୍ଷ ଭାବରେ ଯୁଦ୍ଧ ଚଳାଇ ଉତ୍ତର କୋନ୍-କୋନ୍ ଓ କଲ୍ୟାନ୍ ଜୟ କଲେ । କିନ୍ତୁ ଦକ୍ଷିଣ କୋନ୍ କୋନ୍ ଶିବାଜୀଙ୍କର ଅଧୀନରେ ରହିଲା । ବର୍ଷା ଋତୁ ଆସିଯିବାରୁ ଶାୟସ୍ତା ଖାଁ ପୁନା ଦୁର୍ଗରେ ସୈନ୍ୟବାହିନୀ ସହିତ ଅବସ୍ଥାନ କଲେ । ସେ ଶିବାଜୀଙ୍କର ଯୁଦ୍ଧକୌଶଳ ଏବଂ ବୁଦ୍ଧିମତ୍ତାର ପରିଚୟ ଇତିମଧ୍ୟରେ ପାଇ ସାଇଥିବାରୁ, ପୁନା ସହରକୁ ଜଗିବା ପାଇଁ ସହର ଚାରିପଟେ ସୈନ୍ୟ ମୁତୟନ କଲେ । ଏହାଛଡ଼ା ଅନୁଜ୍ଞାପତ୍ର ବିନା କୌଣସି ସାମରିକ ବା ବେସାମରିକ ବ୍ୟକ୍ତି ପୁନା ସହର ଛାଡ଼ିଯାଇ ପାରିବେ ନାହିଁ ବା ପୁନା ସହର ଭିତରକୁ ଆସି ପାରିବେ ନାହିଁ ବୋଲି ବ୍ୟବସ୍ଥା କରାଯାଇଥିଲା । ଶିବାଜୀ ଶାୟସ୍ତା ଖାଁଙ୍କୁ ପରାସ୍ତ କରିବା ପାଇଁ ଏକ ନୂତନ କୌଶଳ ଉଦ୍ଭାବନ କଲେ । ୧୬୬୩ ଖ୍ରୀ: ଅ. ରେ ରମଜାନ ଦିନ ରାତିରେ ଶିବାଜୀ ଦୁଇ ଶହ ବଛା ବଛା ମରହଟ୍ଟା ଯୋଦ୍ଧାଙ୍କୁ ଗୋଟିଏ ବରଯାତ୍ରୀ ଦଳ ଭାବରେ ସଜାଇ ପୁନା ଆଡ଼କୁ ଅଗ୍ରସର ହେଲେ । ଏହା ପୂର୍ବରୁ ସେ ଶାୟସ୍ତା ଖାଁଙ୍କର କଟୁଆଳଠାରୁ ପୁନା ଭିତରକୁ ଆସିବା ପାଇଁ ଅନୁମତିପତ୍ର ଆଣିଥିଲେ ।

ଏହି ବରଯାତ୍ରୀ ଦଳରେ ଗୋଟିଏ ବାଳକ ବର ବେଶରେ ଶୋଭାଯାତ୍ରାର ଆଗରେ ଯାଉଥାଏ ଏବଂ ଛଦ୍ମ ବେଶରେ ଶିବାଜୀ ଓ ମରହଟ୍ଟା ସୈନ୍ୟମାନେ ବିଭିନ୍ନ ବାଦ୍ୟ ଓ ସହନାଇ ବଜାଇ ଯାଉଥା'ନ୍ତି । ଏହାବ୍ୟତୀତ ଶିବାଜୀ ପୁନାଠାରୁ କିଛି ଦୂରରେ ପ୍ରାୟ ଏକ ହଜାର ମରହଟ୍ଟା ସୈନ୍ୟଙ୍କୁ ପୂର୍ବରୁ ପ୍ରସ୍ତୁତ କରାଇ ରଖିଥିଲେ । ପୁନା ଦୁର୍ଗରେ ଶିବାଜୀ ବାଲ୍ୟଜୀବନ କଟାଇଥିବାରୁ, ସେ ସେହି ଦୁର୍ଗ ସହିତ ଖୁବ୍ ନିବିଡ଼ ଭାବରେ ପରିଚିତ ଥିଲେ । ଏଣୁ ସେ ଅର୍ଦ୍ଧରାତ୍ରିରେ ଦୁର୍ଗ କାନ୍ଥରେ ଅନ୍ତଃପୁରକୁ ବାଟ ଫିଟାଇ, ସେହି ବାଟେ ଦୁଇ ଶହ ମରହଟ୍ଟା ସୈନ୍ୟସହ ଲୁକ୍‌କାୟିତ ଭାବେ ଦୁର୍ଗ ମଧ୍ୟରେ ପ୍ରବେଶ କରି, ଶାୟସ୍ତା ଖାଁଙ୍କୁ ପ୍ରଗାଢ଼ ନିଦ୍ରାରେ ଶୋଇଥିବା ଅବସ୍ଥାରେ ତାଙ୍କ ଶୟନ କକ୍ଷ ମଧ୍ୟରେ

ଆକ୍ରମଣ କଲେ । ଶିବାଜୀଙ୍କ ଆକ୍ରମଣକୁ ପ୍ରତିହତ କରିବା ପୂର୍ବରୁ ଶାୟସ୍ତା ଖାଁ ନିଜେ ଆହତ ହେଲେ ଏବଂ ଝରକା ବାଟ ଦେଇ ପଳାଇ ଯିବାକୁ ଉଦ୍ୟମ କରିବା ସମୟରେ ଶିବାଜୀଙ୍କର ଅସ୍ତ୍ରାଘାତରେ ନିଜର ବୃଦ୍ଧାଙ୍ଗୁଷ୍ଠି ହରାଇ କୌଣସି ପ୍ରକାରେ ଆତ୍ମରକ୍ଷା କଲେ । ମରହଟ୍ଟା ସୈନ୍ୟମାନେ ମୋଗଲ ସୈନ୍ୟମାନଙ୍କୁ ଏବଂ ଶାୟସ୍ତା ଖାଁଙ୍କର ଅନ୍ୟାନ୍ୟ ଦାସଦାସୀ ଓ ଦେହରକ୍ଷୀମାନଙ୍କୁ ଜାଗ୍ରତ ବା ଶୟନାବସ୍ଥାରେ ହତ୍ୟା କଲେ । ଶାୟସ୍ତା ଖାଁଙ୍କର ପୁତ୍ର ଅବଦୁଲ ଫାତାହ (Abdul Fatah) ଏହା ଦେଖି ଶିବାଜୀଙ୍କୁ ଆକ୍ରମଣ କଲେ; କିନ୍ତୁ ସେ ଏକାକୀ ମରହଟ୍ଟାମାନଙ୍କ ସହିତ ଲଢ଼ି ନ ପାରି ନିହତ ହେଲେ । ସେହି ରାତିରେ ମୋଗଲମାନେ ନିଜକୁ ମରହଟ୍ଟାମାନଙ୍କ ବିରୁଦ୍ଧରେ ପ୍ରସ୍ତୁତ କରିବା ପୂର୍ବରୁ ଶିବାଜୀ ଦ୍ରୁତବେଗରେ ପୁନାରୁ ପଳାଇ ଯାଇ, ଅପେକ୍ଷା କରି ରହିଥିବା ମରହଟ୍ଟା ସୈନ୍ୟମାନଙ୍କ ସହିତ ଯୋଗ ଦେଲେ ଏବଂ ନିଜ ଗଡ଼ ଆଡ଼କୁ ଅଗ୍ରସର ହେଲେ । ମୋଗଲମାନେ ସେମାନଙ୍କୁ ସେହି ରାତିରେ ଅନୁଧାବନ କରି ମଧ୍ୟ ଶିବାଜୀଙ୍କର କୌଣସି କ୍ଷତି କରି ପାରି ନ ଥିଲେ ।

ତହିଁ ଆରଦିନ ରାଜା ଯଶୋବନ୍ତ ସିଂ ଯେତେବେଳେ ଶାୟସ୍ତା ଖାଁଙ୍କ ନିକଟକୁ ଗତ ରାତିର ଘଟଣା ବିଷୟରେ ଆଲୋଚନା କରିବାକୁ ଆସିଲେ, ସେତେବେଳେ ଶାୟସ୍ତା ଖାଁ ତାଙ୍କୁ ତିରସ୍କାର କରି କହିଥିଲେ, "ମୁଁ ଭାବିଥିଲି, ମହାରାଜା ଗତ ରାତିରେ ମୋ ପାଇଁ ଯୁଦ୍ଧ କରି ମୃତ୍ୟୁବରଣ କରିଛନ୍ତି ।" କାଫି ଖାଁଙ୍କ ଲେଖାରୁ ଜଣାଯାଏ ଯେ ଯେତେବେଳେ ଯଶୋବନ୍ତ ସିଂ ଗତ ରାତିର ଦୁର୍ଘଟଣା ପାଇଁ ଶୋକ ପ୍ରକାଶ କରି ସାନ୍ତ୍ୱନା ଦେବା ପାଇଁ ଶାୟସ୍ତା ଖାଁଙ୍କ ନିକଟକୁ ଆସିଥିଲେ, ସେତେବେଳେ ସେ କହିଲେ—"ମୁଁ ଭାବୁଛି, ମହାରାଜା ମହାମାନ୍ୟ ମୋଗଲ ସମ୍ରାଟଙ୍କ ଚାକିରିରେ ଥିବା ଯୋଗୁ, ମୋ ଉପରେ ଏହି ବିପତ୍ତି ପଡ଼ିଲା ।" ଅର୍ଥାତ୍ ଶାୟସ୍ତା ଖାଁ ତାଙ୍କୁ ସନ୍ଦେହ କରି ଏ ପ୍ରକାର ମନ୍ତବ୍ୟ ଦେବାରୁ ଯଶୋବନ୍ତ ସିଂ ଅତିଶୟ ବିବ୍ରତ ହୋଇ ପଡ଼ିଲେ । ଆଉରଙ୍ଗଜେବଙ୍କ ନିକଟକୁ ଶାୟସ୍ତା ଖାଁ, ରାଜା ଯଶୋବନ୍ତ ସିଂହଙ୍କର ଚରିତ୍ର ବିଷୟରେ ଏବଂ ସମସ୍ତ ହିନ୍ଦୁ କର୍ମଚାରୀମାନଙ୍କର ଶିବାଜୀଙ୍କ ସହିତ ସମ୍ପର୍କ ଅଛି ବୋଲି ସନ୍ଦେହ କରି ଲେଖି ପଠାଇଲେ । ଏହାପରେ ରାଜା ଯଶୋବନ୍ତ ସିଂଙ୍କୁ ଚକନ୍ ଓ ଜୁନ୍ନାର ଦୁର୍ଗର ଦାୟିତ୍ୱରେ ରଖି, ଶାୟସ୍ତା ଖାଁ ଅପମାନରେ ଜର୍ଜରିତ ହୋଇ ଅହମ୍ମଦାବାଦକୁ ଫେରି-ଗଲେ । ଆଉରଙ୍ଗଜେବ ଏହି ଦୁଃସମ୍ବାଦ ପାଇ ଯଶୋବନ୍ତ ସିଂ ଓ ଶାୟସ୍ତା ଖାଁଙ୍କୁ ଦଣ୍ଡ ବିଧାନ କଲେ । ପରେ ସେ ୧୬୬୩ ଖ୍ରୀ: ଅ: ରେ ଶାୟସ୍ତା ଖାଁଙ୍କୁ ଦାକ୍ଷିଣାତ୍ୟରୁ ବଙ୍ଗଳାକୁ ଶାସନକର୍ତ୍ତା ରୂପେ ପଠାଇଲେ ।

**ସୁରଟ ଓ ଅହମ୍ମଦନଗର ଲୁଣ୍ଠନ :**

ଏହିସବୁ ଘଟଣା ପରେ ଶିବାଜୀଙ୍କର ଖ୍ୟାତି ଚାରିଆଡ଼େ ବିଜୁଳି ବେଗରେ ବ୍ୟାପି-

ଗଲା ଏବଂ ତାଙ୍କର ସାହସ ଉତ୍ତରୋତ୍ତର ବୃଦ୍ଧି ପାଉଥିଲା । ୧୬୬୪ ଖ୍ରୀ: ଅ: ରେ ସେ ପଶ୍ଚିମ ଉପକୂଳର ବିଖ୍ୟାତ ବନ୍ଦର ଓ ବାଣିଜ୍ୟ କେନ୍ଦ୍ର ସୁରାଟ ଓ ଅହମ୍ମଦନଗର ଆକ୍ରମଣ କରି ଲୁଣ୍ଠନ କଲେ । ସେ ସୁରାଟର ଶାସକ ଏବଂ ଧନୀକ ମୁସଲମାନ ବଣିକମାନଙ୍କୁ ସେମାନଙ୍କର ଧନ ସମ୍ପଦ ସବୁ ଅର୍ପଣ କରିଦେବା ପାଇଁ ଆଦେଶ ଦେଲେ; ନଚେତ୍ ସେ ତାହା ସବୁ ପୋଡ଼ି ଧ୍ୱଂସ କରି ଦେବେ ବୋଲି ଜଣାଇ ଦେଲେ । ସେମାନଙ୍କଠାରୁ କୌଣସି ଉତ୍ତର ନ ପାଇବାରୁ ସେ ସୁରାଟ ବନ୍ଦର ଲୁଣ୍ଠନ କଲେ ଏବଂ ପ୍ରାୟ ଏକ କୋଟି ଟଙ୍କାର ଧନ ସମ୍ପଦ ଅପହରଣ କଲେ । ଏହି ଲୁଣ୍ଠନ ବେଳେ ଇଂରେଜମାନେ ତାଙ୍କୁ ବାଧା ଦେଇଥିଲେ ମଧ୍ୟ ଶିବାଜୀ ଖୁବ୍ ସହଜରେ ତାଙ୍କର ଉଦ୍ଦେଶ୍ୟ ସାଧନ କରିପାରିଥିଲେ । ସୁରାଟ ଲୁଣ୍ଠନରୁ ଫେରିବା ପରେ ସେ ତାଙ୍କ ପିତା ଶାହାଜୀଙ୍କର ମୃତ୍ୟୁ ସମ୍ବାଦ ଶୁଣିବାକୁ ପାଇଲେ ।

ଶାହାଜୀଙ୍କର ମୃତ୍ୟୁ ପରେ ଶିବାଜୀ ବଂଶପରମ୍ପରା କ୍ରମେ ରାଜା ଉପାଧି ଗ୍ରହଣ କଲେ । ସେ ରାୟଗଡ଼ଠାରେ ଗୋଟିଏ ମୁଦ୍ରା ଛପାକଲ ସ୍ଥାପନ କରି, ନିଜ ନାମାଙ୍କିତ ସୁନା ଓ ରୂପାର ମୁଦ୍ରା ପ୍ରଚଳନ କରାଇ, ନିଜକୁ ବିଜାପୁର ସୁଲତାନଙ୍କଠାରୁ ସ୍ୱାଧୀନ ବୋଲି ଘୋଷଣା କଲେ । ସେ ମଧ୍ୟ ଜଳଜାହାଜ ସାହାଯ୍ୟରେ ଅନ୍ୟାନ୍ୟ ମୋଗଲ ବନ୍ଦରମାନ ଲୁଣ୍ଠନ କଲେ । ଏଣୁ ବିଜାପୁର ସୁଲତାନ ଏବଂ ମୋଗଲମାନଙ୍କର ସେ ପରମ ଶତ୍ରୁ ହୋଇ ପଡ଼ିଲେ । ବିଜାପୁର ସୁଲତାନ ଶିବାଜୀଙ୍କ ରାଜ୍ୟ କୋଙ୍କୋନ୍ ଆକ୍ରମଣ କରି ପରାସ୍ତ ହୋଇଥିଲେ ଏବଂ ସେ ମୋଗଲମାନଙ୍କର ମରହଟ୍ଟାମାନଙ୍କ ଉପରେ ଆକ୍ରମଣକୁ ଅପେକ୍ଷା କରି ରହିଲେ ।

## ମୁଅଜାମ, ଜୟସିଂହ ଓ ଶିବାଜୀ :

ଶାୟସ୍ତା ଖାଙ୍କ ପରେ ଆଉରଙ୍ଗଜେବ ରାଜପୁତ୍ର ମୁଆଜାମଙ୍କୁ ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ନିଯୁକ୍ତ କଲେ ଏବଂ ଶିବାଜୀଙ୍କୁ ଦମନ କରିବା ପାଇଁ ଉପାୟମାନ ଚଳାଇଲେ । ଶେଷରେ ସେ ଜୟପୁରର ରାଜା ଜୟସିଂହଙ୍କୁ ୧୬୬୫ ଖ୍ରୀ: ଅ: ରେ ଶିବାଜୀଙ୍କ ବିରୁଦ୍ଧରେ ଦାକ୍ଷିଣାତ୍ୟକୁ ପଠାଇଲେ । ଜୟସିଂହ ନିଜର ସାହସ, ବୀରତ୍ୱ ଓ ବୁଦ୍ଧି ପାଇଁ ପ୍ରସିଦ୍ଧ ଥିଲେ ଏବଂ ମୋଗଲ ଦରବାରରେ ଉଚ୍ଚାସନ ଲାଭ କରିଥିଲେ । ପାର୍ଶୀ, ତୁର୍କୀ, ସଂସ୍କୃତ ଓ ଉର୍ଦ୍ଦୁ ଭାଷାରେ ସେ ଖୁବ୍ ଦକ୍ଷତା ହାସଲ କରିଥିଲେ । ଏହାଛଡ଼ା ସେ ଜଣେ ସୁଦକ୍ଷ କୂଟନୀତିଜ୍ଞ ଥିଲେ ଏବଂ ଗୋଳମାଳିଆ ରାଜନୈତିକ ପରିସ୍ଥିତିକୁ ସେ ସହଜରେ ମୁକାବିଲା କରି ପାରୁଥିଲେ । ଆଉରଙ୍ଗଜେବ ଦଲିର ଖାଁ (Delier Khan)ଙ୍କୁ ଶିବାଜୀଙ୍କ ବିରୁଦ୍ଧରେ ଜୟସିଂହଙ୍କ ସହିତ ଯୋଗଦେବା ପାଇଁ ମଧ୍ୟ ଦାକ୍ଷିଣାତ୍ୟକୁ ପଠାଇଲେ ।

## ପୁରନ୍ଦର ସନ୍ଧି :

ଜୟସିଂହ ଏକ ନୂତନ ଦାୟିତ୍ୱ ବହନ କରି ମରହଟ୍ଟାମାନଙ୍କ ବିରୁଦ୍ଧରେ ଦାକ୍ଷିଣାତ୍ୟକୁ ଅଗ୍ରସର ହେଲେ ଏବଂ ବିଜାପୁର ସୁଲତାନଙ୍କର ସାହାଯ୍ୟ ଗ୍ରହଣ କରି ପୁରନ୍ଦର ଦୁର୍ଗ ଅଧିକାର କଲେ । ଏପରିକି ସେ ଶିବାଜୀଙ୍କର କେନ୍ଦ୍ରସ୍ଥଳୀ ରାୟଗଡ଼ ବା ରାଜଗଡ଼ ଦୁର୍ଗ ଅଧିକାର କଲେ ଏବଂ ବହୁ ମରହଟ୍ଟା ଗ୍ରାମ ଧ୍ୱଂସ କରିଦେଲେ । ତାଙ୍କ ବିରୁଦ୍ଧରେ ଯୁଦ୍ଧ ଚଳାଇବା କଷ୍ଟକର ଜାଣି ଓ ନିଜକୁ ଅସହାୟ ମନେକରି ଶିବାଜୀ ୧୬୬୫ ଖ୍ରୀ: ଅ: ଜୁନ ମାସରେ ପୁରନ୍ଦରଠାରେ ଜୟସିଂହଙ୍କ ସହିତ ସନ୍ଧି କରିବା ପାଇଁ ବାଧ୍ୟ ହେଲେ ।

ପ୍ରଥମେ ପରସ୍ପରକୁ କେହି ବିଶ୍ୱାସ କଲେ ନାହିଁ । କିନ୍ତୁ ପରେ ଶିବାଜୀ ତାଙ୍କର ଜଣେ ବିଶ୍ୱସ୍ତ କର୍ମଚାରୀ ରଘୁନାଥ ପନ୍ଥଙ୍କୁ ଜୟସିଂହଙ୍କ ମନରେ ବିଶ୍ୱାସ ଆଣାଇବା ପାଇଁ ତାଙ୍କ ନିକଟକୁ ପଠାଇଲେ । ରଘୁନାଥଙ୍କଠାରୁ ଶିବାଜୀ ପ୍ରକୃତରେ ମୋଗଲମାନଙ୍କ ସହିତ ସନ୍ଧି କରି ବନ୍ଧୁହେବା ପାଇଁ ଇଚ୍ଛୁକ ବୋଲି ଜାଣିଲା ପରେ, ଜୟସିଂହ ମଧ୍ୟ ତୁଳସୀ ପତ୍ର ଛୁଇଁ ଶପଥ କଲେ ଯେ ଯଦି ଶିବାଜୀ ଆତ୍ମସମର୍ପଣ କରନ୍ତି, ତା'ହେଲେ ତାଙ୍କର କେଶ ସୁଦ୍ଧା କେହି ସ୍ପର୍ଶ କରି ପାରିବ ନାହିଁ । ଏ ପ୍ରକାର ପ୍ରତିଶ୍ରୁତି ପାଇଲା ପରେ ଶିବାଜୀ ଜୟସିଂହଙ୍କ ଶିବିରରେ ଆତ୍ମସମର୍ପଣ କଲେ । ଶିବାଜୀଙ୍କର ଇଚ୍ଛାଥିଲା, ଯେ ମୋଗଲ-ମାନଙ୍କର ବନ୍ଧୁତା ଲାଭ କଲା ପରେ ସେ ସେମାନଙ୍କ ସାହାଯ୍ୟରେ ବିଜାପୁର ଆକ୍ରମଣ କରି ସୁଲତାନଙ୍କୁ ଏପରି ଶିକ୍ଷା ଦେବେ ଯେ ଭବିଷ୍ୟତରେ ଆଉ ଯେପରି ସୁଲତାନ ମରହଟ୍ଟା ରାଜ୍ୟ ଆକ୍ରମଣ ନ କରନ୍ତି । ଏହାଛଡ଼ା ତାଙ୍କର କରଗତ ହୋଇଥିବା ବିଜାପୁର ରାଜ୍ୟଗୁଡ଼ିକ ଉପରେ ସେ ଯେପରି ନିରଙ୍କୁଶ ତଥା ସ୍ୱାଧୀନ ଭାବରେ ଶାସନ କରି ପାରନ୍ତି ଏହା ମଧ୍ୟ ତାଙ୍କର ଅନ୍ୟ ଉଦ୍ଦେଶ୍ୟ ଥିଲା । ଏଣୁ ଏହି ସନ୍ଧିର ସର୍ତ୍ତ ଅନୁସାରେ ଶିବାଜୀ ତାଙ୍କର ୩୨ଟା ଦୁର୍ଗ ମଧ୍ୟରୁ ୨୦ଟି ଦୁର୍ଗ ମୋଗଲ ସମ୍ରାଟଙ୍କୁ ସମର୍ପଣ କରି ନିଜେ ମୋଗଲ ସମ୍ରାଟଙ୍କ ଅଧୀନରେ କାର୍ଯ୍ୟ କରିବାକୁ ସମ୍ମତି ପ୍ରଦାନ କଲେ ଏବଂ ଅଧିକୃତ ବିଜାପୁର ରାଜ୍ୟ ଉପରେ ସ୍ୱାଧୀନ ଭାବରେ ଶାସନ କଲେ ଓ ଚୌଥ ଏବଂ ସରଦେଶମୁଖୀ କର ଆଦାୟ କଲେ । ଆଉରଙ୍ଗଜେବ ମଧ୍ୟ ଶିବାଜୀଙ୍କ ପୁତ୍ର ଶମ୍ଭୁଜୀଙ୍କୁ ପାଞ୍ଚହଜାରୀ ମାନସ-ବାଦର ପଦରେ ନିଯୁକ୍ତ କଲେ ଏବଂ ତାଙ୍କୁ ଜାଗିର ଦିଆଗଲା ।

## ଶିବାଜୀଙ୍କର ବିଜାପୁର ଆକ୍ରମଣ :

ବିଜାପୁର ସୁଲତାନ ପ୍ରଥମେ ଶିବାଜୀଙ୍କ ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ମୋଗଲ-ମାନଙ୍କୁ ସାହାଯ୍ୟ କରିଥିଲେ ସୁଦ୍ଧା ବର୍ତ୍ତମାନ ଆଉରଙ୍ଗଜେବ, ବିଜାପୁର ସୁଲତାନ ଅଲି ଆଦିଲ ସାହଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବା ପାଇଁ ଜୟସିଂହ ଓ ଦିଲିର ଖାଁଙ୍କୁ ଆଦେଶ

ଦେଲେ । ଶିବାଜୀ ଏହି ଯୁଦ୍ଧରେ ଜୟସିଂହଙ୍କ ସହିତ ୨୦୦ ଅଶ୍ୱାରୋହୀ ଏବଂ ୧୦୦ ପଦାତିକ ସୈନ୍ୟବାହିନୀ ସହ ଯୋଗ ଦେଲେ ଏବଂ ତାଙ୍କୁ ଖୁବ୍ ବୀରତ୍ୱର ସହିତ ଯୁଦ୍ଧରେ ସାହାଯ୍ୟ କରିଥିବାରୁ ଆଉରଙ୍ଗଜେବଙ୍କଠାରୁ ସେ ରାଜକୀୟ ସମ୍ମାନ ଓ ପୁରସ୍କାର ପାଇଲେ । ଆଉରଙ୍ଗଜେବ ମଧ୍ୟ ତାଙ୍କ ଉପରେ ସନ୍ତୁଷ୍ଟହୋଇ ତାଙ୍କୁ ମୋଗଲ ଦରବାରକୁ ନିମନ୍ତ୍ରଣ କଲେ ଏବଂ ସେ ଯେତେବେଳେ ଇଚ୍ଛା କରିବେ ସେତେବେଳେ ନିଜ ରାଜ୍ୟକୁ ଫେରିଯାଇ ପାରିବେ । ଶିବାଜୀ ଏହି ନିମନ୍ତ୍ରଣ ରକ୍ଷା କରିବାକୁ ପ୍ରଥମେ ନାରାଜ ଥିଲେ । କିନ୍ତୁ ଜୟସିଂହ ବହୁ କଷ୍ଟରେ ତାଙ୍କୁ ଆଗ୍ରାସ୍ଥିତ ମୋଗଲ ରାଜଦରବାରକୁ ଯିବା ପାଇଁ ପ୍ରବର୍ତ୍ତାଇ ଥିଲେ । ନିଜର ସମ୍ମାନ ଓ ଜୀବନର ନିରାପତ୍ତାର ନିର୍ଭର ପ୍ରତିଶ୍ରୁତି ଜୟସିଂହଙ୍କ ଠାରୁ ପାଇଲା ପରେ ସେ ମୋଗଲ ଦରବାରକୁ ଯିବାପାଇଁ ସମ୍ମତି ପ୍ରଦାନ କଲେ । ଏହା ବ୍ୟତୀତ ରାମଦାସ ମଧ୍ୟ ଶିବାଜୀଙ୍କୁ ଏହି ନିମନ୍ତ୍ରଣ ରକ୍ଷାକରି ଆଉରଙ୍ଗଜେବଙ୍କ ମନରୁ ସମସ୍ତ ସନ୍ଦେହ ଦୂର କରିବା ପାଇଁ ତାଙ୍କୁ ଉପଦେଶ ଦେଲେ ।

**ଆଗ୍ରାଯାତ୍ରା ଓ ନଜରବନ୍ଦୀ :**

ପରିଶେଷରେ ସେ ରାଜ୍ୟର ସମସ୍ତ ଦାୟିତ୍ୱ ନିଜ ମାଆ ଜିଜାବାଈଙ୍କ ହାତରେ ଅର୍ପଣ କରି ୧୬୬୬ ଖ୍ରୀ: ଅ: ରେ ନିଜ ପୁତ୍ର ଶମ୍ଭୁଜୀଙ୍କ ସହିତ ଆଗ୍ରାସ୍ଥିତ ମୋଗଲ ଦରବାରକୁ ଯାତ୍ରାକଲେ । ଆଗ୍ରା ନିକଟବର୍ତ୍ତୀ ହୁଅନ୍ତେ ଶିବାଜୀ ସମ୍ରାଟଙ୍କ ନିକଟକୁ ଖବର ପଠାଇବାରୁ, ତାଙ୍କପରି ଜଣେ ସମ୍ମାନୀୟ ଅତିଥିଙ୍କୁ ପାଛୋଟି ଆଣିବା ପାଇଁ ଆଉରଙ୍ଗଜେବ ଜଣେ ନିମ୍ନତମ ସାଧାରଣ କର୍ମଚାରୀଙ୍କୁ ପଠାଇଲେ । ତିନି ଦିନ ପରେ ମୋଗଲ ଦରବାରର ସାଧାରଣ ଗୃହରେ ସମ୍ରାଟଙ୍କ ସହିତ ସାକ୍ଷାତ ପାଇଁ ତାଙ୍କୁ ଅନୁମତି ମିଳିଲା । ମୋଗଲସମ୍ରାଟ, ତାଙ୍କ ରାଜଦରବାର ଓ ସମ୍ରାଟଙ୍କର ଶକ୍ତି ସାମର୍ଥ୍ୟ ପ୍ରଭୃତି ସ୍ୱଚକ୍ଷୁରେ ଦେଖିବା ପାଇଁ ଶିବାଜୀଙ୍କର ମଧ୍ୟ ଉଦ୍ଦେଶ୍ୟ ଥିଲା; କିନ୍ତୁ ରାଜଦରବାରରେ ତାଙ୍କୁ ଯଥାଯୋଗ୍ୟ ସମ୍ମାନ ନ ମିଳିବାରୁ ଶିବାଜୀ କ୍ରୁଦ୍ଧ ହୋଇ ହତଜ୍ଞାନ ହୋଇ ପଡ଼ିଲେ ଏବଂ କହିଲେ ଯେ ଏ ଅପମାନଠାରୁ ମୃତ୍ୟୁହିଁ ଶ୍ରେୟସ୍କର । କିଛି ସମୟପରେ ଜ୍ଞାନ ଲାଭକରି ସେ ସ୍ୱଦେଶକୁ ଫେରିଯିବାକୁ ଅନୁମତି ମାଗିଲେ । କିନ୍ତୁ ଆଉରଙ୍ଗଜେବ ତାଙ୍କ ଅନୁଚରମାନଙ୍କୁ ବିଦାୟଦେଇ ତାଙ୍କୁ ଏବଂ ଶମ୍ଭୁଜୀଙ୍କୁ ବନ୍ଦୀକଲେ । ସେମାନଙ୍କୁ ନଜରବନ୍ଦୀ ରୂପେ ଦିନ ଅତିବାହିତ କରିବାକୁ ପଡ଼ିଲା । ଏହି ବିଶ୍ୱାସଘାତକତା ପାଇଁ ସେ ସମ୍ରାଟଙ୍କୁ ଦାୟୀ କରିଥିଲେ । ମୋଗଲମାନଙ୍କର କଡ଼ା ନଜରବନ୍ଦୀରେ ରହି ସେ ନିଜର ସାହସ ଓ ଧୈର୍ଯ୍ୟ ହରାଇଲେ ନାହିଁ ଏବଂ ସେ କିପରି ଭାବରେ ସେଠାରୁ ମୁକ୍ତି ପାଇବେ ତାହାର ଉପାୟ ଚିନ୍ତାକଲେ ।

**ନଜରବନ୍ଦୀରୁ ମୁକ୍ତି :**

ସେ କଠିନ ରୋଗାକ୍ରାନ୍ତ ଥିବାର ଛଳନା କରି ପ୍ରତିଦିନ ବ୍ରାହ୍ମଣ, ସାଧୁ ଓ ବଣିଷ୍ଟ ଲୋକମାନଙ୍କ ପାଇଁ ବନ୍ଦୀଶାଳାରୁ ବଡ଼ ବଡ଼ ଟୋକେଇରେ ମିଷ୍ଟାନ୍ନ ପଠାଇବାକୁ

ଲଗିଲେ । ପ୍ରଥମେ ପ୍ରଥମେ ପ୍ରହରୀମାନେ ଏହି ମିଷ୍ଟାନ୍ନ ଟୋକେଇ ସବୁ ଖୋଲି ଦେଖୁଥିଲେ । କିନ୍ତୁ ପ୍ରତ୍ୟେକ ଦିନ ଏହି ମିଷ୍ଟାନ୍ନ ବାହାରକୁ ଯାଉଥିବାର ଦେଖି ଦେଖି ସେମାନେ ଆଉ ସନ୍ଦେହ କଲେ ନାହିଁ ଏବଂ ଆଉ ଟୋକେଇ ମଧ୍ୟ ଯାଞ୍ଚ କଲେ ନାହିଁ । ଶେଷରେ ଦିନେ ସେ ନିଜେ ଓ ଶମ୍ଭୂଜୀ ଉଭୟେ ଦୁଇଟି ମିଷ୍ଟାନ୍ନ ଟୋକେଇ ମଧ୍ୟରେ ପ୍ରବେଶ କରି ଏବଂ ମିଷ୍ଟାନ୍ନ ଦ୍ୱାରା ଆଚ୍ଛାଦିତ ହୋଇ ପ୍ରହରୀମାନଙ୍କର ଆଖିରେ ଧୂଳି ଦେଇ ବନ୍ଦୀଶାଳାରୁ ମଥୁରାକୁ ନିର୍ବିଘ୍ନରେ ଚାଲିଗଲେ । ମଥୁରାରେ ପହଞ୍ଚି ପିତା ଓ ପୁତ୍ର ସନ୍ନ୍ୟାସୀ ବେଶରେ ସ୍ୱଦେଶକୁ ଯିବାପାଇଁ ଯୋଜନାକଲେ । ସେଠାରେ ସେ ଜଣେ ମରହଟ୍ଟା ବ୍ରାହ୍ମଣ କ୍ରିଷ୍ଣାଜୀ ବିଶ୍ୱନାଥଙ୍କର ମାଆଙ୍କ ତତ୍ତ୍ୱାବଧାନରେ ଶମ୍ଭୂଜୀଙ୍କୁ ରଖାଇ ଦେଇ ତାଙ୍କର ଏହି ପଳାୟନ ସମ୍ବାଦ ଗୁପ୍ତ ରଖିବା ପାଇଁ ତାଙ୍କୁ ଅନୁରୋଧ କଲେ । ସେ ଏହି ସନ୍ନ୍ୟାସୀ ବେଶ ଧାରଣ କରି କ୍ରିଷ୍ଣାଜୀ ବିଶ୍ୱନାଥଙ୍କ ସାହାଯ୍ୟରେ ମଥୁରାରୁ ଏଲାହାବାଦ, ବାରାଣସୀ, ଗୟା ଏବଂ ଗୋଲକୁଣ୍ଡା ଓ ବିଜାପୁର ଦେଇ ଦୀର୍ଘ ୨୫ ଦିନ କାଳ ଅବିଶ୍ରାନ୍ତ ଭାବରେ ଯାତ୍ରାକରି ଶେଷରେ ନିଜ ରାଜ୍ୟ ରାୟଗଡ଼ଠାରେ ପହଞ୍ଚିଲେ । ଏହାପରେ କ୍ରିଷ୍ଣାଜୀ ବିଶ୍ୱନାଥ ପୁଣି ମଥୁରାକୁ ଫେରିଯାଇ ଶମ୍ଭୂଜୀଙ୍କୁ ସାଥୀରେ ଧରି ପୁନାକୁ ଆଣିବାକୁ ଗଲେ । କିନ୍ତୁ ରାସ୍ତାରେ ବହୁ ଦୁର୍ଘଟଣାର ସମ୍ମୁଖୀନ ହୋଇ ଶେଷରେ ସେ ନିରାପଦରେ ଶମ୍ଭୂଜୀଙ୍କ ସହିତ ମଥୁରାରୁ ପୁନାକୁ ଫେରିଆସିଲେ । ଏହି ଘଟଣାର ପ୍ରତିଶୋଧ ନେବା ପାଇଁ ସେ ମୋଗଲମାନଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କଲେ ଏବଂ ନିକଟରେ ମୋଗଲମାନଙ୍କୁ ସମର୍ପଣ କରିଥିବା କୋଙ୍କୋନ୍ ରାଜ୍ୟ ପୁନର୍ବାର ସେମାନଙ୍କଠାରୁ ଛଡ଼ାଇ ଆଣିଲେ । ଆଉରଙ୍ଗଜେବ ଏହି ଘଟଣା ଜାଣିପାରି ଘୋର ଚିନ୍ତାରେ ପଡ଼ିଲେ ଏବଂ ରାଜା ଜୟସିଂହ ମଧ୍ୟ ଅତିଶୟ ବିଚଳିତ ହୋଇ ପଡ଼ିଲେ । ଆଉରଙ୍ଗଜେବ କିନ୍ତୁ ଏହି ଘଟଣା ପାଇଁ ଜୟସିଂହଙ୍କୁ ସନ୍ଦେହ କଲେ ଏବଂ ତାଙ୍କୁ ଦାକ୍ଷିଣାତ୍ୟରୁ ଡକାଇ ପଠାଇଲେ । ଜୟସିଂହ ବାଟରେ ଫେରୁ ଫେରୁ ୧୬୬୭ ଖ୍ରୀ: ଅ:ର ଜୁଲାଇ ମାସରେ ମୃତ୍ୟୁବରଣ କଲେ । ଏହାପରେ ପୁଣି ସେ ରାଜା ଯଶୋବନ୍ତ ସିଂହଙ୍କୁ ଶିବାଜୀଙ୍କ ବିରୁଦ୍ଧରେ ଦାକ୍ଷିଣାତ୍ୟକୁ ପଠାଇଲେ ଏବଂ ରାଜପୁତ୍ର ମୁଆଜାମଙ୍କୁ ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ପୁଣି ପୁନଃନିଯୁକ୍ତ କଲେ ।

### ମୋଗଲମାନଙ୍କ ସହିତ ସନ୍ଧି :

ରାଜପୁତ୍ର ମୁଆଜାମ ବିଶେଷ ଯୋଦ୍ଧା ବା ଯୁଦ୍ଧପ୍ରିୟ ନ ଥିଲେ । ରାଜା ଯଶୋବନ୍ତ ସିଂହ ମଧ୍ୟ ମୋଗଲ ଦରବାରରେ ଶିବାଜୀଙ୍କର ସଂସ୍ପର୍ଶରେ ଆସି ତାଙ୍କୁ ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ମୁଆଜାମ ଓ ଯଶୋବନ୍ତ ସିଂହ ଦୁହେଁ ଶିବାଜୀଙ୍କ ପ୍ରତି ବନ୍ଧୁଭାବ ଧାରଣ କଲେ । ଏଣୁ ଶିବାଜୀ ମଧ୍ୟ ଶାନ୍ତି ପାଇଁ ଆଗ୍ରହ ପ୍ରକାଶ କରି କହିଲେ ଯେ ଯଦି ମୋଗଲମାନେ ତାଙ୍କର ଆଗରୁ ଅଧିକୃତ ଅଞ୍ଚଳ ଓ ବିଜାପୁର ବିରୁଦ୍ଧରେ ମରହଟ୍ଟାମାନଙ୍କୁ ସ୍ୱାଧୀନ ଭାବରେ ସୁଲତାନଙ୍କ ସହିତ ମୁକାବିଲା ପାଇଁ ଛାଡ଼ି ଦେବେ, ତାହାହେଲେ ସେ ମୋଗଲମାନଙ୍କ ସହିତ ଶାନ୍ତି ସ୍ଥାପନ କରିବେ । ଶେଷରେ ୧୬୬୮ ଖ୍ରୀ: ଅ:ରେ ମୋଗଲ

ଓ ଶିବାଜୀଙ୍କ ମଧ୍ୟରେ ଶାନ୍ତି ସ୍ଥାପନ ହେବାରୁ ଶିବାଜୀ ମୋଗଲମାନଙ୍କଠାରୁ ସନ୍ଦ୍ଭଗାଦ, ପୁରନ୍ଦର ଦୁର୍ଗ ଛଡ଼ା ପୁନା, ଚୋକନ୍, ସୁପା ଓ ପଡ଼ୋଶୀ ଦୁର୍ଗମାନ ପାଇଲେ । ଅହମ୍ମଦନଗର ପରବର୍ତ୍ତୀ ଶିବାଜୀ ମୋଗଲମାନଙ୍କଠାରୁ ବେରାର ଓ ନିକଟରେ ଅଧିକାର କରିଥିବା କୋଙ୍କୋନ୍ ରାଜ୍ୟ ମଧ୍ୟ ପାଇଲେ । ଏହା ବଦଳରେ ଶିବାଜୀ ମୋଗଲମାନଙ୍କୁ ବିଜାପୁର ବିରୁଦ୍ଧରେ ଯୁଦ୍ଧ କରିବା ପାଇଁ ସାହାଯ୍ୟ କରିବେ ବୋଲି ଚୁକ୍ତିବଦ୍ଧ ହେଲେ । ଏହି ସନ୍ଧିର ସର୍ତ୍ତ ଅନୁସାରେ ଶିବାଜୀ ରାଜପୁତ୍ର ମୁଆଜାମଙ୍କ ସହିତ ବିଜାପୁର ଆକ୍ରମଣ କଲେ । ସୁଲତାନ ଏହି ମିଳିତ ଆକ୍ରମଣକୁ ପ୍ରତିରୋଧ କରି ନ ପାରି ବାଧ୍ୟ ହୋଇ ସନ୍ଧି କଲେ । ଏହି ସନ୍ଧି ଅନୁସାରେ ସେ ମୋଗଲମାନଙ୍କୁ ସୋଲାପୁର ଦୁର୍ଗ ଛାଡ଼ିଦେଲେ ଏବଂ ମରହଟ୍ଟାମାନଙ୍କୁ ସେମାନଙ୍କର ବିଜାପୁର ରାଜ୍ୟର ଅଧିକୃତ ଅଞ୍ଚଳ ଉପରୁ ସରଦେଶ-ମୁଖୀ ଓ ଚୌଥ କର ଆଦାୟ କରିବାକୁ ଅନୁମତି ଦେଲେ ।

୧୬୬୭ ଖ୍ରୀ: ଅ:ରୁ ୧୬୬୯ ଖ୍ରୀ: ଅ: ପର୍ଯ୍ୟନ୍ତ ସେ ମୋଗଲମାନଙ୍କ ସହିତ ଯୁଦ୍ଧ ନ କରି ନିଜ ରାଜ୍ୟ ସଂଗଠନ କରିବାକୁ ଲାଗିଲେ । ଆଗ୍ରାରେ ବନ୍ଦୀଥିବା ଅବସ୍ଥାରେ ତାଙ୍କ ରାଜ୍ୟରେ ବିଶୃଙ୍ଖଳା ଘଟି ନ ଥିଲା । ତାଙ୍କର ମନ୍ତ୍ରୀମାନେ ଖୁବ୍ ଦକ୍ଷତାର ସହିତ ତାଙ୍କ ଅନୁପସ୍ଥିତିରେ ରାଜ୍ୟ ଶାସନ କରୁଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ପୁଣି ମୋଗଲମାନଙ୍କ ବିରୁଦ୍ଧରେ ଶିବାଜୀ ଯୁଦ୍ଧ ଘୋଷଣା କରିବାକୁ ବାଧ୍ୟ ହୋଇଥିଲେ । ଏହାର ପ୍ରଧାନ କାରଣ ହେଲା ଆଉରଙ୍ଗଜେବଙ୍କର ତାଙ୍କ ପ୍ରତି ବିଶ୍ୱାସଘାତକତା । ପୂର୍ବ ସନ୍ଧି ଅନୁସାରେ ରାଜପୁତ୍ର ମୁଆଜାମ ଓ ଶିବାଜୀ ପରସ୍ପର ଦୃଢ଼ ବନ୍ଧୁତା ସୂତ୍ରରେ ଆବଦ୍ଧ ହୋଇ ସରଳ ବିଶ୍ୱାସରେ ଦିନ କାଟିବାକୁ ଲାଗିଲେ । କିନ୍ତୁ ଈର୍ଷାପରାୟଣ ସମ୍ରାଟ ଆଉରଙ୍ଗଜେବ ତାହା ସହ୍ୟ କରି ନ ପାରି ସେମାନଙ୍କର ବନ୍ଧୁତା ଆଚରଣକୁ ସନ୍ଦେହ ଚକ୍ଷୁରେ ଦେଖିବାକୁ ଲାଗିଲେ । ସେ ଭାବିଲେ ଯେ ତାଙ୍କୁ ସମ୍ପୂର୍ଣ୍ଣ ରୂପେ ପରାଭୂତ ବା ବିତାଡ଼ିତ କରିବା ପାଇଁ ସେମାନେ ତାଙ୍କ ବିରୁଦ୍ଧରେ କୌଣସି ଏକ ଷଡ଼ଯନ୍ତ୍ର କରୁଛନ୍ତି । ଏହି ସମୟରେ ଉତ୍ତର-ପଶ୍ଚିମ ସୀମାନ୍ତରେ ଆଫଗାନମାନଙ୍କର ବିଦ୍ରୋହ ଯୋଗୁ ମୋଗଲମାନେ ଶିବାଜୀଙ୍କ ପ୍ରତି କୌଣସି ଦୃଷ୍ଟି ଦେଇପାରି ନ ଥିଲେ । ରାଜା ଯଶୋବନ୍ତ ସିଂହ ଓ ରାଜପୁତ୍ର ମୁଆଜାମ ଶିବାଜୀଙ୍କୁ ରାଜା ବୋଲି ସ୍ୱୀକାର କରିବା ପାଇଁ ଏବଂ ଶମ୍ଭୁଜୀଙ୍କୁ ବେରାର ରାଜ୍ୟ ଜାଗୀର ରୂପେ ଦେବା ପାଇଁ ଆଉରଙ୍ଗଜେବଙ୍କୁ ପ୍ରବର୍ତ୍ତାଇ ଥିଲେ । କିନ୍ତୁ ଏଥିରେ କିଛି ଫଳ ହୋଇ ନ ଥିଲା । ବରଂ ଆଉରଙ୍ଗଜେବ ସେ ଦୁଇ ଜଣଙ୍କୁ ଶିବାଜୀଙ୍କର ବନ୍ଧୁ ବୋଲି ଭାବି ସେମାନଙ୍କୁ ଦାକ୍ଷିଣାତ୍ୟରୁ ଡକାଇ ଆଣିଲେ ଏବଂ ସେମାନଙ୍କ ଜାଗାରେ ଖାଁ ଜାହାନ ବାହାଦୁର ଓ ମହବତ୍ ଖାଁଙ୍କୁ ଶିବାଜୀଙ୍କ ବିରୁଦ୍ଧରେ ପଠାଇଲେ । ଏହି ପରିବର୍ତ୍ତନ ଦ୍ୱାରା ତାଙ୍କୁ ବିଶେଷ କିଛି ଫଳ ମିଳିନି ନାହିଁ, ବରଂ ଶିବାଜୀ ମୋଗଲମାନଙ୍କ ବିରୁଦ୍ଧରେ ପୁଣି ଝଡ଼୍ଡ ଉତ୍ତୋଳନ କଲେ ।

## ମୋଗଲମାନଙ୍କ ସହିତ ଯୁଦ୍ଧ :

୧୬୭୦ ଖ୍ରୀ: ଅ: ରେ ଶିବାଜୀ ମୋଗଲ ସାମ୍ରାଜ୍ୟ ଆକ୍ରମଣ କରି ଲୁଣ୍ଠନ କଲେ । ଏହି ସମୟରେ ଦାକ୍ଷିଣାତ୍ୟରେ ମୋଗଲ ସେନାପତିମାନଙ୍କ ମଧ୍ୟରେ ମନୋମାଳିନ୍ୟ ହେବାରୁ, ମୋଗଲ ଶକ୍ତି ସେଠାରେ ଦୁର୍ବଳ ହୋଇ ପଡ଼ିଲା । ଶିବାଜୀ ମୋଗଲମାନଙ୍କର ଏହି ଦୁର୍ବଳତାର ସୁଯୋଗ ନେଲେ ।

## ସିନ୍‌ହଗାଦ ଓ ପୁରନ୍ଦର ଦୁର୍ଗ ଅଧିକାର :

ସେତେବେଳେ ସିନ୍‌ହଗାଦ (Sinhgad) ଓ ପୁରନ୍ଦର ଦୁର୍ଗ ମୋଗଲମାନଙ୍କ ଅଧୀନରେ ଥିବାରୁ ଶିବାଜୀ ଓ ତାଙ୍କ ମାଆଙ୍କ ପକ୍ଷରେ ଏହା ଅତ୍ୟନ୍ତ ଚକ୍ଷୁଶୂଳ ଥିଲା । ଆଉରଙ୍ଗଜେବଙ୍କର ଏହି ସାମ୍ରିତିକ ବିଶ୍ୱାସଘାତକତା ଯୋଗୁ ଶିବାଜୀ ବେଶ୍ ବୁଝି ପାରିଲେ ଯେ, ମୋଗଲମାନଙ୍କ ସହିତ ଶାନ୍ତିରେ ସେ କେବେହେଲେ ରହି ପାରିବେ ନାହିଁ । ଏଣୁ ଏହି ଦୁଇଟି ଦୁର୍ଗକୁ ଅଧିକାର କରିବା ପାଇଁ ସେ ଶେଷ ସିଦ୍ଧାନ୍ତ କଲେ । ସିନ୍‌ହଗାଦ ଦୁର୍ଗ ସେତେବେଳେ ବୀର ଯୋଦ୍ଧା ଉଦେଭାନ (Ude Bhan) ଏବଂ ତାଙ୍କର ପରାକ୍ରମୀ ସେନାପତି ସିଦି ହିଲାଲ (Sidi Hillal)ଙ୍କ ଦାୟିତ୍ୱରେ ଥିଲା । 'ସିନ୍‌ହ'ର ଅର୍ଥ ସିଂହ ଏବଂ 'ଗାଦ'ର ଅର୍ଥ ଦୁର୍ଗ । ଶିବାଜୀ ତାଙ୍କର ବୀର ମରହଟ୍ଟା ଯୋଦ୍ଧା ତଥା ସୁବେଦାର ତାନାଜୀ ମଲୁସରେଙ୍କୁ (Tanaji malusare) ସିନ୍‌ହଗାଦ ଦୁର୍ଗ ଅଧିକାର କରିବା ପାଇଁ ପଠାଇଲେ । ଶେଷରେ ତାନାଜୀ ବହୁ କଷ୍ଟବରଣ କରି କେବଳ ମାତ୍ର ୫୦ ଜଣ ମରହଟ୍ଟା ସୈନ୍ୟମାନଙ୍କ ସାହାଯ୍ୟରେ ସିନ୍‌ହଗାଦ ଦୁର୍ଗ ନିଜ ଜୀବନ ବିନିମୟରେ ଅଧିକାର କଲେ । ଶିବାଜୀଙ୍କ ପାଇଁ ତାନାଜୀଙ୍କର ମୃତ୍ୟୁ ଏକ ଦାରୁଣ ସମ୍ବାଦ ଥିଲା ଏବଂ ସେ ଏହି ଦୁର୍ଗ ମଧ୍ୟରେ ପ୍ରବେଶ କଲାବେଳେ କହିଥିଲେ—"ମୁଁ ଦୁର୍ଗ ପାଇଲି ସତ; କିନ୍ତୁ ସିଂହକୁ ହରାଇଲି ।" ଏହାପରେ ଶିବାଜୀ ପୁରନ୍ଦର ଦୁର୍ଗ ଅଧିକାର କଲେ । ତା'ପରେ ସେ ଯେଉଁ ସିଭନାର ଦୁର୍ଗରେ ଜନ୍ମ ହୋଇଥିଲେ, ତାକୁ ଅଧିକାର କରିବା ପାଇଁ ଆପ୍ରାଣ ଚେଷ୍ଟା କଲେ । କିନ୍ତୁ ତାଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଥିଲା । ତତ୍ପରେ ସେ ମୋଗଲମାନଙ୍କର ଅଧୀନରେ ଥିବା ଜଞ୍ଜିରା ଦୁର୍ଗ ଅଧିକାର କଲେ ।

## ସୁରଟ ବନ୍ଦର ଲୁଣ୍ଠନ :

ଏହି ବିଜୟରେ ସେ ଉନ୍ମତ୍ତ ହୋଇ ୧୬୭୦ ଖ୍ରୀ: ଅ: ରେ ସେ ଦ୍ୱିତୀୟ ଥର ପାଇଁ ପୁଣି ସୁରଟ ବନ୍ଦର ଲୁଣ୍ଠନ କରିବା ପାଇଁ ଅଗ୍ରସର ହେଲେ । ୧୬୬୪ ଖ୍ରୀ: ଅ: ରେ ମରହଟ୍ଟାମାନେ ସୁରଟ ବନ୍ଦର ଲୁଣ୍ଠନ କରିବା ପରେ, ମୋଗଲମାନେ ଏହାର ଭବିଷ୍ୟତର ସୁରକ୍ଷା ପାଇଁ କୌଣସି ଦୃଢ଼ ବ୍ୟବସ୍ଥା କରି ନ ଥିଲେ । ଏଣୁ ଶିବାଜୀ ମୋଗଲମାନଙ୍କର

ଏହି ଦୁର୍ବଳତାର ସୁଯୋଗ ନେଇ ସୁରଟ ଆକ୍ରମଣ କଲେ ଏବଂ ଲୁଣ୍ଠନ କରି ପ୍ରାୟ ୬୭ ଲକ୍ଷ ମୁଦ୍ରା ପାଇଲେ । ଏହି ଆକ୍ରମଣ ଫଳରେ ଇଂରେଜ, ଡଚ୍ ଓ ଫରାସୀ ବଣିକମାନେ ନିଜ ନିଜକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ସେମାନଙ୍କର ବାଣିଜ୍ୟ କେନ୍ଦ୍ର ଓ କଳ କାରଖାନାକୁ ରକ୍ଷା କରିବା ପାଇଁ ମରହଟ୍ଟାମାନଙ୍କୁ ମଧ୍ୟ ପ୍ରତିରୋଧ କଲେ । କିନ୍ତୁ ମରହଟ୍ଟାମାନଙ୍କ ଭୟରେ ସୁରଟ ବନ୍ଦରରେ ସମସ୍ତ ବାଣିଜ୍ୟ ବ୍ୟବସାୟ ବନ୍ଦ ହୋଇଗଲା । ସେମାନଙ୍କର ଆକ୍ରମଣ ଲୋକମାନଙ୍କ ମନରେ ଏପରି ଭୟ ସଞ୍ଚାର କଲା ଯେ ମରହଟ୍ଟାମାନଙ୍କର ଆକ୍ରମଣ କଥା ଶୁଣିଲା ମାତ୍ରେ ଲୋକେ ସହର ଛାଡ଼ି ଦୂର ଦୂରାନ୍ତକୁ ପଳାଇ ଯାଉଥିଲେ । ଅଳ୍ପ ସମୟ ମଧ୍ୟରେ ସେ ମହୀଶୂର ଓ କର୍ଣ୍ଣାଟକରେ ଥିବା ସମସ୍ତ ଦୁର୍ଗ ଅଧିକାର କରି ନେଲେ ଏବଂ ଗୋଲକୁଣ୍ଡା ଓ ବିଜାପୁର ରାଜ୍ୟରୁ ଚୌଥ କର ଆଦାୟ କଲେ । କ୍ରମେ କ୍ରମେ ତାଙ୍କର ଆକ୍ରମଣ ମୋଗଲ ସାମ୍ରାଜ୍ୟ ମଧ୍ୟକୁ ବଢ଼ିବାକୁ ଲାଗିଲା ଏବଂ ମୋଗଲମାନଙ୍କ ପକ୍ଷରେ ତାଙ୍କୁ ପରାସ୍ତ କରିବା କଷ୍ଟକର ହୋଇ ପଡ଼ିଲା ।

## ମହବତ୍ ଖାଁ ଓ ଶିବାଜୀ :

୧୬୭୦ ଖ୍ରୀ: ଅ: ରୁ ୧୬୭୪ ଖ୍ରୀ: ଅ: ପର୍ଯ୍ୟନ୍ତ ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ସର୍ବଦା ଯୁଦ୍ଧ ଲାଗି ରହିଲା ଏବଂ ମୋଗଲମାନେ ବାରମ୍ବାର ପରାସ୍ତ ହେବାରୁ ଶିବାଜୀଙ୍କର ସାହସ ବଢ଼ିଗଲା । ୧୬୭୨ ଖ୍ରୀ: ଅ: ରେ ସେ ବିଜାପୁର ଓ ଗୋଲକୁଣ୍ଡା ରାଜ୍ୟମାନଙ୍କ ସାହାଯ୍ୟରେ ମୋଗଲମାନଙ୍କୁ ପରାସ୍ତ କରି ମୋଗଲ ସମ୍ରାଟଙ୍କର ବିଶେଷ କ୍ଷତି କରିଥିଲେ । ଏହାଛଡ଼ା ସୁରଟ ଲୁଣ୍ଠନ ଲବ୍ଧ ଧନରେ ସେ ଗୋଟିଏ ବିରାଟ ସୈନ୍ୟବାହିନୀ ଗଠନ କଲେ ଏବଂ କ୍ଷମତାଶାଳୀ ଜଳଡଙ୍ଗା ନିର୍ମାଣ କରାଇ ଗୁଜୁରାଟଠାରୁ ବ୍ରୋଚ ଉପକୂଳ ପର୍ଯ୍ୟନ୍ତ ତାହାକୁ ପ୍ରଦର୍ଶନ କରାଇଲେ । ଫଳରେ ମୋଗଲମାନେ ମରହଟ୍ଟାମାନଙ୍କର ବ୍ରୋଚ ଉପରେ ଆକ୍ରମଣର ଆଶଙ୍କା କରି ଦାକ୍ଷିଣାତ୍ୟରେ ଥିବା ସମସ୍ତ ସୈନ୍ୟଙ୍କୁ ଗୁଜରାଟକୁ ପ୍ରେରଣ କଲେ । ଏହି ସୁଯୋଗରେ ଶିବାଜୀ ଖାନ୍ଦେଶ ଆକ୍ରମଣ କଲେ ଏବଂ ପ୍ରଥମ ଥର ପାଇଁ ମୋଗଲ ରାଜ୍ୟ କଲ୍ୟାନରୁ ସେ ଚୌଥ କର ଆଦାୟ କଲେ । ସେତେବେଳେ ମହବତ୍ ଖାଁ ଦାକ୍ଷିଣାତ୍ୟରେ ଅବସ୍ଥାନ କରୁଥିଲେ । ମହବତ୍ ଖାଁ ଜଣେ ବୀର ଯୋଦ୍ଧା ଏବଂ ଶାଜାହାନଙ୍କ ସମୟରେ ସେ ଦାକ୍ଷିଣାତ୍ୟର ଦୌଲତାବାଦ ଅଧିକାର କରିଥିଲେ । ସେ ମରହଟ୍ଟାମାନଙ୍କର ଆକ୍ରମଣକୁ ପ୍ରତିରୋଧ କରିବା ପାଇଁ ସେମାନଙ୍କ ଅଧୀନରେ ଥିବା ସଲହେର (Salher) ଅବରୋଧ କଲେ; କିନ୍ତୁ ଶେଷରେ ମୋଗଲମାନେ ମରହଟ୍ଟାମାନଙ୍କ ଦ୍ୱାରା ପରାସ୍ତ ହେଲେ । ଏହି ବିଜୟ ଶିବାଜୀଙ୍କ ପକ୍ଷରେ ଏକ ବିରାଟ ଗୌରବମୟ ଘଟଣା ଥିଲା । କାରଣ ପ୍ରଥମ ଥର ପାଇଁ ମରହଟ୍ଟାମାନେ ଆକବର ଓ ଶାଜାହାନଙ୍କର ତାଲିମପ୍ରାପ୍ତ, ବୀର ମୋଗଲ ସୈନିକ ମହବତ୍ ଖାଁ ତଥା ତାଙ୍କ ନେତୃତ୍ୱରେ ପରିଚାଳିତ ଶୃଙ୍ଖଳିତ ମୋଗଲ ସୈନ୍ୟମାନଙ୍କୁ ପରାସ୍ତ କରି ଜୟଯୁକ୍ତ

ହୋଇ ପାରିଥିଲେ । ଏହାଛଡ଼ା ସେ କୋଙ୍କୋନ୍, ମଙ୍ଗଳ ଓ ନନ୍ଦର ଦୁର୍ଗ ଅଧିକାର କରି କୋଙ୍କୋନ୍‌ରୁ ମୋଗଲ ଫୌଜଦାରଙ୍କୁ ବିତାଡ଼ିତ କଲେ ଏବଂ ବଖଲନ୍ ଓ ବେଗ୍ନର ଆକ୍ରମଣ କଲେ । ସଲହେରଠାରେ ମୋଗଲମାନଙ୍କର ଦାରୁଣ ଦୁର୍ବିପାକ ଯୋଗୁ ଆଉରଙ୍ଗଜେବ ଖିପଣ ଖବରେ ବିରକ୍ତ ହୋଇ ମହବତ୍ ଖାଁଙ୍କୁ ଡକାଇ ପଠାଇଲେ ଏବଂ ମରହଟ୍ଟାମାନଙ୍କୁ ପରାସ୍ତ କରିବା ପାଇଁ ବାହାଦୁର ଖାଁ ବା ଖାଁ ଜାହାନ୍ ବାହାଦୁରଙ୍କୁ ଆଦେଶ ଦେଲେ । ସେ ପାଞ୍ଚ ବର୍ଷ କାଳ ଆପ୍ରାଣ ଚେଷ୍ଟା କରି ମରହଟ୍ଟାମାନଙ୍କ ବିରୁଦ୍ଧରେ ବିଶେଷ କିଛି ଉଲ୍ଲେଖଯୋଗ୍ୟ କାର୍ଯ୍ୟାନୁଷ୍ଠାନ କରି ପାରିଲେ ନାହିଁ । ପୁଣି ୧୬୭୪ ଖ୍ରୀ: ଅ: ରେ ମୋଗଲ ସେନାପତି ଦଲିର ଖାଁ ସେମାନଙ୍କଠାରୁ ପରାସ୍ତ ହେବାରୁ, ଆଉରଙ୍ଗଜେବ ତାଙ୍କୁ ଉତ୍ତର ପଶ୍ଚିମ-ସୀମାନ୍ତରେ ଆଫଗାନମାନଙ୍କର ବିଦ୍ରୋହ ଦମନ କରିବା ପାଇଁ ପଠାଇ ଦେଲେ ।

୧୬୭୨ ଖ୍ରୀ: ଅ: ର ଡିସେମ୍ବର ମାସ ୧୫ ତାରିଖରେ ବିଜାପୁର ସୁଲତାନ ଆଲି ଆଦିଲ ସାହ ପ୍ରାଣତ୍ୟାଗ କଲେ । ତାଙ୍କ ରାଜତ୍ୱ କାଳରେ ସର୍ବଦା ବିଶୃଙ୍ଖଳା ଲାଗି ରହିଥିଲା ଏବଂ ତାଙ୍କ ମୃତ୍ୟୁପରେ ଏହା ଆହୁରି ବଢ଼ିବାକୁ ଲାଗିଲା । ଏଣୁ ଶିବାଜୀ ବିଜାପୁର ରାଜ୍ୟର ଏହି ଦୁର୍ବିପାକ ସମୟରେ ସ୍ଥଳ ଓ ଜଳପଥରୁ ଆକ୍ରମଣ ଚଳାଇ ସାତରା, ଚନ୍ଦନ୍, ନନ୍ଦଗିରି ପ୍ରଭୃତି ଦୁର୍ଗ ଅଧିକାର କଲେ ।

**ରାଜ୍ୟାଭିଷେକ :**

ମୋଗଲମାନଙ୍କଠାରୁ ଅନେକ ରାଜ୍ୟ ଜୟ କରିଥିଲେ ମଧ୍ୟ ଶିବାଜୀ ବିଧିବଦ୍ଧ ଭାବରେ ରାଜ୍ୟର ଶାସନଭାର ଗ୍ରହଣ କରି ନ ଥିବାରୁ, ସ୍ୱଦେଶରେ ଓ ବିଦେଶରେ ସାମାନ୍ୟ ଜଣେ ଲୁଣ୍ଠନକାରୀ ବୋଲି ପରିଚିତ ହେଉଥିଲେ । ତେଣୁ ୧୬୭୪ ଖ୍ରୀ: ଅ:ର ଜୁନ ମାସରେ ବହୁ ଆଡ଼ମ୍ବର ମଧ୍ୟରେ ବୈଦିକ ରୀତିରେ ନିଜର ଅଭିଷେକ ଉତ୍ସବ ସମ୍ପାଦନ କଲେ । ରାୟଗଡ଼ଠାରେ ସେ ସିଂହାସନ ଆରୋହଣ କରି ନିଜକୁ ଛତ୍ରପତି ଉପାଧିରେ ଭୂଷିତ କଲେ ଏବଂ ତାଙ୍କର ସାର୍ବଭୌମ କ୍ଷମତାର ପରିଚୟ ଦେଲେ । ଏହା ଫଳରେ ମୁସଲମାନଙ୍କର ପ୍ରବଳ ପ୍ରତିରୋଧ ମଧ୍ୟରେ ସ୍ୱାଧୀନ ହିନ୍ଦୁ ମରହଟ୍ଟା ରାଜ୍ୟର ଉତ୍ଥାନ ହେଲା ।

ସିଂହାସନ ଆରୋହଣ କରି ସେ ପୁନର୍ବାର ମୋଗଲ ସାମ୍ରାଜ୍ୟ ଆକ୍ରମଣ କଲେ । ୧୬୭୭ ଖ୍ରୀ: ଅ: ରୁ ୧୬୭୯ ଖ୍ରୀ: ଅ: ମଧ୍ୟରେ ସେ ଗୋଲକୁଣ୍ଡାର ସୁଲତାନ କୁତବ ସାହଙ୍କ ସହାୟତାରେ କର୍ଣ୍ଣାଟକ ରାଜ୍ୟ ଜୟ କଲେ । ଏହାପରେ ସେ ଜିଞ୍ଜି, ଭେଲୋର ଓ ଅନ୍ୟାନ୍ୟ ଦୁର୍ଗମାନ ଅଧିକାର କଲେ ଏବଂ ବିଜାପୁର ରାଜ୍ୟ ଉପରେ ତାଙ୍କର ଆକ୍ରମଣ ଖୁବ୍‌ଲୁଟି ଲୁଣ୍ଠନ କଲେ । ଏହି ସମୟରେ ଗୋଲକୁଣ୍ଡାର ସୁଲତାନ ଅବଦୁଲ କୁତବ ସାହଙ୍କ ମୃତ୍ୟୁପରେ ତାଙ୍କ ଜାମାତା ଆବୁ ହୁସେନ ସିଂହାସନ ଆରୋହଣ କଲେ । ସେ

ଅତ୍ୟନ୍ତ ବିଳାସବ୍ୟସନ ପ୍ରିୟ ହୋଇଥିବାରୁ ରାଜ୍ୟରେ ବିଶୃଙ୍ଖଳା ଦେଖାଗଲା ଏବଂ ଆଉରଙ୍ଗଜେବଙ୍କ ପକ୍ଷରେ ଗୋଲକୁଣ୍ଡା ଅଧିକାର କରିବା ସହଜ ହୋଇ ପଡ଼ିଲା । ଏଣୁ ଆଉରଙ୍ଗଜେବ ଗୋଲକୁଣ୍ଡା ଓ ଶିବାଜୀଙ୍କ ବିରୁଦ୍ଧରେ ଦାକ୍ଷିଣାତ୍ୟକୁ ସୈନ୍ୟ ପଠାଇଲେ; କିନ୍ତୁ ଶିବାଜୀ ଅବାଧରେ ମୋଗଲରାଜ୍ୟ ଲୁଣ୍ଠନ କରିବାକୁ ଲାଗିଲେ ।

ଶିବାଜୀଙ୍କର କ୍ଷମତା ଓ ପ୍ରଭାବ ଚୂର୍ଣ୍ଣ କରିବା ପାଇଁ ଦିଲୀର ଖାଁ ଗୋଲକୁଣ୍ଡା ଆକ୍ରମଣ କଲେ । ବିଜାପୁରର ସୈନ୍ୟମାନେ ମୋଗଲମାନଙ୍କ ସହିତ ଗୋଲକୁଣ୍ଡା ବିରୁଦ୍ଧରେ ଯୋଗ ଦେଇଥିଲେ । ଗୋଲକୁଣ୍ଡାର ସୁଲତାନ ହିନ୍ଦୁ ବ୍ରାହ୍ମଣ ମନ୍ତ୍ରୀମାନଙ୍କ ସହାୟତାରେ ଖୁବ୍ ବୀରତ୍ୱର ସହିତ ଏହି ଆକ୍ରମଣର ପ୍ରତିରୋଧ କରିଥିଲେ । ବିଜାପୁରର ସୈନ୍ୟମାନେ ବହୁତ ଦିନରୁ ତାଙ୍କର ବକେୟା ଦରମା ପାଇ ନ ଥିବାରୁ ସେମାନେ ମୋଗଲମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରି ସେମାନଙ୍କୁ ଛାଡ଼ି ଚାଲିଗଲେ । ଫଳରେ ଦିଲୀର ଖାଁ କୁଲବର୍ଗ (**Kulburga**)କୁ ପଳାୟନ କଲେ । ସମ୍ରାଟ ଆଉରଙ୍ଗ-ଜେବ ଏଥିରେ ବିରକ୍ତ ହୋଇ ରାଜପୁତ୍ର ମୁଆଜାମଙ୍କୁ ପୁଣି ଦାକ୍ଷିଣାତ୍ୟର ଶାସନକର୍ତ୍ତା ରୂପେ ପଠାଇଲେ । ବିଦ୍ରୋହୀ ସୈନ୍ୟମାନେ ଯଦି ମୋଗଲ ସୈନ୍ୟ ବିଭାଗରେ ଯୋଗ ଦେବେ, ତାହାହେଲେ ସେମାନଙ୍କୁ ସେମାନଙ୍କର ବକେୟା ପାଉଣା ସବୁ ଦିଆଯିବ ବୋଲି ଦିଲୀର ଖାଁ ନିକଟକୁ ସେ ନିର୍ଦ୍ଦେଶ ପଠାଇଲେ ଏବଂ ଗୋଲକୁଣ୍ଡା ଆକ୍ରମଣ ବର୍ତ୍ତମାନ ପାଇଁ ପ୍ରତ୍ୟାହୃତ କରିବା ପାଇଁ ଆଦେଶ ଦେଲେ । କିନ୍ତୁ ଏହି ସୈନ୍ୟମାନେ ବିଜାପୁର ସୁଲ-ତାନଙ୍କ ପ୍ରତି ବିଶ୍ୱସ୍ତ ଥିବାରୁ, ମୋଗଲ ସମ୍ରାଟଙ୍କ ପ୍ରସ୍ତାବରେ ସେମାନେ ରାଜି ହେଲେ ନାହିଁ । ଏଣୁ ଦିଲୀର ଖାଁ ବିଜାପୁର ଆକ୍ରମଣ କଲେ । ଏହା ଦେଖି ବିଜାପୁରର ନାବାଳକ ସୁଲତାନ ସିକନ୍ଦର ଆଦିଲ ସାହା ଶିବାଜୀଙ୍କୁ ମୋଗଲମାନଙ୍କ ବିରୁଦ୍ଧରେ ତାଙ୍କୁ ସାହାଯ୍ୟ କରିବା ପାଇଁ ଅନୁରୋଧ କଲେ । ଏହି ଖବର ପାଇ ଶିବାଜୀ ମୋଗଲମାନଙ୍କ କବଳରୁ ବିଜାପୁର ରାଜ୍ୟର ଧନ ସମ୍ପଦ ରକ୍ଷା କରିବା ପାଇଁ ସୁଲତାନଙ୍କୁ ସାହାଯ୍ୟ କଲେ । ଫଳରେ ଦିଲୀର ଖାଁ ମରହଟ୍ଟାମାନଙ୍କ ଆକ୍ରମଣରେ ଅତିଶୟ କ୍ଷତିଗ୍ରସ୍ତ ହୋଇ ପରାସ୍ତ ହେଲେ । ସେମାନେ କେତେକ ମୋଗଲ ଦୁର୍ଗ ଅଧିକାର କରି ଶେଷରେ ଆଉରଙ୍ଗାବାଦ ଅଧିକାର କଲେ । ଏହାଦ୍ୱାରା ବିଜାପୁର ମୋଗଲ ସମ୍ରାଟଙ୍କ ଆକ୍ରମଣରୁ ରକ୍ଷା ପାଇଲା ଏବଂ ଏହି ବିଜୟ ଉତ୍ସବ ଖୁବ୍ ସମାରୋହରେ ପାଳିତ ହୋଇଥିଲା । ଶିବାଜୀ ଏହି ଉତ୍ସବରେ ନିମନ୍ତ୍ରଣ କ୍ରମେ ଯୋଗ ଦେଇଥିଲେ । ବିଜାପୁର ସୁଲତାନଙ୍କୁ ସାହାଯ୍ୟ କରିଥିବାରୁ କୃଷ୍ଣା ନଦୀଠାରୁ ତାଞ୍ଜୋର ପର୍ଯ୍ୟନ୍ତ ବିଜାପୁରର ସମସ୍ତ ଅଞ୍ଚଳ ଶିବାଜୀଙ୍କ ଅଧୀନରେ ରହିଲା । ମୋଗଲମାନଙ୍କ ବିରୁଦ୍ଧରେ ଶିବାଜୀଙ୍କର ବିରାଟ ଯୋଜନା ଥିଲା । କିନ୍ତୁ ହଠାତ୍ ସେ ଅସମୟରେ ଅର୍ଥାତ୍ ୧୬୮୦ ଖ୍ରୀ: ଅ: ର ଏପ୍ରିଲ ମାସ ଚଉଦ ତାରିଖରେ ତେପନ ବର୍ଷ ବୟସରେ ପ୍ରାଣତ୍ୟାଗ କଲେ ।

## ମରହଟ୍ଟା ରାଜ୍ୟ ସୀମା :

ଶିବାଜୀ ଭାରତର ପଶ୍ଚିମ ଉପକୂଳରେ ଏକ ସରୁ ଅଣଓସାରିଆ ରାଜ୍ୟ ଗଠନ କରିଥିଲେ । ତାଙ୍କ ରାଜ୍ୟ ପଶ୍ଚିମ ଘାଟ ଅଞ୍ଚଳ ଓ କଲ୍ୟାଣଠାରୁ ଗୋଆ ପର୍ଯ୍ୟନ୍ତ ଭୂଖଣ୍ଡକୁ ନେଇ ବିସ୍ତୃତ ହୋଇଥିଲା । କୋଙ୍କୋନ ରାଜ୍ୟ, ନାସିକ୍, ପୁନା, ସାତରା, କୋହ୍ଲାପୁର ସେହି ରାଜ୍ୟର ଅନ୍ତର୍ଗତ ଥିଲା । ପରେ ସେ ତାଙ୍କ ରାଜ୍ୟର ଦକ୍ଷିଣରେ ଥିବା ବେଲଗାମଠାରୁ ତୁଙ୍ଗଭଦ୍ରା ନଦୀ କୂଳ ପର୍ଯ୍ୟନ୍ତ ସମସ୍ତ ପଶ୍ଚିମ କର୍ଣ୍ଣାଟକ ରାଜ୍ୟ ଏବଂ ମାନ୍ଦ୍ରାଜ ରାଜ୍ୟରେ ଥିବା ବେଲାରି, ଆର୍କଟ, ଭେଲୋର ଓ ବାଙ୍ଗାଲୋର ମଧ୍ୟ ଅଧିକାର କରି ନିଜ ରାଜ୍ୟ ସହିତ ମିଶାଇ ଦେଇଥିଲେ ।

## ଶିବାଜୀଙ୍କ ପରେ ମରହଟ୍ଟା ରାଜ୍ୟର ଅବସ୍ଥା :

ଶିବାଜୀ ଯେଉଁ ମରହଟ୍ଟା ରାଜ୍ୟ ସ୍ଥାପନ କରିଥିଲେ ତାହା ତାଙ୍କ ମୃତ୍ୟୁ ପରେ କିନ୍ତୁ ତିଷ୍ଠିପାରି ନ ଥିଲା । କାରଣ ଏହି ରାଜ୍ୟର ସାମରିକ ସଙ୍ଗଠନଭିତ୍ତିରେ ଗଠିତ ହୋଇଥିଲା ଏବଂ ମରହଟ୍ଟା ସାମରିକ ଶକ୍ତି ଦୁର୍ବଳ ହୋଇ ପଡ଼ିବା ମାତ୍ରେ ମରହଟ୍ଟା ରାଜ୍ୟର ଅସ୍ତିତ୍ୱ ଲୋପ ପାଇଲା । ଏହାଛଡ଼ା ମରହଟ୍ଟା ଶାସକମାନେ ଶିବାଜୀଙ୍କର ମୃତ୍ୟୁ ପରେ ସ୍ୱେଚ୍ଛାଚାରୀ ଶାସନ ଚଳାଇବାରୁ ଏବଂ ପୁଣି ପୂର୍ବର ସାମନ୍ତବାଦ ପ୍ରଥା ରାଜ୍ୟରେ ପ୍ରଚଳିତ ହେବାରୁ ଏହି ହିନ୍ଦୁ ହିନ୍ଦୁ ରାଜ୍ୟର ପତନ ଅବଶ୍ୟମ୍ଭାବୀ ହୋଇ ପଡ଼ିଲା । ଅଧିକନ୍ତୁ ମଧ୍ୟ ମରହଟ୍ଟା ଜାଗିରଦାରମାନେ ରାଜ୍ୟରେ ସ୍ୱେଚ୍ଛାଚାରୀ ଶାସନ ପ୍ରଚଳନ କରିବା ଦ୍ୱାରା ସେମାନେ ଲୋକପ୍ରିୟ ହୋଇ ପାରିଲେ ନାହିଁ । ରାଜ୍ୟର ମୁଖ୍ୟମାନଙ୍କ ମଧ୍ୟରେ ସର୍ବଦା କଳହ, ବିଶ୍ୱାସଘାତକତା ଯୋଗୁ ମରହଟ୍ଟା ଜାତିସ୍ୱର୍ଜୀବନ ବିପନ୍ନ ହୋଇ ପଡ଼ିଲା । ଏଣୁ ମରହଟ୍ଟାମାନଙ୍କର ଚିର ଶତ୍ରୁ ଆଉରଙ୍ଗଜେବ ସେମାନଙ୍କର ଏହି ଅନ୍ତର୍ବିବାଦର ସୁଯୋଗ ନେଇ, ଶିବାଜୀଙ୍କର ବଂଶଧରମାନଙ୍କ ଉପରେ ପ୍ରତିଶୋଧ ନେବା ପାଇଁ ପୁଣି ମରହଟ୍ଟା-ମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲେ ।

## ଶମ୍ଭୁଜୀ :

ଶିବାଜୀଙ୍କର ମୃତ୍ୟୁ ପରେ ତାଙ୍କ ପୁତ୍ର ଶମ୍ଭୁଜୀ ମରହଟ୍ଟା ସିଂହାସନ ଆରୋହଣ କଲେ । କିନ୍ତୁ ସେ ସାହସୀ ଥିଲେ ମଧ୍ୟ ଚରିତ୍ରହୀନ, ମଦ୍ୟପ ଏବଂ ସର୍ବଦା ଭୋଗ-ବିଳାସରେ ମାତି ରହୁଥିଲେ । ଏକ ବିରାଟ ରାଜ୍ୟର ଉତ୍ତରାଧିକାରୀ ଏବଂ ଅମାପ ଧନ ସମ୍ପତ୍ତିର ମାଲିକ ହୋଇ ମଧ୍ୟ ତାଙ୍କଠାରେ ଶିବାଜୀଙ୍କର କୌଣସି ସଦ୍‌ଗୁଣ ପରିଲକ୍ଷିତ ହେଉ ନ ଥିଲା । ଯେଉଁ ଶିବାଜୀ ଦିନେ ମୋଗଲମାନଙ୍କର ଘୋର ବିରୋଧ ଏବଂ ମୋଗଲ ଶକ୍ତିର ଉପସ୍ଥିତିରେ 'ଏକ ସ୍ୱାଧୀନ ସାର୍ବଭୌମ ହିନ୍ଦୁ ରାଜ୍ୟ ଗଠନ କରି ପାରିଥିଲେ, ତାଙ୍କ

ପୁତ୍ର ଶମ୍ଭୁଜୀ ଲମ୍ପଟ ଜୀବନଯାପନ କରି ଏବଂ ଭୋଗବିଳାସରେ ମାତି ନିଜ ପିତାଙ୍କର ରକ୍ତରେ ଗଢ଼ା ରାଜ୍ୟ ପ୍ରତି ଲକ୍ଷ୍ୟ ଦେଲେ ନାହିଁ । ଶିବାଜୀ ବଞ୍ଚିଥିଲା ବେଳେ ପୁତ୍ରର ଏପରି ଆଚରଣ ଦେଖି ତାଙ୍କୁ ଥରେ ବନ୍ଦୀ କରିଥିଲେ । କିନ୍ତୁ ସେ ବନ୍ଦୀଶାଳାରୁ ପଳାୟନ କରି ପିତାଙ୍କର ବିରୁଦ୍ଧାଚରଣ କଲେ ଏବଂ ଦାକ୍ଷିଣାତ୍ୟରେ ସେତେବେଳେ ଅବସ୍ଥାନ କରୁଥିବା ଦିଲିର ଖାଁଙ୍କ ସହିତ ଯୋଗ ଦେଲେ । ଦିଲିର ଖାଁ ମଧ୍ୟ ତାଙ୍କୁ ଅତି ଆଦରରେ ଗ୍ରହଣ କଲେ । ଏହି ଖବର ପାଇ ଆଉରଙ୍ଗଜେବ ତାଙ୍କୁ ମୋଗଲ ସୈନ୍ୟବାହିନୀରେ ସାତହଜାରି ଅଶ୍ୱାରୋହୀ ବାହିନୀର ନେତୃତ୍ୱ ପ୍ରଦାନ କଲେ । ଦିଲିର ଖାଁଙ୍କଠାରୁ ଆଦେଶ ପାଇ ଶମ୍ଭୁଜୀ ମରହଟ୍ଟାମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଭୂପାଳଗଡ଼ ଅଧିକାର କଲେ । ଏଣୁ ଶମ୍ଭୁଜୀଙ୍କୁ ମରହଟ୍ଟାମାନଙ୍କର ରାଜା ବୋଲି ସ୍ୱୀକୃତ ଦେବା ପାଇଁ ଦିଲିର ଖାଁ ସମ୍ରାଟ ଆଉରଙ୍ଗଜେବଙ୍କୁ ଅନୁରୋଧ କଲେ । ସମ୍ରାଟ କିନ୍ତୁ ଶମ୍ଭୁଜୀଙ୍କୁ ସନ୍ଦେହ କରି ଏହି ପ୍ରସ୍ତାବକୁ ଅନୁମୋଦନ କଲେ ନାହିଁ ଏବଂ ତାଙ୍କୁ ଯଥାଶୀଘ୍ର ବନ୍ଦୀ କରି ଦିଲ୍ଲୀକୁ ପଠାଇ ଦେବା ପାଇଁ ଦିଲିର ଖାଁଙ୍କୁ ଆଦେଶ ଦେଲେ । ଦିଲିର ଖାଁ ସମ୍ରାଟଙ୍କର ଏହି ନିଷ୍ପତ୍ତିକୁ ପସନ୍ଦ କଲେ ନାହିଁ ଏବଂ ଶମ୍ଭୁଜୀଙ୍କୁ ଏହା ଜଣାଇ ଦେଇ ତାଙ୍କୁ ପୁଣି ଶିବାଜୀଙ୍କ ନିକଟକୁ ଫେରିଯିବା ପାଇଁ ଉପଦେଶ ଦେଲେ । ଫଳରେ ଶମ୍ଭୁଜୀ ପୁଣି ଶିବାଜୀଙ୍କ ନିକଟକୁ ଫେରିଗଲେ ସୁଦ୍ଧା, ପିତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୁର୍ଗ ମଧ୍ୟରେ ସର୍ବଦା ବନ୍ଦୀ ଭାବରେ ରହିଥିଲେ ।

## ଶମ୍ଭୁଜୀ ଓ ଆଉରଙ୍ଗଜେବ :

ଯାହାହେଉ ଶମ୍ଭୁଜୀ ତାଙ୍କ ପିତାଙ୍କ ପରି ୧୬୮୧ ଖ୍ରୀ: ଅ: ରୁ ମୋଗଲ ସାମ୍ରାଜ୍ୟ ଆକ୍ରମଣ ଓ ଲୁଣ୍ଠନ କରିବା ଆରମ୍ଭ କରିଦେଲେ । ଏହି ସମୟରେ ଆଉରଙ୍ଗଜେବଙ୍କର ବିଦ୍ରୋହୀ ପୁତ୍ର ଆକବର ଓ ମାରବାରର ରାଥୋର ବୀର ଦୁର୍ଗାଦାସ ଦାକ୍ଷିଣାତ୍ୟରେ ଆସି ପହଞ୍ଚିବାରୁ ଶମ୍ଭୁଜୀ ସେମାନଙ୍କୁ ଆଶ୍ରୟ ଦେଲେ ଏବଂ ଆକବରଙ୍କୁ ଦିଲ୍ଲୀ ସିଂହାସନ ଅଧିକାର କରିବା ପାଇଁ ମରହଟ୍ଟା ସୈନ୍ୟ ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେଲେ । ଆଉରଙ୍ଗଜେବ ମେବାରର ରାଜା ଜୟସିଂହଙ୍କ ସହିତ ଶାନ୍ତି ସ୍ଥାପନ କରି, ଦୁଇଟି ଶକ୍ତିଶାଳୀ ମୋଗଲ ସେନାବାହିନୀ ସହିତ ରାଜପୁତ୍ର ମୁଆଜାମ ଓ ଆଜାମଙ୍କୁ, ବିଜାପୁର ଏବଂ ବିଦ୍ରୋହୀ ଆକବର ଓ ଶମ୍ଭୁଜୀଙ୍କ ବିରୁଦ୍ଧରେ ପ୍ରେରଣ କଲେ । କିନ୍ତୁ ସେମାନେ କେତେକ ମରହଟ୍ଟା ଦୁର୍ଗ ଅଧିକାର କରିବା ବ୍ୟତୀତ ଅନ୍ୟ କିଛି କରି ପାରିଲେ ନାହିଁ । ଏଣୁ ଆଉରଙ୍ଗଜେବ ନିଜେ ଦାକ୍ଷିଣାତ୍ୟକୁ ଯାଇ ଶମ୍ଭୁଜୀଙ୍କ ବିରୁଦ୍ଧରେ ଅଭିଯାନ ଚଳାଇବା ପାଇଁ ବ୍ୟବସ୍ଥା କଲେ । ଗୋଟିଏ ଦିଗରୁ ମରହଟ୍ଟାମାନଙ୍କୁ ଏକ ସମୟରେ ଆକ୍ରମଣ କରାଗଲା । ସୈୟଦ ହାସନ ଅଲ୍ଲୀ ଖାଁ ଉତ୍ତର କୋଙ୍କୋନ୍‌ରୁ, ସାହାବୁଦ୍ଦିନ୍ ଖାଁ ନାସିକ ଆଡ଼ୁ, ରୁ-ଉଲ୍ଲା-ଖାଁ ଏବଂ ରାଜପୁତ୍ର ସାହା ଆଲମ ଅହମ୍ମଦନଗର ଆଡ଼ୁ ଆକ୍ରମଣ କଲେ । ଏଥି ସଙ୍ଗେ ସଙ୍ଗେ ମରହଟ୍ଟାମାନେ ବିଜାପୁର ଆଡ଼ୁ ଯେପରି କୌଣସି ସାହାଯ୍ୟ ନ ପାଆନ୍ତୁ,

ତାହାର ପ୍ରତିରୋଧ ପାଇଁ ମୁଆଜାମ୍‌ଙ୍କୁ ବିଜାପୁର ପଠାଇଲେ । କିନ୍ତୁ ଏହା ଦ୍ୱାରା ସମ୍ରାଟ ଲାଭବାନ ହୋଇ ପାରିଲେ ନାହିଁ । ୧୬୮୩ ଖ୍ରୀ: ଅ:ରେ ମୋଗଲମାନେ ନିରାଶ ହୋଇ ଫେରି ଆସିଲେ ।

କିଛିଦିନ ପରେ ମୋଗଲମାନେ ବିଜାପୁର ଓ ଗୋଲକୁଣ୍ଡା ଅଧିକାର କଲା ପରେ ଆଉରଙ୍ଗଜେବ ମରହଟ୍ଟାମାନଙ୍କ ସହିତ ଲଢ଼ିବା ପାଇଁ ପୁଣି ସମୟ ଓ ସୁଯୋଗ ପାଇଲେ । ଶମ୍ଭୁଜୀ ଭୋଗବିଳାସରେ ସର୍ବଦା ମାତି ରହୁଥିବାରୁ ଆଉରଙ୍ଗଜେବଙ୍କର ଅସୁବିଧାବେଳେ ମୋଗଲମାନଙ୍କୁ ଠିକଣା ଜବାବ ଦେଇ ପାରିଲେ ନାହିଁ । ଆଉରଙ୍ଗଜେବ ମରହଟ୍ଟା-ମାନଙ୍କର କେତେକ ଦୁର୍ଗ ଅଧିକାର କରି ନେବାରୁ ଶମ୍ଭୁଜୀ ସଙ୍ଗମେଶ୍ୱରକୁ ନିରାପଦ ସ୍ଥାନ ମନେ କରି ସେଠାକୁ ପଳାୟନ କଲେ ।

## ପରାଜୟ ଓ ବନ୍ଦୀ :

କିନ୍ତୁ ସେଠାରେ ସେ ମୋଗଲମାନଙ୍କ କବଳରୁ ରକ୍ଷା ପାଇଲେ ନାହିଁ । ସେ ସେଠାରେ ଯେତେବେଳେ ଅତ୍ୟଧିକ ମଦ୍ୟପାନ ହେତୁ ଜ୍ଞାନଶୂନ୍ୟ ହୋଇପଡ଼ି ଥାଆନ୍ତି, ଠିକ୍ ସେତିକିବେଳେ ମୋଗଲ ସେନାପତି ମୁକାରବ୍ ହଠାତ୍ ମରହଟ୍ଟାମାନଙ୍କୁ ଆକ୍ରମଣ କରି ଶମ୍ଭୁଜୀ ଓ ତାଙ୍କର ବନ୍ଧୁ କବି କୁଳେଶ (Kavi Kulesh)ଙ୍କୁ ୧୬୮୯ ଖ୍ରୀ: ଅ:ରେ ବନ୍ଦୀ କରି ମୋଗଲ ରାଜଧାନୀକୁ ନେଇ ଆସିଲେ । ବହୁ ଦୟନୀୟ ଅବସ୍ଥାରେ ଶମ୍ଭୁଜୀ ଓ କବି କୁଳେଶଙ୍କୁ ମୋଗଲ ଦରବାରକୁ ଅଣାଯାଇ ସେଠାରେ ତାଙ୍କୁ ଓ ତାଙ୍କର ଅନୁଚରମାନଙ୍କୁ ବନ୍ଦୀଶାଳାରେ ରଖାଗଲା । କେତେକଙ୍କ ମତରେ ଆଉରଙ୍ଗଜେବ ତାଙ୍କୁ ମୁସଲମାନ ଧର୍ମ ଗ୍ରହଣ କରିବା ପାଇଁ ପ୍ରବର୍ତ୍ତାଇବାରୁ ସେ ତାଙ୍କୁ ତିରସ୍କାର କରିଥିଲେ । ଆଉ କେତେକଙ୍କ ମତରେ ଶିବାଜୀ କେଉଁଠାରେ ପୋତାଧନ ରଖିଛନ୍ତି ବୋଲି ତାଙ୍କୁ ପଚାରିବାରୁ ସେ ଆଉରଙ୍ଗଜେବଙ୍କୁ ଭୀଷଣ ଭାବରେ ଭର୍ତ୍ସନା କରିଥିଲେ ଓ ସମ୍ରାଟଙ୍କର ଝିଅକୁ ବିଭା ହେବା ପାଇଁ ଦାବୀ କରିଥିଲେ । ଏହା ଫଳରେ ଆଉରଙ୍ଗଜେବ ବଡ଼ ନିର୍ଦ୍ଦୟ ହୋଇ ତାଙ୍କ ଉପରେ ଏବଂ ତାଙ୍କ ଅନୁଚରବର୍ଗମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରିଥିଲେ । ତାଙ୍କ ଆଦେଶରେ ୧୬୮୯ ଖ୍ରୀ: ଅ: ମାର୍ଚ୍ଚ ମାସ ୧୧ ତାରିଖରେ ସେମାନଙ୍କର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗକୁ ଜୀବନ୍ତ ଅବସ୍ଥାରେ ଖଣ୍ଡ ଖଣ୍ଡ କରି କାଟି କୁକୁରମାନଙ୍କୁ ଖାଇବାକୁ ଦିଆଯାଇଥିଲା । ଏପରିକି ସେ ଆଉରଙ୍ଗଜେବଙ୍କୁ ଭର୍ତ୍ସନା କରିଥିବା ଯୋଗୁ ତାଙ୍କ ଜିଭକୁ କାଟି ଦିଆଗଲା ଏବଂ ଚକ୍ଷୁ ଅନ୍ଧ କରି ଦିଆଗଲା । ମୃତ୍ୟୁ ପରେ ସେମାନଙ୍କର ମୁଣ୍ଡ ମଧ୍ୟରେ ଚମ୍ପୁ ଓ ନଡ଼ା ଭର୍ତ୍ତିକରି ଦାକ୍ଷିଣାତ୍ୟର ପ୍ରଧାନ ପ୍ରଧାନ ନଗରରେ ସେଗୁଡ଼ିକୁ ପ୍ରଦର୍ଶନ କରାଇବା ପାଇଁ ପଠାଇ ଦିଆଯାଇଥିଲା । ଦୀର୍ଘ ଚଉଦ ଦିନ ପର୍ଯ୍ୟନ୍ତ ତାଙ୍କ ଉପରେ ଏହି ଅତ୍ୟାଚାର ହୋଇଥିଲା ।

ଯାହାହେଉ ଶମ୍ଭୁଜୀଙ୍କର ଏପରି ଅବସ୍ଥାରେ ମୃତ୍ୟୁ ଫଳରେ ମରହଟ୍ଟା ଶକ୍ତି ପୁନଶ୍ଚ ମୋଗଲମାନଙ୍କ ବିରୁଦ୍ଧରେ ସଙ୍ଗଠିତ ହୋଇ ମୋଗଲମାନଙ୍କୁ ବହୁ ଦିନ ପର୍ଯ୍ୟନ୍ତ ଅସ୍ତ୍ରବ୍ୟସ୍ତ କରିପକାଇ ମୋଗଲ ଶକ୍ତିକୁ ଦୁର୍ବଳ କରି ପକାଇଥିଲେ । ଶମ୍ଭୁଜୀଙ୍କର ଜୀବିତା-ବସ୍ଥାରେ ମରହଟ୍ଟାମାନେ ଯାହା କରିପାରି ନ ଥିଲେ, ତାଙ୍କ ମୃତ୍ୟୁ ପରେ ସେମାନେ ମୋଗଲମାନଙ୍କ ବିରୁଦ୍ଧରେ ଭୀଷଣ ଭାବରେ ଲଢ଼ିଥିଲେ ।

**ରାଜାରାମ :**

ଶମ୍ଭୁଜୀଙ୍କର ମୃତ୍ୟୁ ପରେ ମୋଗଲମାନେ ମରହଟ୍ଟାମାନଙ୍କ ସହିତ ଯୁଦ୍ଧକରି କେତେଗୁଡ଼ିଏ ଦୁର୍ଗ ଅଧିକାର କରିନେଲେ ଏବଂ ଶେଷରେ ଇତିକଦ୍ ଖାଁ **(Itiqad Khan)** ଶମ୍ଭୁଜୀଙ୍କର ରାଜଧାନୀ ରାୟଗଡ଼ ଆକ୍ରମଣ କଲେ । ଏହା ଦେଖି ଶମ୍ଭୁଜୀଙ୍କର ବୈମାତ୍ରୁକ ଭାଇ ରାଜାରାମ ସନ୍ନ୍ୟାସୀ ବେଶରେ ରାଜ୍ୟରୁ ପଳାଇ ଯାଇ ଜିଞ୍ଜି ଦୁର୍ଗରେ ଅବସ୍ଥାନ କଲେ । କିନ୍ତୁ ମୋଗଲମାନେ ରାଜାରାମ ଓ ଶମ୍ଭୁଜୀଙ୍କର ପରିବାରବର୍ଗ ଏବଂ ଶମ୍ଭୁଜୀଙ୍କର ସାତ ବର୍ଷର ନାବାଳକ ପୁତ୍ର ସାହୁଙ୍କୁ ବନ୍ଦୀ କରି ସେମାନଙ୍କ ଅଧୀନରେ ରଖିଲେ । ସାହୁଙ୍କର ଶିକ୍ଷା ପାଇଁ ଉପଯୁକ୍ତ ଶିକ୍ଷକ ନିଯୁକ୍ତ କରାଗଲା ଏବଂ ତାଙ୍କୁ ମାନସବାଦାର କରାଗଲା । ୧୬୮୯ ଖ୍ରୀ: ଅ: ରେ ଆଉରଙ୍ଗଜେବ ତାଙ୍କ ଶକ୍ତି ଓ ସାମର୍ଥ୍ୟର ଶେଷ ସୀମାରେ ପହଞ୍ଚିଥିଲେ ଏବଂ ଉତ୍ତର ବା ଦକ୍ଷିଣରେ ତାଙ୍କ ସାର୍ବଭୌମତ୍ୱକୁ କେହି ପ୍ରତିବାଦ କରିବାକୁ ସାହସ କରୁ ନ ଥିଲେ ।

ଶମ୍ଭୁଜୀଙ୍କୁ ଏପରି ନିର୍ଦ୍ଦୟ ଭାବରେ ହତ୍ୟା କରିବା ଏବଂ ସାହୁଙ୍କୁ ବନ୍ଦୀ କରିବା ଦ୍ୱାରା ମରହଟ୍ଟାମାନେ ଭୟଭୀତ ଓ ଦୁର୍ବଳ ନ ହୋଇ ମୋଗଲମାନଙ୍କ ସହିତ ପୁଣି ଯୁଦ୍ଧ କରିବା ପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ସାହୁଙ୍କ ଅନୁପସ୍ଥିତିରେ ରାଜାରାମ ଶାସନ କାର୍ଯ୍ୟ ପରିଚାଳନା କଲେ । ଶାନ୍ତାଜୀ ଘୋରପାରେ ଓ ଧନାଜୀ ଯାଦବ ତାଙ୍କୁ ରାଜ୍ୟ ପରିଚାଳନାରେ ସାହାଯ୍ୟ କଲେ । ଜିଞ୍ଜିରେ ପହଞ୍ଚି ସେ ଲୁପ୍ତ ହୋଇଥିବା ମରହଟ୍ଟା ଶକ୍ତିକୁ ପୁଣି ଏକତ୍ରୀକରଣ କରିବା ପାଇଁ ଚେଷ୍ଟା କଲେ । ଫଳରେ ବହୁ ସ୍ୱଦେଶାନୁରାଗୀ ବ୍ୟକ୍ତି ମରହଟ୍ଟା ରାଜ୍ୟକୁ ମୋଗଲ ସାମ୍ରାଜ୍ୟରୁ ଛଡ଼ାଇ ଆଣିବା ପାଇଁ ସଂକଳ୍ପ କଲେ । ଶାନ୍ତାଜୀ ଓ ଧନାଜୀ ମୋଗଲ ସାମ୍ରାଜ୍ୟ ଲୁଣ୍ଠନ କରି ଆତଙ୍କ ସୃଷ୍ଟି କଲେ । ରାଜାରାମ ଯେତେବେଳେ ତାଙ୍କ କର୍ମଚାରୀମାନଙ୍କୁ ଦାକ୍ଷିଣାତ୍ୟରେ ଥିବା ଛଅଟି ସୁବା ଏବଂ ମୋଗଲ ରାଜ୍ୟରୁ ଚୌଥ ଓ ସରଦେଶମୁଖୀ କର ଆଦାୟ କରିବା ପାଇଁ ପଠାଇଲେ, ସେତେବେଳେ ଆଉରଙ୍ଗଜେବ ଅତିଶୟ କ୍ରୁଦ୍ଧ ହୋଇ ମରହଟ୍ଟାମାନଙ୍କୁ ନିର୍ମୂଳ କରିଦେବା ପାଇଁ ନୂଆ ଯୋଜନା ଆବଶ୍ୟକ ବୋଲି ସ୍ଥିର କଲେ । ସେ ଜୁଲଫିକରଙ୍କୁ ୧୬୯୧ ଖ୍ରୀ: ଅ: ରେ ଜିଞ୍ଜି ଦୁର୍ଗ ଅବରୋଧ ପାଇଁ ପଠାଇଲେ । ଏହି ଅବରୋଧ ଦୀର୍ଘ ଆଠ ବର୍ଷ ପାଇଁ ସ୍ଥାୟୀ ହୋଇଥିଲା ।

ପଡ଼ୋଶୀ ରାଜ୍ୟର ଜମିଦାରମାନେ ରାଜାରାମଙ୍କୁ ମଧ୍ୟ ସାହାଯ୍ୟ କଲେ । ମରହଟ୍ଟା ବୀର ଶାନ୍ତାଜୀ ଘୋରପାରେ ଏବଂ ଧନାଜୀ ଯାଦବ ଖୁବ୍ ବୀରତ୍ୱର ସହିତ ଯୁଦ୍ଧ କରି ଦୁର୍ଗକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ମୋଗଲ ସୈନ୍ୟମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଲେ । ମୋଗଲମାନଙ୍କର ମରହଟ୍ଟାମାନଙ୍କୁ ଜୟ କରିବା ଆଶା ମଉଳିଗଲା । ସେମାନେ ପ୍ରଥମେ ଶାରଜା ଖାଁଙ୍କୁ ପରାସ୍ତ କଲେ । ୧୬୯୫ ଖ୍ରୀ: ଅ: ରେ ଏବଂ ୧୬୯୬ ଖ୍ରୀ: ଅ: ରେ ଶାନ୍ତାଜୀ କାସୀମ ଖାଁ ଓ ହିମନ୍ତ ଖାଁ ନାମକ ଦୁଇ ଜଣ ମୋଗଲ ସେନାପତିଙ୍କୁ ପରାସ୍ତ କଲେ । କିନ୍ତୁ ୧୬୯୮ ଖ୍ରୀ: ଅ: ର ଜାନୁଆରି ମାସରେ ମୋଗଲମାନେ ନିର୍ଣ୍ଣୀ ଦ୍ୱାରା ଜିଞ୍ଜି ଦୁର୍ଗ ମଧ୍ୟରେ ପ୍ରବେଶ କରି ମରହଟ୍ଟାମାନଙ୍କୁ ପରାସ୍ତ କଲେ । ଏହା ଦେଖି ରାଜାରାମ ସାତାରାକୁ ପଳାୟନ କଲେ । ସେଠାରେ ରାଜାରାମ ପୁନଶ୍ଚ ବୀର ସିଲ୍ଲାଦାର ଓ ବାରଗୀରମାନଙ୍କୁ ଏକତ୍ର କରି ଗୋଟିଏ ବିରାଟ ସୈନ୍ୟବାହିନୀ ଗଠନ କଲେ । ମରହଟ୍ଟା ସେନାପତିମାନେ ମଧ୍ୟ ଜଣକ ପରେ ଜଣେ ତାଙ୍କ ସହିତ ଯୋଗ ଦେବାରୁ, ସେ ଖାନ୍ଦେଶ, ବେରାର ଓ ବେରାର ଆକ୍ରମଣ କରି ଲୁଣ୍ଠନ କଲେ ଏବଂ ରାଜ୍ୟମାନଙ୍କ ଉପରେ ଚୌଥ ଓ ସରଦେଶମୁଖୀ କର ବସାଇଲେ । କିନ୍ତୁ ଦାକ୍ଷିଣାତ୍ୟରେ ମୋଗଲ ସେନାପତିମାନେ ପରସ୍ପର କଳହରତ ହେବାରୁ, ୧୬୯୯ ଖ୍ରୀ: ଅ: ରେ ଆଉରଙ୍ଗଜେବ ନିଜେ ୮୧ ବର୍ଷ ବୟସରେ ମରହଟ୍ଟା-ମାନଙ୍କୁ ସମୂଳେ ପରାସ୍ତ କରିବା ପାଇଁ ଅଭିଯାନ ଆରମ୍ଭ କଲେ ଏବଂ ସାତରା ଦୁର୍ଗ ଅବରୋଧ କଲେ । ଦୁର୍ଭାଗ୍ୟକୁ ରାଜାରାମ ୧୭୦୦ ଖ୍ରୀ: ଅ. ରେ ମୃତ୍ୟୁବରଣ କରିବାରୁ ମରହଟ୍ଟାମାନେ ପରାସ୍ତ ହୋଇ ଆଉରଙ୍ଗଜେବଙ୍କ ସହିତ ସନ୍ଧି ସ୍ଥାପନ କଲେ ଏବଂ ସାତରା ଦୁର୍ଗରେ ମୋଗଲ ପତାକା ଉତ୍ତୋଳନ କରାଗଲା ।

**ତାରାବାଈ :**

ସାହୁ ବନ୍ଦୀ ଥିବାରୁ, ରାଜାରାମଙ୍କ ପରେ ତାଙ୍କ ପୁତ୍ର କରନ୍ ସିଂହାସନ ଆରୋହଣ କଲେ । କିନ୍ତୁ ସେ ବସନ୍ତ ରୋଗରେ ସିଂହାସନ ଆରୋହଣ କରିବାର ତିନି ସପ୍ତାହ ପରେ ମୃତ୍ୟୁବରଣ କରିବାରୁ, ରାଜାରାମଙ୍କର ବିଧବା ପତ୍ନୀ ତାରାବାଈ ତାଙ୍କର ପୁତ୍ର ତୃତୀୟ ଶିବାଜୀଙ୍କୁ ସିଂହାସନ ଆରୋହଣ କରାଇଲେ । କିନ୍ତୁ ସେ ନାବାଳକ ଥିବାରୁ ତାରାବାଈ ତାଙ୍କର ଅଭିଭାବକ ହୋଇ ଶାସନ କାର୍ଯ୍ୟ ପରିଚାଳନା କଲେ । ତାଙ୍କର ଶାସନ କାର୍ଯ୍ୟରେ ବହୁ ଅଭିଜ୍ଞତା ଓ ଦକ୍ଷତା ଥିଲା । ସେ ଖୁବ୍ ଚତୁରା ଓ ବୁଦ୍ଧିମତୀ ଥିବାରୁ ତାଙ୍କର ସ୍ୱାମୀଙ୍କର ଜୀବିତାବସ୍ଥାରେ ତାଙ୍କୁ ଶାସନ କାର୍ଯ୍ୟରେ ଏବଂ ସାମରିକ କ୍ଷେତ୍ରରେ ସୁପରାମର୍ଶ ଓ ସାହାଯ୍ୟ ଦେଉଥିଲେ । ଏହି ଶାସନ ଓ ସାମରିକ କାର୍ଯ୍ୟରେ ପରଶୁରାମ ତ୍ରିମ୍ବକ, ଧନାଜୀ ଯାଦବ ଏବଂ ଶଙ୍କରଜୀ ନାରାୟଣ ଖୁବ୍ ନିଷ୍ଠାର ସହିତ ତାରାବାଈଙ୍କୁ ସାହାଯ୍ୟ କରୁଥିଲେ । ସେ ମରହଟ୍ଟାମାନଙ୍କୁ ପୁଣି ଏକତ୍ରିତ କରି ସୈନ୍ୟବାହିନୀ ଗଠନ କଲେ । ତାରାବାଈ ଏହାପରେ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ବାସ ନ କରି ଇତସ୍ତତଃ ଭାବରେ ଭ୍ରମଣ

କଲେ ଏବଂ ମରହଟ୍ଟା ସୈନ୍ୟମାନଙ୍କୁ ପ୍ରେରଣ କରି ଗୁଜରାଟ, ବିଜାପୁର, ଗୋଲକୁଣ୍ଡା ଓ ବେରାର ପ୍ରଭୃତି ଅଞ୍ଚଳ ଲୁଣ୍ଠନ କଲେ । ଏପ୍ରକାର ଆକ୍ରମଣର ପ୍ରତିଶୋଧ ନେବା ମୋଗଲମାନଙ୍କ ପକ୍ଷରେ ସମ୍ଭବ ହୋଇ ନ ଥିଲା । ମରହଟ୍ଟା ସୈନ୍ୟମାନେ ଯେତେବେଳେ ଦ୍ରୁତ ଗତିରେ ବହୁଦୂରକୁ ସହଜରେ ଯାଇ ପାରୁଥିଲେ, ସେତେବେଳେ ବିରାଟ ମୋଗଲ-ବାହିନୀ ପକ୍ଷରେ ଗୋଟିଏ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବା ସମୟସାପେକ୍ଷ ଥିଲା । ମରହଟ୍ଟାମାନେ ସମ୍ମୁଖ ଯୁଦ୍ଧ ନ କରି ଗରିଲା ଯୁଦ୍ଧକୌଶଳ ଅବଲମ୍ବନ ପୂର୍ବକ ନିଜର ଇଚ୍ଛାମତେ ରାଜ୍ୟ ଲୁଣ୍ଠନ କରି ଇତସ୍ତତଃ ପଳାୟନ କରୁଥିଲେ । ଏଣୁ ସେମାନଙ୍କୁ ପରାସ୍ତ କରିବା ମୋଗଲ ସୈନ୍ୟମାନଙ୍କ ପକ୍ଷରେ ବଡ଼ କଠିନ ବ୍ୟାପାର ଥିଲା । ତେବେ ମଧ୍ୟ ମୋଗଲମାନେ ୧୭୦୦ ଖ୍ରୀ: ଅ:ରୁ ୧୭୦୪ ଖ୍ରୀ: ଅ: ମଧ୍ୟରେ ପାର୍ଲୀ, ପାନ୍‌ହାଲା, କୋଣ୍ଡନା, ଖେଲନା, ରାୟଗଡ଼ ଏବଂ ତୋର୍ଣ୍ଣା ପ୍ରଭୃତି ଦୁର୍ଗ ଅଧିକାର କରିନେଲେ ।

ତଥାପି ଶେଷ ପର୍ଯ୍ୟନ୍ତ ଆଉରଙ୍ଗଜେବ ମରହଟ୍ଟାମାନଙ୍କୁ ସଂପୂର୍ଣ୍ଣ ଭାବେ ଦମନ କରି ପାରିଲେ ନାହିଁ । କାରଣ ସାତରା ଦୁର୍ଗ ଅବରୋଧ ପରେ ସେ ପୀଡ଼ିତ ହୋଇ ପଡ଼ିଲେ ଏବଂ ବହୁକଷ୍ଟରେ ଅହମଦାବାଦକୁ ଆସି ସେଠାରେ ବିଶ୍ରାମ ନେଲେ । ଜୀବନର ଶେଷ-ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ହିନ୍ଦୁମାନଙ୍କୁ ଭଲ ଦୃଷ୍ଟିରେ ଦେଖି ପାରିଲେ ନାହିଁ । ଏହାଫଳରେ ଅଣମୁସଲମାନମାନେ ତାଙ୍କ ପ୍ରତି ସର୍ବଦା ଶତ୍ରୁତା ଆଚରଣ କରିବାରୁ, ମୋଗଲସାମ୍ରାଜ୍ୟ ପତନର ସଙ୍କେତ ମୃତ୍ୟୁ ପୂର୍ବରୁ ଜାଣି ସାରିଥିଲେ । ୧୭୦୭ ଖ୍ରୀ: ଅ: ର ଫେବୃଆରି ମାସ ୨୦ ତାରିଖରେ ସେ ପ୍ରାଣତ୍ୟାଗ କଲେ । ତାଙ୍କ ମୃତ୍ୟୁ ପରେ ମଧ୍ୟ ମରହଟ୍ଟାମାନଙ୍କର ମୋଗଲରାଜ୍ୟ ଆକ୍ରମଣ ତଥା ଲୁଣ୍ଠନ କରିବା ବନ୍ଦ ହେଲନାହିଁ । ଆଉରଙ୍ଗଜେବ ବହୁ ନିଷ୍ଠା, ଶକ୍ତି, ସାମର୍ଥ୍ୟ ଏବଂ ଅର୍ଥ ବିନିମୟରେ ମଧ୍ୟ ମରହଟ୍ଟା ଜାତିକୁ ପରାସ୍ତ କରି ପାରି ନ ଥିଲେ ।



# ସପ୍ତମ ଅଧ୍ୟାୟ

## ଧର୍ମନୀତି

ସମ୍ରାଟ ଆକବର ହିନ୍ଦୁବହୁଳ ଭାରତରେ ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନ କରିଥିଲେ । ଏଣୁ ସେ ନିଜର ଦୂରଦୃଷ୍ଟି ଯୋଗୁ ହିନ୍ଦୁମାନଙ୍କର ସହଯୋଗରେ ଭାରତରେ ମୋଗଲ ସାମ୍ରାଜ୍ୟର ମୂଳଭିତ୍ତି ସ୍ଥାପନ କରିଥିଲେ । ସବୁ ଧର୍ମପ୍ରତି ତାଙ୍କର ଅନୁରାଗ ଥିବାରୁ, ସେ ସବୁ ଧର୍ମକୁ ରାଜ୍ୟରେ ସମାନ ଅଧିକାର ଦେଇଥିଲେ । କିନ୍ତୁ ତାଙ୍କର ଉତ୍ତରାଧିକାରୀମାନେ କ୍ରମେ କ୍ରମେ ହିନ୍ଦୁମାନଙ୍କ ପ୍ରତି ଅସହିଷ୍ଣୁ ଭାବ ଦେଖାଇଲେ । ସମ୍ରାଟ ଶାହାଜାହାନଙ୍କ ଶାସନକାଳରୁ ଏହି ନୀତି ଯଥାର୍ଥ ଭାବରେ ଅନୁସୃତ ହୋଇ ନଥିବାର ପରିଦୃଷ୍ଟ ହେଉଥିଲେ ମଧ୍ୟ, ଆଉରଙ୍ଗଜେବଙ୍କ ସମୟରୁ ଏହା ଅତ୍ୟନ୍ତ ଭାବରେ ପ୍ରତୀୟମାନ ହେଲା । ତାଙ୍କର ଧର୍ମପ୍ରତି ରକ୍ଷଣଶୀଳ ମନୋଭାବ ଜୀବନର ପ୍ରାରମ୍ଭରୁହିଁ ଜଣାପଡ଼ିଥିଲା । କାରଣ ୧୬୪୪ ଖ୍ରୀ: ଅ: ରେ ଯେତେବେଳେ ସେ ଗୁଜରାଟର ମୁଖ୍ୟ ଶାସନକର୍ତ୍ତା ଥିଲେ, ସେତେବେଳେ ଏଲହାବାଦରେ ଥିବା ବିଖ୍ୟାତ ଚିନ୍ତାମଣି ମନ୍ଦିର ପ୍ରାଙ୍ଗଣରେ ଗୋଟିଏ ଗାଈକୁ ହତ୍ୟା କରି ମନ୍ଦିରର ପବିତ୍ରତା ନଷ୍ଟ କରିଥିଲେ ଏବଂ ଏହି ମନ୍ଦିରକୁ ମସଜିଦ୍‌ରେ ପରିଣତ କରିଥିଲେ । ସମ୍ରାଟ ହେଲାପରେ ସେ ତାଙ୍କର ନୀତିକୁ ଅବାଧରେ ରାଜ୍ୟରେ ପ୍ରୟୋଗ କରିବା ପାଇଁ ସୁଯୋଗ ପାଇଲେ ଏବଂ ତାହାଦ୍ୱାରା ହିନ୍ଦୁ ଧର୍ମ ପ୍ରତି ତାଙ୍କର ମନୋଭାବ ସୁସ୍ପଷ୍ଟ ହୋଇଥିଲା ।

**ଧର୍ମନୀତି :**

ସେ ନୈଷ୍ଠିକ ସୁନ୍ନୀ ସମ୍ପ୍ରଦାୟର ମୁସଲମାନ ଥିବାରୁ ନିଜ ଧର୍ମରେ ତାଙ୍କର ଅଗାଧ ବିଶ୍ୱାସ ଥିଲା ଏବଂ ଅଣ-ମୁସଲମାନ ଧର୍ମର ନୀତିକୁ ସତ୍ୟ ରୂପେ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିବାରୁ, ସେ ସବୁ ତାଙ୍କ ପକ୍ଷରେ ଅସହ୍ୟ ହେଉଥିଲା । ସେ ଜାଣିଥିଲେ ଯେ ଭାରତବର୍ଷ ଗୋଟିଏ "ପ୍ରଭୁଭକ୍ତ ଦେଶ" (Land of Faithful) । ଏଣୁ ଏହି ରାଜ୍ୟରେ "ପିତୁଳା ପୂଜା" ପଦ୍ଧତିକୁ ସେ ସହ୍ୟ କରି ପାରି ନ ଥିଲେ ଏବଂ ଧର୍ମର ଅଗ୍ରଗତି ପାଇଁ ସେ ହିନ୍ଦୁ ଧର୍ମ ପ୍ରତି ଅସହନଶୀଳତା ଦେଖାଉଥିଲେ । ରାଜନୈତିକ ଦୃଷ୍ଟିକୋଣରୁ ତାଙ୍କର ବୁଝିବା ଉଚିତ ଥିଲା ଯେ ହିନ୍ଦୁମାନଙ୍କର ସହଯୋଗ ବିନା ମୋଗଲ ସାମ୍ରାଜ୍ୟ ଭାରତରେ ତିଷ୍ଠିବା ଅସମ୍ଭବ । ସେ ଆକବରଙ୍କର ଉଦାର ଧର୍ମନୀତିର ପ୍ରକୃତ ଅର୍ଥ ବୁଝିପାରି ନ ଥିଲେ । ତେଣୁ ସେ ନିଜର ଧର୍ମପ୍ରତି ଏକାଗ୍ରତା ଦେଖାଇ ଏକ ଅନୁଦାର ଧର୍ମନୀତି ଗ୍ରହଣ କରିଥିବାରୁ, ଭବିଷ୍ୟତରେ ମୋଗଲ ସାମ୍ରାଜ୍ୟ ପ୍ରତି ବିପଦକୁ ଆମନ୍ତ୍ରଣ

କରିଥିଲେ । ଯାହାଫଳରେ ମୋଗଲ ସାମ୍ରାଜ୍ୟ ତାଙ୍କ ମୃତ୍ୟୁ ପରେ ଖୁବ୍ ଶୀଘ୍ର ଧ୍ୱଂସ ହୋଇ ଯାଇଥିଲା । ସେ କୌଣସି ବିଷୟକୁ ଖାତିର ନ କରି, ନିଜ ଧର୍ମର ନିୟମ କାନୁନ୍‌କୁ ନିଷ୍ଠାର ସହିତ ପାଳନ କରି, ରାଜ୍ୟର ମୁସଲମାନ ଗୋଷ୍ଠୀଙ୍କୁ ପ୍ରଭାବିତ କରାଇ ପାରୁଥିଲେ । ସେ ଏତେଦୂର ନୈଷ୍ଠିକ, ଧର୍ମ ବିଶ୍ୱାସୀ ତଥା ଆଦର୍ଶ ପୁରୁଷ ଥିଲେ ଯେ ମୁସଲମାନମାନେ ତାଙ୍କୁ "ଜିନ୍ଦା ପୀର" ବା ଜୀବନ୍ତ ସାଧୁପୁରୁଷ ବୋଲି କହୁଥିଲେ ।

ସିଂହାସନ ଆରୋହଣ ପାଇଁ ଭ୍ରାତୃଯୁଦ୍ଧ ଯୋଗୁ ପ୍ରଜାମାନେ ଜୀବନର ନିତ୍ୟପତ୍ରର ଅଭାବ ଓ କର ଭାରରେ ଅକଥନୀୟ ଦୁଃଖ ଭୋଗ କରୁଥିଲେ । କାରଣ ଏହି ବିଦ୍ରୋହ ବେଳେ ରାଜ୍ୟର ସୈନ୍ୟ ପରିଚାଳନା ଯୋଗୁ ଫସଲ ନଷ୍ଟ ହେଉଥିଲା । କିନ୍ତୁ ପ୍ରଜାମାନଙ୍କ ଉପରେ କରଭାର କମୁ ନ ଥିଲା । ଏଣୁ ସିଂହାସନ ଆରୋହଣ ପରେ ସେ ପ୍ରଜାମାନଙ୍କର ଏହି ଦୁଃଖର ଅବସାନ ପାଇଁ ରାଜପଥର ସୀମାନ୍ତରେ ଆଦାୟ ହେଉଥିବା ରାହଦାରି **(Rahdari)** କର ଉଠାଇଦେଲେ । ଲୋକମାନଙ୍କ ଉପରୁ ପଣ୍ଡାରି **(Pandari)** ନାମକ ଗୃହକର ବା ପଣ୍ଡିଆ କର ମଧ୍ୟ ସେ ଉଠାଇ ଦେଇଥିଲେ । ହିନ୍ଦୁ ଓ ମୁସଲମାନଙ୍କ ଉପରୁ ଯାତ୍ରା ବା ମେଳାରେ ଆଦାୟ ହେଉଥିବା କର ସେ ବନ୍ଦ କରି ଦେଇଥିଲେ । ଖାଦ୍ୟପଦାର୍ଥର ଦରଦାମ୍ କମାଇ ଦେବା ପାଇଁ ସେ ଶସ୍ୟ ଉପରୁ ଶୁଳ୍କ ଛାଡ଼ି କରି ଦେଇଥିଲେ । ଏହିପରି ଭାବରେ ସେ ପ୍ରାୟ ୮୦ ପ୍ରକାର କର ରାଜ୍ୟରୁ ଉଠାଇ ଦେଇ ପ୍ରଜାମାନଙ୍କ ମଧ୍ୟରେ ଶାନ୍ତି ଓ ଶୃଙ୍ଖଳା ଆଣିବାକୁ ଚେଷ୍ଟା କରିଥିଲେ । ଏଣୁ ଆଉରଙ୍ଗଜେବଙ୍କର ନିଜର ଧର୍ମପ୍ରତି ରକ୍ଷଣଶୀଳ ମନୋଭାବ ଥିଲେ ସୁଦ୍ଧା, ପ୍ରଥମରୁ ଏହା ଜଣାପଡ଼ି ନ ନ ଥିଲା । ବରଂ ତାଙ୍କର ଏ ପ୍ରକାର ବ୍ୟବହାରରେ ତାଙ୍କୁ ଉଦାରଚେତା ବୋଲି କୁହାଯାଇପାରେ ।

କିନ୍ତୁ ସମ୍ରାଟ ହୋଇ ସାରିବା ପରେ ସେ ହିନ୍ଦୁମାନଙ୍କ ବିରୁଦ୍ଧରେ କେତେକ ଆଦେଶ ଜାରିକଲେ; ଯଥା—ସେମାନଙ୍କର ମନ୍ଦିର ଧ୍ୱଂସ କରିବା, ସେମାନଙ୍କର ଧର୍ମ ପାଳନରେ ବାଧା ଦେବା, ହିନ୍ଦୁମାନଙ୍କର ମେଳା ଓ ଯାତ୍ରା ଉପରେ ନିଷେଧାଜ୍ଞା ଜାରି କରିବା ଇତ୍ୟାଦି । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ସେ ହିନ୍ଦୁମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରୁଥିଲେ । ସିଂହାସନ ଆରୋହଣବେଳେ ସେ ଯେତିକି ସୁଯୋଗ ହିନ୍ଦୁମାନଙ୍କୁ ଦେଇଥିଲେ, ଠିକ୍ ପରେ ପରେ ସେ ତାହା ପ୍ରତ୍ୟାହାର କରି ନେଇଥିଲେ ।

## ନୈତିକବାଦୀ :

ମାନୁଚିଙ୍କ ମତରେ ସେ ଜଣେ ଖୁବ୍ ଉଚ୍ଚକୋଟୀର ନୈତିକବାଦୀ ଥିଲେ । ରାଜ୍ୟରେ ସାଧାରଣ ନୈତିକ ମାନଦଣ୍ଡ ବଢ଼ାଇବା ପାଇଁ ସେ ମୁସଲମାନ ଧର୍ମ ସହିତ କୌଣସି ସମ୍ପର୍କ ନ ରଖି କେତେକ ବିଧିବିଧାନ ପ୍ରଣୟନ କରିଥିଲେ । ତାଙ୍କ ରାଜତ୍ୱର

ଏକାଦଶ ବର୍ଷରେ ରାଜଦରବାରର ସଙ୍ଗୀତଜ୍ଞମାନେ ଦରବାରରେ ଉପସ୍ଥିତ ରହୁଥିଲେ ମଧ୍ୟ ସଙ୍ଗୀତ ପରିବେଷଣ ତଥା ନୃତ୍ୟ ପ୍ରଦର୍ଶନ ପାଇଁ ରାଜଦରବାରରେ ନିଷେଧାଜ୍ଞା ଜାରି କରାଯାଇଥିଲା । ପୂର୍ବରୁ ସମ୍ରାଟମାନେ ଝରୋକା-ଦର୍ଶନ ପ୍ରଥା ଯୋଗୁ ପ୍ରଜାମାନଙ୍କର ସଂସ୍ପର୍ଶରେ ଆସି ସେମାନଙ୍କର ଅଭିଯୋଗ ନିଜେ ବୁଝି ତା'ର ପ୍ରତିକାର କରୁଥିଲେ । କିନ୍ତୁ ଏହି ପ୍ରଥା ବ୍ୟକ୍ତି ପୂଜାକୁ ଉତ୍ସାହିତ କରେ ବୋଲି ସେ ତାହା ବନ୍ଦ କରି ଦେବାରୁ ପ୍ରଜାମାନେ ସମ୍ରାଟଙ୍କଠାରୁ ସମସ୍ତ ସମୟରେ ଠିକ୍ ନ୍ୟାୟ ପାଇ ପାରିଲେ ନାହିଁ । ରାଜତ୍ୱର ଦ୍ୱାଦଶ ବର୍ଷରେ ସୁନା, ରୁପା ଓ ଅନ୍ୟାନ୍ୟ ମୂଲ୍ୟବାନ ପଦାର୍ଥକୁ ରଖି ସମ୍ରାଟଙ୍କ ଓଜନ ହେବା ପ୍ରଥା ମଧ୍ୟ ସେ ବନ୍ଦ କରି ଦେଇଥିଲେ । କାରଣ ଏହା ଏକ ହିନ୍ଦୁ ପ୍ରଥା ବୋଲି ତାଙ୍କର ହୃଦୟଙ୍ଗମ ହୋଇଥିଲା । ପ୍ରଥମେ ପ୍ରଥମେ ଆଉରଙ୍ଗଜେବ ହିନ୍ଦୁମାନଙ୍କର ଦଶହରା ପର୍ବରେ ନିଜେ ଯୋଗ ଦେଉଥିଲେ । କିନ୍ତୁ ପରେ ଆଉ ଯୋଗ ଦେଲେ ନାହିଁ । ସେ ନୌରଜ ( Nauroz ) ପ୍ରଥା ଉଠାଇ ଦେଇଥିଲେ । ସାର୍ ଯଦୁନାଥ ସରକାରଙ୍କ ମତରେ ସେ ଲୋକମାନଙ୍କର ଜୀବନ ଗତିକୁ ପବିତ୍ର ମୁସଲମାନ ଧର୍ମାନୁସାରେ ନିୟନ୍ତ୍ରଣ କରିବା ପାଇଁ ସାଧାରଣ ନୈତିକ ସମୀକ୍ଷା କର୍ମଚାରୀ (Censor of Public Morals) ମାନଙ୍କୁ ନିଯୁକ୍ତ କରିଥିଲେ । ଏହାଛଡ଼ା ପୁରାତନ ମସଜିଦ୍‌ମାନ ପୁନଃନିର୍ମାଣ କରାଗଲା । ମୁସଲମାନ କର୍ମଚାରୀମାନେ ନିୟମିତ ଦରମା ପାଇ ଏହି ମସ୍‌ଜିଦ୍‌ମାନଙ୍କରେ ନିଯୁକ୍ତ ହେଲେ । ଯେଉଁ ମେଧାବୀ ଛାତ୍ରମାନେ ଧର୍ମଚର୍ଚ୍ଚା କରି ଉନ୍ନତି ଦେଖାଇ ପାରିଲେ, ସେମାନଙ୍କୁ ଦୈନିକ ଭତ୍ତା ଦିଆଗଲା । ପ୍ରଥମେ ଯେଉଁ ହିନ୍ଦୁ ରାଜାମାନେ ମୋଗଲ ଦରବାରରେ ଉପସ୍ଥିତ ରହୁଥିଲେ ସେ ସେମାନଙ୍କ କପାଳରେ ଟୀକା ଦେଉଥିଲେ । କିନ୍ତୁ ଏହି ପଦ୍ଧତି ହିନ୍ଦୁ ଧର୍ମର ଏକ ଅଂଶବିଶେଷ ମନେକରି ପରେ ତାହା ସେ ବନ୍ଦ କରି-ଦେଲେ । ଚିରାଚରିତ ପ୍ରଥା ଅନୁସାରେ ରାଜକର୍ମଚାରୀମାନେ ପରସ୍ପରକୁ ସାକ୍ଷାତ କଲାବେଳେ ପ୍ରଣାମ କରି ସମ୍ବର୍ଦ୍ଧନା ଜଣାଉଥିଲେ । ସେ ଏହି ପ୍ରଥା ବନ୍ଦ କରିଦେଇ କର୍ମଚାରୀମାନେ ପରସ୍ପରକୁ ସାକ୍ଷାତ କଲାବେଳେ ପରସ୍ପରକୁ "ସାଲାମ ଅଲେକମ୍" ବୋଲି ଉଚ୍ଚାରଣ କରିବେ ବୋଲି ଆଦେଶ ଦେଲେ । ରାଜ ଦରବାରରେ ସୁବାସିତ ଧୂପବତୀ ଜାଳିବା ବନ୍ଦ କରି ଦିଆଗଲା । ବେଶ୍ୟା ଓ ନର୍ତ୍ତକୀମାନେ ବୈବାହିକ ଜୀବନ ନିର୍ବାହ କରିପାରନ୍ତୁ କିମ୍ବା ରାଜ୍ୟ ଛାଡ଼ି ଚାଲିଯାଇ ପାରନ୍ତି ବୋଲି ସେ ନିର୍ଦ୍ଦେଶ ଦେଇଥିଲେ । ଏହି ଆଦେଶ ସମ୍ଭ୍ରାନ୍ତ ମୋଗଲମାନଙ୍କୁ ସୁହାଇଲା ନାହିଁ । କାରଣ ସେମାନଙ୍କ ପକ୍ଷରେ ଏମାନଙ୍କ ବ୍ୟତୀତ ଜୀବନନିର୍ବାହ କରିବା କଷ୍ଟକର ହୋଇପଡ଼ିଲା । ଭାଙ୍ଗ ରୁଷି କରିବା ଓ ତାହାକୁ ସର୍ବସାଧାରଣରେ ବ୍ୟବହାର କରିବା ଏବଂ ଜୁଆ ଖେଳକୁ ସେ ରାଜ୍ୟରେ ବନ୍ଦ କରି ଦେଇଥିଲେ । ମଦ୍ୟପାନ ରାଜ୍ୟରେ ନିଷିଦ୍ଧ କରି ଦିଆ ଯାଇଥିଲା । ଯେଉଁମାନେ ଅତ୍ୟଧିକ ସୁରାପାନ କରୁଥିଲେ ସେମାନଙ୍କର ଗୋଟିଏ ହାତ ଓ ଗୋଟିଏ ଗୋଡ଼ କାଟିଦେବା ପାଇଁ କୋଟୁଆଲକୁ ଆଦେଶ ଦିଆଯାଇଥିଲା । ସତୀଦାହ ପ୍ରଥା ବନ୍ଦ କରିବାକୁ ସେ ରାଜ୍ୟରେ ନିର୍ଦ୍ଦେଶ ଦେଇଥିଲେ ମଧ୍ୟ ତାହା ବନ୍ଦ ହୋଇ ନ ଥିଲା ।

ସଙ୍ଗୀତ ପ୍ରତି ତାଙ୍କର ଅନୁରାଗ ନ ଥିଲା । ଆମୋଦ ପ୍ରମୋଦ ପାଇଁ ତାଙ୍କଠାରେ ସମସ୍ତ ଅଭାବ ଥିବାର ଆଳ ଦେଖାଇ ସେ ରାଜ୍ୟରେ ଗୀତ ଗାଇବା ବନ୍ଦ କରି ଦେଇଥିଲେ ଏବଂ ସଙ୍ଗୀତ ପରିବେଷଣକାରୀ ଦଳକୁ ମଧ୍ୟ ରାଜ୍ୟରେ ରହିବା ପାଇଁ ଅନୁମତି ଦେଉ ନ ଥିଲେ । ଏପରିକି ମହାପୁରୁଷମାନଙ୍କର ମୃତ୍ୟୁ ଦିବସରେ ମଧ୍ୟ ଧର୍ମ ସଙ୍ଗୀତ ପରିବେଷଣ କରିବା ପାଇଁ ସେ ବାରଣ କରିଥିଲେ । କିନ୍ତୁ ଦରବାରରୁ ଏହି ସଙ୍ଗୀତ ପରିବେଷଣକୁ ବାରଣ କରା ଯାଇଥିଲେ ମଧ୍ୟ ମୋଗଲ ସମ୍ଭ୍ରାନ୍ତ ବଂଶୀୟ ଲୋକମାନେ ଗୁପ୍ତରେ ସଙ୍ଗୀତକୁ ଉତ୍ସାହିତ କରି ଆମୋଦ ପ୍ରମୋଦରେ ଜୀବନ କଟାଇବାକୁ ଲାଗିଲେ । ସେ ସମସ୍ତର ଫେସନକୁ ମଧ୍ୟ ନିଜ ଆୟତ୍ତାଧୀନରେ ରଖିବା ପାଇଁ ସେ ଚେଷ୍ଟା କରିଥିଲେ । ମାନୁଚିଙ୍କ ମତରେ ଦାଢ଼ୀର ଲମ୍ବ ନିର୍ଦ୍ଧାରଣ କରିଥିଲେ ଏବଂ ଯେଉଁମାନଙ୍କର ଦାଢ଼ୀର ଲମ୍ବ ବେଶୀ ବୋଲି ଜଣା ପଡୁଥିଲା, ସେମାନଙ୍କୁ ନିର୍ଦ୍ଧାରିତ ଦାଢ଼ୀର ଲମ୍ବ ରଖିବା ପାଇଁ ବାଧ୍ୟ କରା-ଯାଉଥିଲା । ରାଜ୍ୟରେ ବହୁତ ଲୋକ ଦାଢ଼ୀ ଶ୍ରେଷ୍ଠ କରିବା କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ସୁନା-ଜରି ଲଗା ପୋଷାକ ନ ପିନ୍ଧିବା ପାଇଁ ସେ ନିର୍ଦ୍ଦେଶ ଦେଇଥିଲେ । ପାଇଜାମାର ଲମ୍ବ କେତେ ହେବ ତାହା ମଧ୍ୟ ସ୍ଥିର ହୋଇଥିଲା । ସମ୍ଭ୍ରାନ୍ତବଂଶୀୟ ଲୋକମାନଙ୍କର ସମାଧି ମନ୍ଦିର ଉପରେ ଆଲୋକ ଜାଳିବା ପାଇଁ ସେ ନିଷେଧାଜ୍ଞା ଜାରି କରିଥିଲେ । ଯେଉଁ ମୁସଲମାନମାନେ ଇସଲାମ ଧର୍ମକୁ ଖଣ୍ଡନ କରି ପୁସ୍ତକମାନ ଲେଖୁଥିଲେ ଏବଂ ଯେଉଁ ଫକୀରମାନେ ନିଜକୁ ଈଶ୍ୱରଙ୍କର ଅବତାର ବୋଲି ଭାବୁଥିଲେ, ସେମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯାଉଥିଲା । ୧୬୬୯ ଖ୍ରୀ: ଅ: ରେ ସେ ମହରମ ଉତ୍ସବ ବନ୍ଦକରି ଦେଇଥିଲେ । ଅହମଦାବାଦର ଶାସକ ମହରମ୍ ଉତ୍ସବ ପାଳନ କରିଥିବା ଯୋଗୁ, ସେ ତାଙ୍କୁ ଶାସନକର୍ତ୍ତା ପଦରୁ ବହିଷ୍କାର କରି ଦେଇଥିଲେ । କାରଣ ସେ ଉତ୍ସବକୁ ଆଦୌ ପସନ୍ଦ କରୁ ନ ଥିଲେ । ସେହିପରି ଭାବରେ ଜନୈକ ପର୍ତ୍ତୁଗୀଜ ପ୍ରଥମେ ଇସଲାମ ଧର୍ମ ଗ୍ରହଣ କରି ପରେ ପୁଣି ଖ୍ରୀଷ୍ଟିଆନ ଧର୍ମାବଲମ୍ବୀ ହେବାରୁ ତାଙ୍କୁ ହତ୍ୟା କରାଯାଇଥିଲା ଏବଂ ଯେଉଁମାନେ ଖଲିଫାମାନଙ୍କୁ ଗାଳି ଦେଉଥିଲେ ସେମାନଙ୍କୁ ମଧ୍ୟ ମୃତ୍ୟୁଦଣ୍ଡ ଦିଆଯାଉଥିଲା ।

ଏଥିରୁ ଅନୁମାନ କରାଯାଏ ଯେ ସେ ଜଣେ ଅତି ଉଚ୍ଚକୋଟୀର ନୀତିବାଦୀ ଥିଲେ । ଏଣୁ ନୈତିକତା ପ୍ରତି ଲକ୍ଷ୍ୟ ରଖି ସେ ନିଜ ଧର୍ମ ପ୍ରତି ପ୍ରଗାଢ଼ ନିଷ୍ଠା ଓ ଏକାଗ୍ରତା ଦେଖାଉଥିଲେ । ଏଣୁ ତାଙ୍କର ଏହି ରକ୍ଷଣଶୀଳ ମନୋଭାବ ଯୋଗୁ ଅନେକ ସମୟରେ ତାଙ୍କୁ ହିନ୍ଦୁମାନଙ୍କର ପରମ ଶତ୍ରୁ ବୋଲି ଲୋକେ ଭାବୁଥିଲେ । ନିଜର ଧର୍ମପ୍ରତି ତାଙ୍କର ଏତେ ଆସକ୍ତି ଓ ବିଶ୍ୱାସ ଥିଲା ଯେ ମୁସଲମାନ ଧର୍ମର ବିଧିବିଧାନରୁ ସେ ତିଳେହେଲେ ନିଜେ ବିଚ୍ୟୁତ ହେଉ ନ ଥିଲେ ।

**ହିନ୍ଦୁ ବିଦ୍ୱେଷ ନୀତି :**

ମୋଗଲମାନେ ହିନ୍ଦୁମାନଙ୍କର ସହାୟତାରେ ଭାରତରେ ସାମ୍ରାଜ୍ୟ ସ୍ଥାପନ

କରିଥିବାରୁ, ମୋଗଲ ଶାସନର ବିଭିନ୍ନ କ୍ଷେତ୍ରରେ ସେମାନଙ୍କର ଉପସ୍ଥିତି ସର୍ବଦା ପ୍ରୟୋଜନୀୟ ବୋଲି ମନେ କରି ଯାଉଥିଲା । ଏଥିପାଇଁ ପୂର୍ବରୁ ବହୁତ ହିନ୍ଦୁମାନଙ୍କୁ ମାନସବଦାର ପଦରେ ନିଯୁକ୍ତ କରି ଯାଇଥିଲା । ମୋଗଲ ଶାସନ କ୍ଷେତ୍ରରେ ବିଭିନ୍ନ ପଦବୀମାନଙ୍କରେ ଆକବର ହିନ୍ଦୁ ଓ ମୁସଲମାନମାନଙ୍କୁ ସମାନ ସୁଯୋଗ ଦେଇଥିଲେ । ଆକବରଙ୍କ ସମୟରେ ଶହେ ଶତଚରିଶି ଜଣ ଏକହଜାରୀ ମାନସବଦାରମାନଙ୍କ ମଧ୍ୟରୁ ଚଉଦ ଜଣ ମାନସବଦାର ହିନ୍ଦୁ ଥିଲେ । ଜାହାଙ୍ଗୀରଙ୍କର ରାଜତ୍ୱ କାଳରେ ଶତଷ୍ଟାଳିଶିଜଣ ତିନିହଜାରୀ ମାନସବଦାରଙ୍କ ମଧ୍ୟରୁ ଛଅ ଜଣ ହିନ୍ଦୁ ଥିଲେ । ଶାଜାହାନଙ୍କ ଶାସନ କାଳର ଏକତିରିଶି ବର୍ଷରେ ଏହି ମାନସବଦାର ସଂଖ୍ୟା ବଢ଼ାଇ ଦିଆଯାଇଥିଲା ଏବଂ ଦୁଇ ଶହ ଏକଷ୍ଟାଳିଶି ଜଣ ଏକ ହଜାରୀ ମାନସବଦାରଙ୍କ ମଧ୍ୟରୁ ଏକାବନ ଜଣ ହିନ୍ଦୁ ମାନସବଦାର ଥିଲେ । ଆଉରଙ୍ଗଜେବଙ୍କ ବିଦ୍ରୋହ ସମୟରେ ଯୋଧପୁରର ମହାରାଜା ଯଶୋବନ୍ତ ସିଂହ ମୋଗଲ ଶାସନ କ୍ଷେତ୍ରରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିଥିଲେ । ସେହିପରି ଶାଜାହାନଙ୍କ ସମୟରେ ରାୟ-ଇ-ରାୟାଣ ରଘୁନାଥ ବା ରାଜା ରଘୁନାଥ **(Rai-i-Rayan Raghunath)** ରାଜକୀୟ ରାଜସ୍ୱ ବିଭାଗର ମନ୍ତ୍ରୀ ଥିଲେ । ଏଣୁ ଆଉରଙ୍ଗଜେବ ଯେତେବେଳେ ତାଙ୍କ ପିତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ, ସେତେବେଳେ ହିନ୍ଦୁମାନେ ମୋଗଲ ଶାସନକ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ପଦବୀରେ ନିଯୁକ୍ତ ହୋଇଥିଲେ ।

ଶାସନକ୍ଷେତ୍ରରେ ନିମ୍ନ ପଦବୀ ରାଜସ୍ୱ ଓ ହିସାବ ବିଭାଗରେ ହିନ୍ଦୁମାନଙ୍କର ଏକଚାଟିଆ କ୍ଷମତା ଥିଲା । କାରଣ ମୁସଲମାନମାନେ ଏହି ବିଭାଗରେ ଧାରାବାହିକ କାର୍ଯ୍ୟ କରିବା ପାଇଁ ଭଲ ପାଉ ନ ଥିଲେ । ଏଣୁ ସେମାନେ ସୈନ୍ୟ ବିଭାଗରେ ଯୋଗଦେବା ପାଇଁ ସର୍ବଦା ମନ ବଳାଉ ଥିଲେ । ଅଧିକାଂଶ ମୁଖ୍ୟ କାର୍ଯ୍ୟନିର୍ବାହୀ **(Executive Heads)** ବିଭାଗରେ କେବଳ ହିନ୍ଦୁମାନେ ବ୍ୟକ୍ତିଗତ ସହକାରୀ **(Personal Assistant)** ରୂପେ କାର୍ଯ୍ୟ କରୁଥିଲେ । ଫଳରେ ଆଉରଙ୍ଗଜେବ ସିଂହାସନ ଆରୋହଣ କଲା ବେଳକୁ ମୋଗଲ ଶାସନ କ୍ଷେତ୍ରରେ ହିନ୍ଦୁମାନେ ପ୍ରବଳ ପ୍ରଭାବ ବିସ୍ତାର କରି ପାରିଥିଲେ । ଆଉରଙ୍ଗଜେବ କିନ୍ତୁ ଏହି ନିଯୁକ୍ତି ବନ୍ଦ କରିଦେଲେ । ହିନ୍ଦୁମାନଙ୍କୁ ଶାସନ କ୍ଷେତ୍ରରେ ସେ ଉଚ୍ଚାସନ ଦେଲେ ନାହିଁ ଏବଂ ସେମାନଙ୍କର ଏହି ଏକଚାଟିଆ ଅଧିକାରକୁ ସେ ଆଦୌ ବରଦାସ୍ତ କରିପାରିଲେ ନାହିଁ ।

ସେ ସମ୍ରାଟ ହେଲାବେଳେ କେବଳ ଦୁଇ ଜଣ ହିନ୍ଦୁ ରାଜା ଜୟସିଂହ ଓ ମହାରାଜା ଯଶୋବନ୍ତ ସିଂହ ମୋଗଲ ଶାସନର ସାମରିକ କ୍ଷେତ୍ରରେ ଚରମ ସୀମାରେ ଅବସ୍ଥାପିତ ହୋଇଥିଲେ ଏବଂ ଆଉଜଣେ ହିନ୍ଦୁ ରାଜା ରଘୁନାଥ ରାଷ୍ଟ୍ର ରାଜସ୍ୱ ବିଭାଗର ମୁଖ୍ୟ ସଚିବ ଥିଲେ । ସେମାନେ ଖୁବ୍ ପରାକ୍ରମୀ, ଅଭିଜ୍ଞ ଓ ସର୍ବୋଚ୍ଚ କର୍ମଚାରୀ ଥିବାରୁ ଆଉରଙ୍ଗଜେବ

କେବଳ ଏହି ତିନି ଜଣ ହିନ୍ଦୁଙ୍କୁ ଶାସନ କ୍ଷେତ୍ରରେ ଉପେକ୍ଷା କରିପାରି ନ ଥିଲେ । ଏହି ତିନି ଜଣ ହିନ୍ଦୁ ଆଉରଙ୍ଗଜେବଙ୍କର ହିନ୍ଦୁ ବିରୋଧ ଧର୍ମନୀତିର ପ୍ରଧାନ ପ୍ରତିବନ୍ଧକକାରୀ ଥିଲେ; କିନ୍ତୁ ଏମାନଙ୍କ ମୃତ୍ୟୁ ପରେ ସେ ଅବାଧରେ ନିଜର ଧର୍ମନୀତିକୁ ରାଜ୍ୟରେ ପ୍ରୟୋଗ କଲେ । ତାଙ୍କ ଶାସନ କାଳର ଅପରାହ୍ନରେ ହିନ୍ଦୁ ମାନସବଦାରଙ୍କ ସଂଖ୍ୟା ଖୁବ୍ କମାଇ ଦିଆଯାଇଥିଲା । ଆହକାମ-ଇ-ଆଲମଗିରିରେ ରାଜପୁତମାନଙ୍କୁ ଫୌଜଦାର ବା ରାଜ୍ୟପାଳ ପଦବୀରେ ନିଯୁକ୍ତି ନ ଦେବା ପାଇଁ ସେ ଆଦେଶ ଦେଇଥିବାର ସୂଚନା ମିଳେ । ଏପରିକି ମୋଗଲ ରାଜପୁତ୍ରମାନେ ଯେତେବେଳେ ଇନ୍ଦ୍ରସିଂହ, ବାହାଦୂର ସିଂହଙ୍କର କାର୍ଯ୍ୟ କୁଶଳତା ପାଇଁ ଅଧିକ ବେତନ ଦେବାପାଇଁ ସମ୍ରାଟଙ୍କଠାରୁ ସୁପାରିଶ କଲେ, ସେତେବେଳେ ସମ୍ରାଟ ତାହାକୁ ନାକଚ କରିଦେଇଥିଲେ । କଲିମାତ୍-ଇ-ତଇବାତରେ ହିନ୍ଦୁମାନଙ୍କୁ ଶାସନ କ୍ଷେତ୍ରରେ ନିଯୁକ୍ତି ନ ଦେବା ପାଇଁ ସେ ଆଦେଶ ଦେଇଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏହି ଶାସନ କ୍ଷେତ୍ରରେ ହିନ୍ଦୁମାନଙ୍କୁ ପ୍ରବେଶ କରାଇ ନ ଦେବା ପାଇଁ ସେ ଏକ ଆଇନ ପ୍ରଣୟନ କଲେ । ତାଙ୍କ ସମୟରେ ହିନ୍ଦୁମାନଙ୍କୁ କେବଳ କିରାଣୀ ଶ୍ରେଣୀରେ ନିଯୁକ୍ତି ଦିଆ ଯାଉଥିଲା । ଏହା ମଧ୍ୟ ସେ ବାଧ୍ୟ ହୋଇ କରୁଥିଲେ । କାରଣ ମୁସଲମାନମାନେ ଏହି ଧାରାବାହିକ କିରାଣୀ କାର୍ଯ୍ୟ ଅପେକ୍ଷା ସୈନ୍ୟ ବିଭାଗରେ ନିଯୁକ୍ତି ପାଇଁ ଖୁବ୍ ପସନ୍ଦ କରୁଥିଲେ । ଯେଉଁ ହିନ୍ଦୁମାନେ ମୁସଲମାନ ଧର୍ମ ଗ୍ରହଣ କରୁଥିଲେ, କେବଳ ସେହିମାନଙ୍କୁ ହିଁ ଶାସନ କ୍ଷେତ୍ରରେ ଉଚ୍ଚ ଶ୍ରେଣୀ ମିଳୁଥିଲା ୧୬୭୦ ଖ୍ରୀ: ଅ: ନଭେମ୍ବର ମାସ ୧୯ ତାରିଖରେ ସେ ନିର୍ଦ୍ଦେଶ ଦେଲେ ଯେ ମୁସଲମାନମାନେ ହିନ୍ଦୁମାନଙ୍କ ଅଧୀନରେ ଅଧସ୍ତନ କର୍ମଚାରୀ ଭାବେ କାର୍ଯ୍ୟ କରିପାରିବେ ନାହିଁ । ଏପରିକି ସୈନ୍ୟ ବିଭାଗରେ ସୈନ୍ୟ ବିଭାଗରେ ମଧ୍ୟ ହିନ୍ଦୁମାନେ ମୁସଲମାନ ଭୃତ୍ୟ ରଖି ପାରୁ ନ ଥିଲେ ।

**ହିନ୍ଦୁ ମନ୍ଦିର ଧ୍ୱଂସ :**

ଏହାପରେ ସେ ହିନ୍ଦୁମାନଙ୍କର ମନ୍ଦିରମାନ ଧ୍ୱଂସ କରିଦେବା ପାଇଁ ଅଭିଯାନ ଆରମ୍ଭ କଲେ । ୧୬୬୯ ଖ୍ରୀ: ଅ: ରେ ବାରଣାସୀର ପ୍ରସିଦ୍ଧ ବିଶ୍ୱନାଥ ମନ୍ଦିର ଏବଂ ବିଖ୍ୟାତ ସୋମନାଥ ମନ୍ଦିର ଧ୍ୱଂସ କରିଦେଲେ । ଓଡ଼ିଶାରେ ନୂତନ ମନ୍ଦିର ନିର୍ମାଣ ଏବଂ ପୁରାତନ ମନ୍ଦିରର ମରାମତି ସବୁ ସେ ବନ୍ଦ କରିଦେଲେ । ସେହିପରି ମଥୁରାରେ ଥିବା ବିଖ୍ୟାତ କେଶବରାୟ ମନ୍ଦିରକୁ ସମ୍ପୂର୍ଣ୍ଣ ଭାବେ ଧ୍ୱଂସ କରି ମାଟି ସହିତ ମିଶାଇ ଦେଇଥିଲେ ଏବଂ ସେ ସ୍ଥାନରେ ସେ ମସଜିଦ୍ ନିର୍ମାଣ କରାଇଥିଲେ । ମହାରାଜା ଯଶୋବନ୍ତ ସିଂହଙ୍କର ମୃତ୍ୟୁପରେ ଯୋଧପୁରର ବହୁ ମନ୍ଦିର ସେ ଧ୍ୱଂସ କରି ବହୁତ ଧନରତ୍ନ ବୋହି ଆଣିଥିଲେ । ଉଦୟପୁରରେ ମଧ୍ୟ ସେ ୨୩୫ଟି ମନ୍ଦିର ଭାଙ୍ଗି ଚୁରମାର କରି ଦେଇଥିଲେ । ଏହା ବ୍ୟତୀତ ଜୟପୁର, ମହାରାଷ୍ଟ୍ର, ଗୋଲକୁଣ୍ଡା, ବିଜାପୁର, ଅଯୋଧ୍ୟା ଓ ଦ୍ୱାରକାରେ ଯେତେ

ହିନ୍ଦୁ ମନ୍ଦିର ଥିଲା ସେଗୁଡ଼ିକୁ ଧ୍ୱଂସ କରି ଦିଆଯାଇ, ସେସବୁ ସ୍ଥାନରେ ସେହି ମନ୍ଦିର-ଗୁଡ଼ିକର ପଥରରେ ସେ ମସଜିଦ୍‌ମାନ ନିର୍ମାଣ କରାଇଥିଲେ । ୧୬୭୦ ଖ୍ରୀ: ଅ: ପୂର୍ବରୁ ଓଡ଼ିଶାର କେଦାରପୁରଠାରେ ଥିବା ଏକ ମନ୍ଦିରକୁ ଭାଙ୍ଗି ଦେଇଥିଲେ । ଏହି ମନ୍ଦିର ସବୁ ଧ୍ୱଂସ କରିବା ପାଇଁ ସେ ଜନୈକ କର୍ମଚାରୀଙ୍କୁ ନିଯୁକ୍ତ ଦେଇଥିଲେ । ତାଙ୍କର ନିର୍ଦ୍ଦେଶରେ କେତେକ ହିନ୍ଦୁ ମନ୍ଦିରରେ ପୂଜା ପ୍ରାର୍ଥନା କରିବା ମଧ୍ୟ ବନ୍ଦ କରି ଦିଆ-ଯାଇଥିଲା ।

**ଯାତ୍ରୀ କର :**

ସମ୍ରାଟ ଆକବରଙ୍କ ରାଜତ୍ୱ କାଳରେ ହିନ୍ଦୁମାନଙ୍କ ଉପରୁ ଯାତ୍ରୀକର **(Pilgrim tax)** ଉଠାଇ ଦିଆଯାଇଥିଲା । କିନ୍ତୁ ଆଉରଙ୍ଗଜେବଙ୍କ ସମୟରେ ହିନ୍ଦୁ-ମାନଙ୍କଠାରୁ ଯାତ୍ରୀକର ପୁଣି କଠୋର ଭାବରେ ଆଦାୟ କରାଗଲା । ଏହାଫଳରେ ମୋଗଲ ରାଜକୋଷକୁ ବିପୁଳ ଭାବରେ ଅର୍ଥାଗମର ରାସ୍ତା ଖୋଲିଗଲା । ହିନ୍ଦୁମାନଙ୍କ ଉପରେ ସେ ଆହୁରି କେତେକ କଟକଣା ମଧ୍ୟ ଜାରି କଲେ । ଦିଓ୍ୱାଳୀ ଓ ହୋଲି ଉତ୍ସବ ପୂରାପୂରି ବନ୍ଦ କରି ଦିଆଗଲା । ହିନ୍ଦୁମାନେ ଅହମଦାବାଦର ସାବରମତୀ ଓ ଦିଲ୍ଲୀର ଯମୁନାନଦୀ କୂଳରେ ଶବଦାହ କରି ପାରିବେ ନାହିଁ ବୋଲି ନିଷେଧାଜ୍ଞା ଜାରି କଲେ । ଫତଓ୍ୟା-ଇ-ଆଲମଗିରିରୁ ଜଣାପଡ଼େ ଯେ ହିନ୍ଦୁ ଓ ମୁସଲମାନମାନଙ୍କର ଚାଲିଚଳନ, ଜୀବନଯାପନ ପ୍ରଣାଳୀରେ ସାମଞ୍ଜସ୍ୟ ନ ରହିବା ପାଇଁ ସେ ବ୍ୟବସ୍ଥା କରିଥିଲେ । ଏଣୁ ମରହଟ୍ଟା ଓ ରାଜପୁତ୍‌ମାନଙ୍କ ଛଡ଼ା ଅନ୍ୟ ଅଣ-ମୁସଲମାନମାନେ ଘୋଡ଼ା, ହାତୀ ଓ ସବାରୀ ଚଢ଼ି ପାରିବେ ନାହିଁ ବୋଲି ସେ ଘୋଷଣା କଲେ । ସେମାନେ ମଧ୍ୟ ସର୍ବ-ସାଧାରଣରେ ଅସ୍ତ୍ରଧାରଣ କରିପାରିବେ ନାହିଁ ବୋଲି ମାସିର୍-ଇ-ଆଲମଗିରିରୁ ସୂଚନା ମିଳେ ।

ମିରାତ୍-ଇ-ଅହମଦିରୁ ଜଣାପଡ଼େ ଯେ ହିନ୍ଦୁମାନେ ଶତକଡ଼ା ପାଞ୍ଚ ଭାଗ ଶୁଳ୍କ ଦେଉଥିବାବେଳେ, ମୁସଲମାନମାନେ ଶତକଡ଼ା ଅଢ଼େଇ ଭାଗ ଶୁଳ୍କ ଦେଉଥିଲେ । ସେହିପରି ହିନ୍ଦୁମାନେ ବଗିଚାରୁ ଉତ୍ପନ୍ନ ହେଉଥିବା ଦ୍ରବ୍ୟ ଉପରେ ଶତକଡ଼ା କୋଡ଼ିଏ ଭାଗ କର ଦେଉଥିଲାବେଳେ, ମୁସଲମାନମାନେ ୧୬.୬ ଭାଗ କର ଦେଉଥିଲେ । ୧୬୬୯-୭୦ ଖ୍ରୀ: ଅ: ରେ ସେ ଆଦେଶ ଦେଲେ ଯେ ହିନ୍ଦୁମାନେ ସେମାନଙ୍କର ଗୋ-ମେଷାଦି ମୂଲ୍ୟର ଶତକଡ଼ା ପାଞ୍ଚ ଭାଗ କର ଦେବେ ଏବଂ ମୁସଲମାନମାନେ ଶତକଡ଼ା ଅଢ଼େଇ ଭାଗ କର ଦେବେ ।

**ଜିଜିୟା କର :**

ଆଉରଙ୍ଗଜେବ ହିନ୍ଦୁମାନଙ୍କ ଉପରେ ଯେତେ ପ୍ରକାର କର ଧାର୍ଯ୍ୟ କରିଥିଲେ, ତା' ମଧ୍ୟରେ ଜିଜିୟା କର ଅନ୍ୟତମ ଅଟେ । ୧୬୭୯ ଖ୍ରୀ: ଅ: ରେ ସେ ମୁସଲମାନ

ଧର୍ମର ପ୍ରସାର ପାଇଁ ବିଧର୍ମୀମାନଙ୍କ ଉପରେ ଏହି କର ବସାଇଲେ । ବହୁ ହିନ୍ଦୁ ଏହି କର ଭାରରୁ ରକ୍ଷା ପାଇବା ପାଇଁ ମୁସଲମାନ ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହି କର କେବଳ ହିନ୍ଦୁ ନୁହେଁ, ସମସ୍ତ ଅଣ-ମୁସଲମାନମାନଙ୍କ ପ୍ରତି ପ୍ରଯୁଜ୍ୟ ଥିଲା । ସେମାନେ ନିଜେ ଯାଇ କର ଆଦାୟକାରୀ କର୍ମଚାରୀଙ୍କ ନିକଟରେ ଏହି କର ଦେଠ କରୁଥିଲେ ଏବଂ ମୋଗଲ ରାଜକୋଷକୁ ବହୁ ଅର୍ଥ ଆସୁଥିଲା । ଏହି କର ଦେବାବେଳେ ସେମାନେ ମୁସଲମାନ କର୍ମଚାରୀମାନଙ୍କ ଦ୍ୱାରା ବହୁ ଲାଞ୍ଛନା ମଧ୍ୟ ଭୋଗ କରୁଥିଲେ ।

ଅଣ-ମୁସଲମାନମାନେ ଏହି ଜିଜିୟା କର ଯୋଗୁ ଏତେ ଅସୁବିଧା ଓ ଦୁଃଖ ପାଉଥିଲେ ଯେ ସେମାନେ ଥରେ ସମସ୍ତେ ଏକାଠି ହୋଇ ସମ୍ରାଟଙ୍କଠାରେ ତାଙ୍କର ଗୁହାରି ଜଣାଇଲେ । ସେତେବେଳେ ସମ୍ରାଟ ମସଜିଦ୍‌କୁ ପ୍ରାର୍ଥନା କରିବାକୁ ଯାଉଥିଲେ ଏବଂ ସେମାନେ ତାଙ୍କର ରାସ୍ତା ଅବରୋଧ କରି ଏହି କର ଉଠାଇ ଦେବା ପାଇଁ ତାଙ୍କୁ ପ୍ରାର୍ଥନା କଲେ । ବାରମ୍ବାର ସମ୍ରାଟ ସେମାନଙ୍କୁ ରାସ୍ତାରୁ ଅପସରି ଯିବା ପାଇଁ କହିବା ସତ୍ତ୍ୱେ, ସେମାନେ ରାସ୍ତାରୁ ହଟି ନ ଯିବାରୁ, ସମ୍ରାଟ ଶେଷରେ ସେମାନଙ୍କ ଉପରେ ହାତୀ ଓ ଘୋଡ଼ା ମଡ଼ାଇ ଦେବା ପାଇଁ ଆଦେଶ ଦେଲେ । ଫଳରେ ବହୁ ଲୋକ ହାତୀ ଓ ଘୋଡ଼ା ଦ୍ୱାରା ଦଳି ହୋଇ ମୃତ୍ୟୁ ବରଣ କଲେ ।

ହିନ୍ଦୁମାନଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଇବା ପାଇଁ ସେ ବହୁ ପନ୍ଥା ଅନୁସରଣ କରିଥିଲେ । କେତେକ କ୍ଷେତ୍ରରେ ସେ ହିନ୍ଦୁମାନଙ୍କୁ ଉଚ୍ଚ ପଦବୀ ଗୁଡ଼ିକରୁ ଅପସାରଣ କରି ସେମାନଙ୍କ ସ୍ଥାନରେ ମୁସଲମାନମାନଙ୍କୁ ନିଯୁକ୍ତି ଦେଉଥିଲେ । ଜିଜିୟା କର ଦ୍ୱାରା ଅଣ-ମୁସଲମାନମାନଙ୍କୁ ଉତ୍ପୀଡ଼ନ କରି ମୁଖ୍ୟତଃ ସେମାନଙ୍କୁ ମୁସଲମାନ ଧର୍ମରେ ଦୀକ୍ଷିତ କରାଯାଉଥିଲା । ଏହା ଫଳରେ ବହୁ ହିନ୍ଦୁ ଏହି ଅବାଞ୍ଛିତ ନିର୍ଯ୍ୟାତନାରୁ ରକ୍ଷା ପାଇବା ପାଇଁ ମୁସଲମାନ ଧର୍ମ ଗ୍ରହଣ କରୁଥିଲେ ।

**ଫଳାଫଳ :**

ଆଉରଙ୍ଗଜେବଙ୍କର ଏହି ହିନ୍ଦୁ ବିଦ୍ୱେଷ ନୀତିର ଫଳାଫଳ ଖୁବ୍ ଭୟଙ୍କର ରୂପ ଧାରଣ କରିଥିଲା ଏବଂ ଅଣ-ମୁସଲମାନମାନଙ୍କ ମଧ୍ୟରେ ଗଭୀର ବିଶୃଙ୍ଖଳା ସୃଷ୍ଟି କରିଥିଲା । ତାଙ୍କର ପ୍ରପିତାମହ ଆକବର, ପିତାମହ ଜାହାଙ୍ଗୀର ଏବଂ ପିତା ଶାଜାହାନ ସମାଜରୁ ଧର୍ମଗତ ଓ ସାମାଜିକ ବିଭେଦକୁ ଦୂର କରିବା ପାଇଁ ସର୍ବଦା ଚେଷ୍ଟା କରିଥିଲେ । ସେମାନେ ସବୁ ଧର୍ମାବଲମ୍ବୀଙ୍କୁ ସମାନ ଚକ୍ଷୁରେ ଦେଖୁଥିଲେ । କିନ୍ତୁ ଆଉରଙ୍ଗଜେବ ଜଣେ ଧର୍ମାନ୍ଧ ଓ ନୈଷ୍ଠିକ ସୁନ୍ନୀ ସମ୍ପ୍ରଦାୟର ମୁସଲମାନ ହୋଇଥିବାରୁ ଅଣ-ମୁସଲମାନମାନଙ୍କୁ ନିର୍ଯ୍ୟାତିତ ତଥା ଲାଞ୍ଛିତ କରାଇବା ଏକ ପବିତ୍ର କାର୍ଯ୍ୟ ବୋଲି ଭାବୁଥିଲେ । କିନ୍ତୁ ଏହାର ଫଳ ଓଲଟା ହେଲା । ରାଜ୍ୟରେ ରାଜ୍ୟରେ ଘୋର ଅଶାନ୍ତି ଓ ବିଦ୍ରୋହ ବ୍ୟାପିଗଲା ।

ଆଉରଙ୍ଗଜେବ ରାଜନୀତି ସହିତ ଧର୍ମକୁ ସଂଯୋଗ କରି ମସ୍ତବଡ଼ ଭୁଲ କରିଥିଲେ । ଯାହା ଫଳରେ ହିନ୍ଦୁମାନଙ୍କର ମୋଗଲ ସାମ୍ରାଜ୍ୟ ପ୍ରତି ଟିକିଏ ହେଲେ ଅନୁରକ୍ତ ରହିଲ ନାହିଁ ।

## ରାଜପୁତ୍ ବିଦ୍ରୋହ :

ତାଙ୍କର ଏହି ଧର୍ମନୀତି ଯୋଗୁ ରାଜପୁତମାନେ ତାଙ୍କର ଦୁର୍ଦ୍ଧାନ୍ତ ଶତ୍ରୁ ହୋଇ ଉଠିଲେ । ରାଜପୁତମାନେ ସର୍ବଦା ମୋଗଲ ସାମ୍ରାଜ୍ୟର ଦୃଢ଼ସ୍ତମ୍ଭପରି ଅନ୍ତତରେ କାର୍ଯ୍ୟ କରିଥିଲେ । କିନ୍ତୁ ସେମାନଙ୍କର ଏପରି ପରିବର୍ତ୍ତନ ପାଇଁ ଆଉରଙ୍ଗଜେବଙ୍କର ଧର୍ମନୀତି ଓ ବିଶ୍ୱାସଘାତକତା ସମ୍ପୂର୍ଣ୍ଣ ଭାବରେ ଦାୟୀ । ରାଜପୁତମାନେ ତାଙ୍କର ଶେଷଜୀବନ ପର୍ଯ୍ୟନ୍ତ ମୋଗଲମାନଙ୍କ ସହିତ ଯୁଦ୍ଧ କରି ସେମାନଙ୍କୁ ଅସ୍ତବ୍ୟସ୍ତ କରି ପକାଇଥିଲେ । ମହାରାଜା ଯଶୋବନ୍ତ ସିଂହଙ୍କର ୧୬୭୮ ଖ୍ରୀ: ଅ: ରେ ମୃତ୍ୟୁ ପରେ ଆଉରଙ୍ଗଜେବ ରାଜପୁତମାନଙ୍କୁ ନିଜ ଅଧୀନକୁ ଆଣିବା ପାଇଁ ମାରବାର ଆକ୍ରମଣ କଲେ । ରାଜପୁତମାନେ ଏହାର ପ୍ରବଳ ବିରୋଧ କରି ୧୬୭୯ ଖ୍ରୀ: ଅ: ରେ ମୋଗଲମାନଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କଲେ । ଏହାଛଡ଼ା ଅନ୍ୟ କାରଣ ହେଲ ଯେ ଯଶୋବନ୍ତଙ୍କ ଦୁଇ ବିଧବା ପତ୍ନୀ ୧୬୭୯ ଖ୍ରୀ: ଅ: ରେ ଦୁଇଟି ସନ୍ତାନ ଜନ୍ମ କଲେ । କିନ୍ତୁ ଗୋଟିକର ଜନ୍ମ ପରେ ମୃତ୍ୟୁ ହେଲା ଏବଂ ଅନ୍ୟଟିର ନାମ ହେଲ ଅଜିତ୍ ସିଂହ । ଆଉରଙ୍ଗଜେବ ଅଜିତ୍ ସିଂହଙ୍କୁ ମାରବାରର ରାଜା ବୋଲି ସ୍ୱୀକାର କଲେ ନାହିଁ । ବରଂ ତାଙ୍କୁ ଆଣି ମୋଗଲ ଅନ୍ତଃପୁରରେ ରଖିବାକୁ ଚେଷ୍ଟା କଲେ । ଏଣୁ ରାଜପୁତମାନେ ବାଧ ହୋଇ ସେମାନଙ୍କର ଦାବୀ ପୂରଣ ହେବା ପର୍ଯ୍ୟନ୍ତ, ସେମାନଙ୍କର ନେତା ଦୁର୍ଗା ଦାସଙ୍କ ନେତୃତ୍ୱରେ ମୋଗଲମାନଙ୍କ ବିରୁଦ୍ଧରେ ଯୁଦ୍ଧ କରି, ମୋଗଲ ସାମ୍ରାଜ୍ୟର ମୂଳଭିତ୍ତିକୁ ଦୋହଲାଇ ଦେଇଥିଲେ । ପ୍ରସଙ୍ଗକ୍ରମେ ପୂର୍ବରୁ ବର୍ଣ୍ଣିତ ହୋଇଛି ଯେ ଏହି ରାଜପୁତମାନେ ଦୁର୍ଗା ଦାସଙ୍କର ବଳିଷ୍ଠ ନେତୃତ୍ୱରେ ମୋଗଲ ସାମ୍ରାଜ୍ୟର ଅପରି ଅପୂରଣୀୟ କ୍ଷତି କରିଥିଲେ ।

## ସତ୍‌ନାମୀ ବିଦ୍ରୋହ :

ଏମାନଙ୍କ ବ୍ୟତୀତ ସତ୍‌ନାମୀମାନେ ମଧ୍ୟ ଆରଙ୍ଗଜେବଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ । ଏମାନେ ହିନ୍ଦୁଧର୍ମାବଲମ୍ବୀ ଏବଂ ଯୋଦ୍ଧା ଶ୍ରେଣୀର ଲୋକ । ସେମାନେ ପ୍ରଧାନତଃ କୃଷିକାରୀ ଓ ବ୍ୟବସାୟୀ ଜାତିର ଲୋକ ଥିଲେ । କିନ୍ତୁ କୌଣସି ଅନ୍ୟାୟ ଓ ଅତ୍ୟାଚାରର ସହ୍ୟ କରିପାରୁ ନ ଥିଲେ । ଆଉରଙ୍ଗଜେବଙ୍କର ଧର୍ମନୀତି ଯୋଗୁ ସେମାନେ ବଡ଼ ଅସନ୍ତୁଷ୍ଟ ଥିଲେ ଏବଂ ମୋଗଲମାନଙ୍କ ବିରୁଦ୍ଧରେ ବିଦ୍ରୋହ କଲେ । ଏହାଛଡ଼ା ଜଣେ ମୋଗଲ ପଦାତିକ ସୈନ୍ୟ ଗୋଟିଏ ସତ୍‌ନାମୀ କୃଷକକୁ ହତ୍ୟା କରି-ବାରୁ, ସେମାନେ ସେହି ମୋଗଲ ସୈନ୍ୟକୁ ହତ୍ୟା କରି ବିଦ୍ରୋହ ଘୋଷଣା କଲେ । ଏହି ବିଦ୍ରୋହ ଧୀରେ ଧୀରେ ଧର୍ମକୈନ୍ଦ୍ରିକ ହୋଇପଡ଼ିଲ ଏବଂ ତାହା କ୍ରମେ କ୍ରମେ

ହିନ୍ଦୁମାନଙ୍କର ସ୍ୱାଧୀନତା ପାଇଁ ମୁକ୍ତ ଯୁଦ୍ଧରେ ପରିଣତ ହେଲା । ସତ୍‌ନାମୀମାନେ ଏହି ଯୁଦ୍ଧରେ ଜୟ ଲାଭ କରି ହିନ୍ଦୁମାନଙ୍କ ମଧ୍ୟରେ ସୁନାମ ଅର୍ଜନ କଲେ ଏବଂ କ୍ରମେ ସେମାନେ ଖୁବ୍ ଶକ୍ତିଶାଳୀ ହୋଇ ଉଠିଲେ । କିଛିଦିନ ପରେ ସେମାନେ ଦଳବଦ୍ଧ ହୋଇ ଆଉରଙ୍ଗଜେବଙ୍କ ଉପରେ ଆକ୍ରମଣ କରିବା ପାଇଁ ଦିଲ୍ଲୀ ଆଡ଼କୁ ଅଗ୍ରସର ହେଲେ । ମୋଗଲ ସାମ୍ରାଜ୍ୟର ଅବସ୍ଥା ସେତେବେଳକୁ ବଡ଼ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ଆଉରଙ୍ଗଜେବ ରାଦନ୍ଦାଜ ଖାଁଙ୍କୁ (Radandaz Khan) ଏକ ବିରାଟ ସୈନ୍ୟବାହିନୀ ସହିତ ସେମାନଙ୍କ ବିରୁଦ୍ଧରେ ବିଦ୍ରୋହ ଦମନ ପାଇଁ ପଠାଇ ଥିଲେ ଏବଂ ସତ୍‌ନାମୀମାନେ ସର୍ବଶେଷରେ ମୋଗଲମାନଙ୍କ ଦ୍ୱାରା ପରାସ୍ତ ହେଲେ ।

## ଜାଠ୍ ବିଦ୍ରୋହ :

ସେହିପରି ମଥୁରାର ଜାଠ୍‌ମାନେ ମୋଗଲମାନଙ୍କର ଯଥେଚ୍ଛାଚାରର ଶାସନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଥିଲେ । ମଥୁରାର ମୋଗଲ ଫୌଜଦାର ଜାଠ୍‌ମାନଙ୍କ ଉପରେ ଲାଞ୍ଛନା ଓ ନିର୍ଯ୍ୟାତନା କରିବାରୁ, ସେମାନେ ସେମାନଙ୍କର ନେତା ଗୋକଲଙ୍କ (Gokal) ନେତୃତ୍ୱରେ ବିଦ୍ରୋହ ଘୋଷଣା କଲେ । ୧୬୬୯ ଖ୍ରୀ: ଅ: ରେ ସେମାନେ ମୋଗଲ ଫୌଜଦାରଙ୍କୁ ହତ୍ୟାକରି ସମଗ୍ର ରାଜ୍ୟ ଲୁଣ୍ଠନ କଲେ । ପ୍ରାୟ ଏକ ବର୍ଷ କାଳ ମଥୁରାରେ ମୋଗଲ ଶାସନ ଲୋପ ପାଇଥିଲା । ଆଉରଙ୍ଗଜେବ ଏହା ଦେଖି ଜାଠମାନଙ୍କ ଉପରେ ଆକ୍ରମଣ କରିବା ପାଇଁ ଏକ ଶକ୍ତିଶାଳୀ ସୈନ୍ୟବାହିନୀ ପଠାଇଲେ ଏବଂ ଗୋକଲ ଧରାସ୍ତ ହୋଇ ନିଜ ପରିବାର ସହ ବନ୍ଦୀ ହେଲେ । ଶେଷରେ ତାଙ୍କୁ ହତ୍ୟା କରାଗଲା । ଏହା ସତ୍ତ୍ୱେ ମୋଗଲ ଓ ଜାଠମାନଙ୍କ ମଧ୍ୟରେ ଶାନ୍ତି ସ୍ଥାପିତ ହୋଇପାରିଲା ନାହିଁ । ମଥୁରାର ନୂଆ ଫୌଜଦାରଙ୍କ ଶାସନରେ ପ୍ରଜାମାନେ ଅଧିକ ଉତ୍ପୀଡ଼ିତ ହେବାରୁ ପୁଣି ଜାଠମାନେ ୧୬୮୬ ଖ୍ରୀ: ଅ: ରେ ସେମାନଙ୍କର ନୂଆ ନେତା ରାଜାରାମଙ୍କ ନେତୃତ୍ୱରେ ବିଦ୍ରୋହ ଘୋଷଣା କଲେ । ୧୬୯୧ ଖ୍ରୀ: ଅ: ରେ ଆଉରଙ୍ଗଜେବ ଜାଠମାନଙ୍କୁ ସମ୍ପୂର୍ଣ୍ଣ ରୂପେ ପରାସ୍ତ କଲେ ଏବଂ ରାଜାରାମଙ୍କୁ ହତ୍ୟା କଲେ । ତଥାପି ଆଉରଙ୍ଗଜେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଜାଠମାନେ ସେମାନଙ୍କର ନେତା ଚୁରାମଣଙ୍କ ନେତୃତ୍ୱରେ ସର୍ବଦା ବିଦ୍ରୋହ କରି ଚାଲିଲେ । ଚୁରାମଣ ଜାଠ କୃଷକମାନଙ୍କୁ ଏକ ଶକ୍ତିଶାଳୀ ସାମରିକ ଜାତିରେ ପରିଣତ କରିଥିଲେ । ସେମାନଙ୍କର ବିଦ୍ରୋହକୁ ଦମନ କରିବା ପାଇଁ ବହୁତ କଷ୍ଟ ମୋଗଲମାନଙ୍କୁ ସ୍ୱୀକାର କରିବାକୁ ପଡ଼ିଥିଲା । ଆଉରଙ୍ଗଜେବଙ୍କର ମୃତ୍ୟୁପରେ ସେମାନେ ଯଥେଷ୍ଟ ଶକ୍ତିଶାଳୀ ହୋଇ ଉଠିଲେ ।

## ବୁନ୍ଦେଲମାନଙ୍କର ବିଦ୍ରୋହ :

ମଧ୍ୟଭାରତର ବୁନ୍ଦେଲଖଣ୍ଡର ରାଜପୁତ୍‌ମାନେ ମଧ୍ୟ ଆଉରଙ୍ଗଜେବଙ୍କର ଧର୍ମନୀତି ଯୋଗୁ ଯୁଦ୍ଧ ଘୋଷଣା କରିଥିଲେ । ଗରିଲା ଯୁଦ୍ଧରେ ସେମାନେ ଏତେ ଧୁରନ୍ଧର ଥିଲେ ଯେ

ସେମାନଙ୍କୁ ପରାସ୍ତ କରିବା ସମ୍ରାଟ ଆକବରଙ୍କ ପକ୍ଷରେ ମଧ୍ୟ କଷ୍ଟସାଧ୍ୟ ହୋଇ ପଡ଼ିଥିଲା । ସେମାନଙ୍କର ନେତା ଚମ୍ପତରାୟ ଆଉରଙ୍ଗଜେବଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିଥିଲେ ମଧ୍ୟ କୃତକାର୍ଯ୍ୟ ହୋଇ ନ ପାରି ଶେଷରେ ଆତ୍ମହତ୍ୟା କରିଥିଲେ । କିନ୍ତୁ ତାଙ୍କର ଚତୁର୍ଥ ପୁତ୍ର ଛତ୍ରସାଲ ତାଙ୍କ ପିତାଙ୍କର ଅସମ୍ପୂର୍ଣ୍ଣ କାର୍ଯ୍ୟକୁ ସମ୍ପୂର୍ଣ୍ଣ କରାଇବା ପାଇଁ ବଦ୍ଧପରିକର ହେଲେ । ସେ ଜଣେ ଦୁର୍ଦ୍ଧର୍ଷ ଯୋଦ୍ଧା ଥିଲେ । ପିତାଙ୍କର ମୃତ୍ୟୁବେଳକୁ ତାଙ୍କୁ ମାତ୍ର ଏଗାର ବର୍ଷ ହୋଇଥିଲା । ଅତୀତରେ ସେ ଓ ତାଙ୍କ ସାନ ଭାଇ ଅଙ୍ଗଦ, ରଜା ଜୟସିଂହଙ୍କ ସେନାବାହିନୀରେ ଯୋଗଦେଇ ଶିବାଜୀଙ୍କ ବିରୁଦ୍ଧରେ ଯୁଦ୍ଧ କରିଥିଲେ । ଏହାଛଡ଼ା ସେ ମୋଗଲ ସେନାବାହିନୀରେ ଯୋଗଦେଇ ଖୁବ୍ ଦକ୍ଷତାର ସହିତ କାର୍ଯ୍ୟ କରିଥିଲେ । କିନ୍ତୁ ସମ୍ରାଟ ତାଙ୍କର ଏହି ତ୍ୟାଗ ଓ ଦକ୍ଷତାକୁ ସ୍ୱୀକାର ନ କରିବାରୁ ସେ ଶିବାଜୀଙ୍କର ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ସ୍ୱାଧୀନ ଭାବରେ ଜୀବନଯାପନ କରିବା ପାଇଁ ଉପାୟ ଚିନ୍ତାକଲେ । ବୁନ୍ଦେଲଖଣ୍ଡ ଓ ମାଲବର ଅଧିବାସୀମାନେ ହିନ୍ଦୁଧର୍ମ ଓ କ୍ଷତ୍ରିୟର ସମ୍ମାନ ବଜାୟ ରଖିବା ପାଇଁ ପ୍ରେରଣା ଓ ଉତ୍ସାହ ଦେଲେ । ଫଳରେ ସେ ମୋଗଲ-ମାନଙ୍କ ବିରୁଦ୍ଧରେ ବହୁ ଯୁଦ୍ଧରେ ଜୟଯୁକ୍ତ ହୋଇ ପୂର୍ବ ମାଲବରେ ସ୍ୱାଧୀନ ରାଜ୍ୟ ଗଠନ କରିବା ପାଇଁ ସମର୍ଥ ହୋଇ ପାରିଥିଲେ । ୧୭୩୧ ଖ୍ରୀ: ଅ: ରେ ମୃତ୍ୟୁବରଣ କଲାବେଳକୁ ସେ ବୁନ୍ଦେଲଖଣ୍ଡରୁ ମୋଗଲ ଶାସନ ସମ୍ପୂର୍ଣ୍ଣ ଭାବରେ ମୂଳପୋଛ କରିଦେଇଥିଲେ ।

## ଶିଖ୍‌ମାନଙ୍କ ବିଦ୍ରୋହ :

ଆଉରଙ୍ଗଜେବଙ୍କର ଧର୍ମନୀତି ଯୋଗୁ ଶିଖ୍ ସମ୍ପ୍ରଦାୟ ମଧ୍ୟ ଉତ୍ତ୍ୟକ୍ତ ହୋଇ ଉଠିଲେ । ହରକିଷାନ୍‌ଙ୍କ ମୃତ୍ୟୁ ପରେ ତେଗବାହାଦୂର ସେମାନଙ୍କର ନବମ ଗୁରୁ ହେଲେ । ସେ ହୋସିଅରପୁର ଜିଲ୍ଲାର ଆନନ୍ଦପୁରଠାରେ ଅବସ୍ଥାନ କରୁଥିଲେ । ଆଉରଙ୍ଗଜେବଙ୍କର ଏହି ହିନ୍ଦୁ ଧର୍ମ ବିଦ୍ୱେଷ ନୀତିକୁ ସେ ବିରୋଧ କରିବାରୁ ଏବଂ କାଶ୍ମୀରର ହିନ୍ଦୁମାନଙ୍କୁ ଆଉରଙ୍ଗଜେବଙ୍କର ଧର୍ମନୀତିକୁ ବିରୋଧ କରିବା ପାଇଁ ପ୍ରେରଣା ଦେବାରୁ ସେ ସମ୍ରାଟଙ୍କର କୋପଦୃଷ୍ଟିରେ ପଡ଼ିଥିଲେ । ତାଙ୍କର ଶିଷ୍ୟମାନେ ତାଙ୍କୁ "ସଚ୍ଚା ବାଦସାହ" ବୋଲି କହୁଥିଲେ । କାଫି ଖାଁଙ୍କ ମତରେ—"ଆଉରଙ୍ଗଜେବ ଶିଖ୍‌ମାନଙ୍କର ମନ୍ଦିର ଧ୍ୱଂସ କରିଦେବା ପାଇଁ ଆଦେଶ ଦେଇଥିଲେ ଏବଂ ଗୁରୁଙ୍କର ଯେଉଁ ପ୍ରତିନିଧିମାନେ ଲୋକମାନଙ୍କଠାରୁ ଧର୍ମ କର (Tithe) ଓ ଦାନ ଆଦାୟ କରୁଥିଲେ, ସେମାନଙ୍କୁ ଶିଖ୍‌ମାନଙ୍କ ନଗରରୁ ବହିଷ୍କାର କରିଦେବା ପାଇଁ ସେ ଆଦେଶ ଦେଲେ ।" ଏହାପରେ ତାଙ୍କୁ ଦିଲ୍ଲୀକୁ ଡକାଇ ଆଣି ମୁସଲମାନ ଧର୍ମଗ୍ରହଣ କରିବା ପାଇଁ ଆଉରଙ୍ଗଜେବ ବାଧ୍ୟ କରିଥିଲେ । କିନ୍ତୁ ସେ ସେଥିରେ ରାଜି ନ ହେବାରୁ ତାଙ୍କୁ ୧୬୭୫ ଖ୍ରୀ:ଅ: ରେ ହତ୍ୟା କରା ଯାଇଥିଲା । ଅନ୍ୟ ଏକ ଘଟଣାରୁ ଜଣାଯାଏ ଯେ ଯେହେତୁ ସେ ଶିଖ୍‌ମାନଙ୍କର ଗୁରୁଥିଲେ, ଏଣୁ ତାଙ୍କୁ କୌଣସି ଏକ ଅଲୌକିକ ଘଟଣା ଦେଖାଇବା ପାଇଁ ଆଦେଶ

ଦିଆଗଲା । ଏଥିରେ ସେ ରାଜି ହୋଇ ଖଣ୍ଡିଏ କାଗଜରେ ଯାଦୁମନ୍ତ୍ର ଲେଖି କହିଲେ ଯେ ଏହି ଲିଖିତ ମନ୍ତ୍ର ଦ୍ୱାରା ସେ ନିଜକୁ ଯେ କୌଣସି ଆଘାତରୁ ରକ୍ଷା କରି ପାରିବେ । ଏହାପରେ ଘାତକ ଯେତେବେଳେ ତାଙ୍କୁ ହତ୍ୟା କଲା, ସେତେବେଳେ "ମୁଣ୍ଡ ଦେଲି, କିନ୍ତୁ ଧର୍ମ ଦେଲି ନାହିଁ" ବୋଲି ସେ କାଗଜଟିରେ ଲେଖା ହୋଇଥିବାର ଦେଖାଗଲା । ତାଙ୍କପରେ ଗୁରୁ ଗୋବିନ୍ଦ ସିଂହ ଶିଖମାନଙ୍କର ଦଶମ ଗୁରୁ ହେଲେ ଏବଂ ପିତାଙ୍କର ମୃତ୍ୟୁର ପ୍ରତିଶୋଧ ନେବା ପାଇଁ ଦୃଢ଼ ଶପଥ ନେଲେ । ସେ ଶିଖ୍‌ମାନଙ୍କୁ ଏକ ନୂତନ ପ୍ରେରଣାରେ ଏକତାବଦ୍ଧ କଲେ ଏବଂ ସେମାନଙ୍କୁ ଯୁଦ୍ଧ ବିଦ୍ୟା ଶିକ୍ଷା ଦେଇ ଗୋଟିଏ ସୁଦୃଢ଼ ସେନାବାହିନୀ ଗଠନ କଲେ । ରାଜ୍ୟର ପାର୍ବତ୍ୟ ଅଞ୍ଚଳରେ ସେ ଦୁର୍ଗମାନ ନିର୍ମାଣ କଲେ । ଶିଖ୍‌ମାନଙ୍କୁ "ଖାଲସା" ବା ପବିତ୍ର ବୋଲି କୁହାଗଲା । ପ୍ରତ୍ୟେକ ଶିଖ୍ "ସିଂହ" ଉପାଧିରେ ଭୂଷିତ ହେଲେ । କେଶ, କଙ୍ଗ, କୃପାଣ, କଚ୍ଛ ଓ କଡ଼ା – ଏହି ପାଞ୍ଚୋଟି ପଦାର୍ଥ ପ୍ରତ୍ୟେକ ଶିଖ୍ ଧାରଣ କଲେ । ୧୬୯୫ ଖ୍ରୀ: ଅ: ଠାରୁ ସେ ଅବିଶ୍ରାନ୍ତ ଭାବରେ ପଞ୍ଜାବର ମୋଗଲ କର୍ମଚାରୀମାନଙ୍କ ବିରୁଦ୍ଧରେ ଯୁଦ୍ଧକରି ଜୟଯୁକ୍ତ ହେଲେ । କିନ୍ତୁ ଶେଷରେ ସେ ପରାସ୍ତ ହେଲେ ଏବଂ ତାଙ୍କର ଦୁଇ ପୁତ୍ରଙ୍କୁ ମୋଗଲମାନେ ବନ୍ଦୀ କରି ନେଲେ । ପରେ ଅତି ଦୟନୀୟ ଅବସ୍ଥାରେ ସେମାନଙ୍କୁ ହତ୍ୟା କରାଗଲା । କଥିତ ଅଛି ଯେ ଆଉରଙ୍ଗଜେବ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ଗୁରୁ ଗୋବିନ୍ଦ ସିଂହଙ୍କୁ ଅଭୟ ବାଣୀ ଶୁଣାଇ ତାଙ୍କୁ ନିମନ୍ତ୍ରଣ କରିଥିଲେ । କିନ୍ତୁ ଗୁରୁ ଗୋବିନ୍ଦ ସିଂହ ଏହି ନିମନ୍ତ୍ରଣ ରକ୍ଷାକରି ଆଉରଙ୍ଗଜେବଙ୍କ ସହିତ ସାକ୍ଷାତ କରିବା ପାଇଁ ବାଟରେ ଆସୁଥିବାବେଳେ ସମ୍ରାଟଙ୍କର ମୃତ୍ୟୁ ହେଲା ଏବଂ ଜଣେ ଆଫଗାନର ଛୁରୀ ମାଡ଼ରେ ଗୁରୁ ଗୋବିନ୍ଦ ସିଂହଙ୍କର ମଧ୍ୟ ମୃତ୍ୟୁ ହେଲା । ଗୁରୁ ଗୋବିନ୍ଦ ସିଂହଙ୍କ ପରେ ବନ୍ଦା ବାହାଦୁର ଶିଖ୍‌ମାନଙ୍କର ନେତା ହୋଇ ମୋଗଲମାନଙ୍କ ସହିତ ଯୁଦ୍ଧ ଚାଲୁ ରଖିଲେ ।

**ଇଂରେଜମାନଙ୍କ ସହିତ ସମ୍ପର୍କ :**

ଆଉରଙ୍ଗଜେବ ସର୍ବଦା ଅଣମୁସଲମାନମାନଙ୍କୁ ସହ୍ୟ କରିପାରୁ ନ ଥିଲେ ସତ; କିନ୍ତୁ ଖ୍ରୀଷ୍ଟିୟାନ ଇଂରେଜ ବଣିକମାନଙ୍କୁ ଭାରତରେ ବାଣିଜ୍ୟ କରିବାକୁ ସୁବିଧା ଓ ସୁଯୋଗ ଦେଇଥିଲେ । ଏହି ଇଂରେଜ ବଣିକମାନେ ମରହଟ୍ଟାମାନଙ୍କୁ ସୁରାଟ ଆକ୍ରମଣ ବେଳେ ଘୋର ବିରୋଧ କରିଥିବାରୁ, ସେ ୧୬୬୪ ଖ୍ରୀ: ଅ: ରେ ସେମାନଙ୍କ ଉପରେ ସନ୍ତୁଷ୍ଟ ହୋଇ ସେମାନଙ୍କର ଜିନିଷ ଉପରୁ ଆମଦାନୀ କର କମାଇ ଦେଇଥିଲେ । ସେହିପରି ବଙ୍ଗଦେଶର ଶାସନକର୍ତ୍ତା ଶାୟସ୍ତା ଖାଁ ଯେତେବେଳେ ୧୬୮୫ ଖ୍ରୀ: ଅ: ରେ ସେମାନଙ୍କ ଉପରେ ସ୍ଥାନୀୟ କର ବସାଇଲେ, ସେତେବେଳେ ସେମାନେ ତାହା ନ ମାନିବାରୁ ଆଉରଙ୍ଗଜେବ ସେମାନଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ସେମାନଙ୍କୁ ପରାସ୍ତ

କରିଥିଲେ । ସେହିଦିନଠାରୁ ବହୁବର୍ଷ ପର୍ଯ୍ୟନ୍ତ ଇଂରେଜମାନେ ବାଣିଜ୍ୟ କରିବା ବ୍ୟତୀତ ରାଜନୀତିରେ କୌଣସି ପ୍ରକାର ହସ୍ତକ୍ଷେପ କରିବାକୁ ସାହସ କଲେ ନାହିଁ ।

ଏହିପରି ଧର୍ମାନ୍ଧତା ଯୋଗୁ ଆଉରଙ୍ଗଜେବଙ୍କର ସମୟରୁ ମୋଗଲ ସାମ୍ରାଜ୍ୟର ପତନ ଅବଶ୍ୟମ୍ଭାବୀ ହୋଇ ପଡ଼ିଥିଲା । ଆଉରଙ୍ଗଜେବଙ୍କର ହିନ୍ଦୁଧର୍ମ ବିଦ୍ୱେଷ ନୀତି ମୋଗଲ ସାମ୍ରାଜ୍ୟ ପତନର ପ୍ରଧାନ କାରଣ ଥିଲା । ତାଙ୍କର ଏହି ନୀତି ଯୋଗୁ ରାଜ୍ୟର ଚାରିଆଡ଼େ ବିଦ୍ରୋହର ନିଆଁ ଜଳି ଉଠିଲା । ଏହି ନିଆଁକୁ ନିଜେ ସେ ତାଙ୍କ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଚେଷ୍ଟାକରି ନିର୍ବାପିତ କରିପାରି ନ ଥିଲେ । ରାଜତ୍ୱର ପ୍ରଥମ ଦଶନ୍ଧିରେ ସେ ନିଜର ପରାକ୍ରମ, ଦକ୍ଷତା ଓ କୂଟନୀତି ଯୋଗୁ ଏହିସବୁ ସମସ୍ୟାର ସମ୍ମୁଖୀନ ହୋଇଥିଲେ । କିନ୍ତୁ ପରେ ବାର୍ଦ୍ଧକ୍ୟ ଯୋଗୁ ସେ ବିଚଳିତ ହୋଇ ଅଶାନ୍ତିରେ ସମୟ କଟାଇବାକୁ ଲାଗିଲେ । ଶେଷରେ ତାଙ୍କୁ ଏହିପରି ଅଶାନ୍ତି ଓ ଦୁଶ୍ଚିନ୍ତାରେ ଶେଷ-ନିଃଶ୍ୱାସ ତ୍ୟାଗ କରିବାକୁ ପଡ଼ିଥିଲା ।



# ଅଷ୍ଟମ ଅଧ୍ୟାୟ

## ଆଉରଙ୍ଗଜେବଙ୍କ ଶାସନ

ଆଉରଙ୍ଗଜେବ ତାଙ୍କ ପୂର୍ବପୁରୁଷମାନଙ୍କଠାରୁ ଭିନ୍ନ ଚରିତ୍ରରେ ଗଢ଼ା । ଏଣୁ ତାଙ୍କ ଶାସନରେ କେତେକ ପରିବର୍ତ୍ତନ ଦେଖାଯାଏ । ତାଙ୍କର ପୂର୍ବପୁରୁଷମାନଙ୍କର ଶାସନ ପଦ୍ଧତି ଅନୁକରଣ କରିଥିଲେ ମଧ୍ଯ କେତେକ କ୍ଷେତ୍ରରେ ନିଜର ଧର୍ମାନ୍ଧତା ଓ ସନ୍ଦେହୀ ପ୍ରକୃତି ଯୋଗୁ ସେ ସେଥିରେ ପରିବର୍ତ୍ତନ ଆଣିଥିଲେ । ଧର୍ମନିରପେକ୍ଷତା ଗୁଣ ତାଙ୍କଠାରେ ଦେଖିବାକୁ ମିଳି ନ ଥିଲା । ଜଣେ ନୈଷ୍ଠିକ ମୁସଲମାନ ଭାବରେ ସମସ୍ତ ବିଷୟକୁ ସେ କୋରାନର ନୀତିଦୃଷ୍ଟିରୁ ଅନୁଧ୍ୟାନ କରୁଥିଲେ । ସେ ମୁସଲମାନ ଧର୍ମର ଜଣେ ନୈଷ୍ଠିକ ଉପାସକ ଥିଲେ ସତ୍ୟ; କିନ୍ତୁ ଜଣେ ସୁଦକ୍ଷ ଶାସକ ନ ଥିଲେ । ସେ ଭାରତରେ କେନ୍ଦ୍ରୀଭୂତ ସ୍ୱେଚ୍ଛାଚାରୀ ଶାସନ ପ୍ରଚଳନ କରିଥିଲେ । ରାଜ୍ୟର ସମସ୍ତ ଶାସନ କ୍ଷମତା ତାଙ୍କ ହାତରେ କେନ୍ଦ୍ରୀଭୂତ ହୋଇ ରହିଥିଲା । ସେ ଅତ୍ୟନ୍ତ ପରିଶ୍ରମୀ ଥିଲେ ଏବଂ ଶାସନକ୍ଷେତ୍ରରେ ସମସ୍ତ ବିଷୟକୁ ଠିକ ନଜି କରି ସେ ବୁଝୁଥିଲେ ।

ସମ୍ରାଟ ସମୟାନୁସାରେ ଆଗ୍ରା ଓ ଦିଲ୍ଲୀରେ ରହୁଥିଲେ । ଦିଲ୍ଲୀ ରାଜ୍ୟର ମୁଖ୍ୟ ରାଜଧାନୀ ଥିଲା ଏବଂ ସେଠାରେ ସମସ୍ତ ରାଜକୀୟ ଉତ୍ସବମାନ ପାଳିତ ହେଉଥିଲା । ଆଗ୍ରା ସମ୍ରାଟ ଆକବର ଓ ଜାହାଙ୍ଗୀରଙ୍କ ସମୟରେ ମୋଗଲମାନଙ୍କର ପ୍ରଧାନ ରାଜଧାନୀ ଥିଲା । କିନ୍ତୁ ପରବର୍ତ୍ତୀ କାଳରେ ମୋଗଲ ସମ୍ରାଟମାନଙ୍କର ବିଳାସିତା ଯୋଗୁ ଏବଂ ଆଗ୍ରାର ଗରମ ଜଳବାୟୁ ଯୋଗୁ, ବର୍ଷର ଅଧିକାଂଶ ସମୟରେ ଦିଲ୍ଲୀରେ ମୋଗଲ ଦରବାର ବସୁଥିଲା ।

**ଶାସନ କ୍ଷେତ୍ରରେ କର୍ମଚାରୀମାନଙ୍କର ସ୍ଥାନ :**

ମନ୍ତ୍ରୀ ଓ ଅନ୍ୟାନ୍ୟ ରାଜକର୍ମଚାରୀମାନଙ୍କୁ ସେ ନିଜର କଡ଼ା ନିୟନ୍ତ୍ରଣରେ ରଖିଥିଲେ । ସେମାନେ ସମ୍ରାଟଙ୍କର କେବଳ ଆଜ୍ଞାକାରୀ ଥିଲେ । ସେମାନଙ୍କର କିଛି ବ୍ୟକ୍ତିତ୍ୱ ନ ଥିଲା । ଶାସନ କ୍ଷେତ୍ରରେ କୌଣସି ସ୍ୱାଧୀନତା ବା କୌଣସି ନୂତନ ଶାସନ ନୀତି ପ୍ରଣୟନ କରିବାର କ୍ଷମତା ସେମାନଙ୍କର ନ ଥିଲା । କେନ୍ଦ୍ରୀଭୂତ ଶାସନ ଫଳରେ ତାଙ୍କ ମନ୍ତ୍ରୀମାନେ ଓ ଉଚ୍ଚ ରାଜକର୍ମଚାରୀମାନେ କେବଳ ତାଙ୍କର କିରାଣୀ ପରି ଥିଲେ । ଏଣୁ ଶାସନ କ୍ଷେତ୍ରରେ ସେମାନଙ୍କର ସ୍ପୃହା ଓ ନିଷ୍ଠା ରହିଲା ନାହିଁ । ଏହାଦ୍ୱାରା ରାଜ୍ୟରେ ଶାସନଗତ ବିଶୃଙ୍ଖଳା ତଥା ଅଧଃପତନ ଦେଖାଗଲା । ଏହି ସବୁର ମୂଳକାରଣ ହେଲା

ଯେ, ଆଉରଙ୍ଗଜେବ ମୁସଲମାନ ଧର୍ମନୀତିରେ ରାଜ୍ୟ ଶାସନ କରୁଥିଲେ ଏବଂ ଭାରତକୁ ଏକ ମୁସଲମାନ ରାଷ୍ଟ୍ରରେ ପରିଣତ କରିବା ପାଇଁ ନାନା ପ୍ରକାର ଉପାୟ ଅବଲମ୍ବନ କରି ଶେଷରେ ନିଷ୍ଫଳ ହୋଇଥିଲେ ।

## କର୍ମଚାରୀ ନିଯୁକ୍ତି ପ୍ରଥା :

ଏହା ବ୍ୟତୀତ ଅତୀତରେ ପୂର୍ବ ଅଭିଜ୍ଞତା ଓ ଦକ୍ଷତାକୁ ବିଚାର ତଥା ଅନୁଧ୍ୟାନ କରି ରାଜ୍ୟର ଉଚ୍ଚ କର୍ମଚାରୀମାନଙ୍କୁ ନିଯୁକ୍ତି ଦିଆଯାଉଥିଲା । କିନ୍ତୁ ଆଉରଙ୍ଗଜେବ ଅଭିଜ୍ଞତା ଓ ଦକ୍ଷତାକୁ ବିଚାରକୁ ନ ନେଇ ଧର୍ମନୀତି ଭିତ୍ତିରେ ଉଚ୍ଚ କର୍ମଚାରୀମାନଙ୍କୁ ନିଯୁକ୍ତ କରିବାରୁ ଶାସନ କ୍ଷେତ୍ରରେ ବିଶୃଙ୍ଖଳା ଦେଖାଗଲା ।

ତାଙ୍କ ସମୟରେ "ବଇତ-ଉଲ-ମଲ" ନାମକ ଗୋଟିଏ ବିଭାଗ ଥିଲା । ଦାୟାଦହୀନ ଲୋକମାନଙ୍କର ସମ୍ପତ୍ତି ଏହି ବିଭାଗରେ ଗଚ୍ଛିତ ହୋଇ ରହୁଥିଲା । ଏହା ବ୍ୟତୀତ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କର ସମ୍ପତ୍ତି ବାଜ୍ୟାପ୍ତ ସମ୍ପତ୍ତି ମଧ୍ୟ ଏଠାରେ ଗଚ୍ଛିତ ହୋଇ ରହୁଥିଲା । ଏହି ବିଭାଗକୁ ଈଶ୍ୱରଙ୍କର ରାଜକୋଷ ବୋଲି କୁହାଯାଉଥିଲା ଏବଂ ସମ୍ରାଟ ଏହାର ଉତ୍ତରୋତ୍ତର ଉନ୍ନତି ପାଇଁ ସର୍ବଦା ଚେଷ୍ଟା କରୁଥିଲେ ।

ଶାସନ କ୍ଷେତ୍ରରେ ଲାଞ୍ଚ ନେବା ଗୋଟିଏ ପ୍ରଥା ନ ଥିଲେ ମଧ୍ୟ କିରାଣୀ ଓ ହିସାବ-ରକ୍ଷକମାନେ ଉତ୍କୋଚ ନେଇ ନିଜର ଆୟ ସର୍ବଦା ବୃଦ୍ଧି କରୁଥିଲେ ଏବଂ ସମୟ ସମୟରେ ଉଚ୍ଚ ରାଜକର୍ମଚାରୀମାନେ ପ୍ରଜାମାନଙ୍କଠାରୁ ଉପହାରମାନ ନେଉଥିଲେ । ବେଳେବେଳେ ରାଜ୍ୟର ଆୟ ବୃଦ୍ଧି ପାଇଁ ସମ୍ରାଟ ଉପାଧିମାନ ବିକ୍ରି କରୁଥିଲେ । ସୋଲାପୁରର ସୁବେଦାର, ମନୋହର ଦାସଙ୍କୁ ରାଜା ଉପାଧିରେ ଭୂଷିତ କରାଇ ପାଞ୍ଚ ହଜାର ଟଙ୍କା ତାଙ୍କଠାରୁ ଗ୍ରହଣ କରିଥିଲେ । ରାଜା ଜୟସିଂହ ଦାକ୍ଷିଣାତ୍ୟ ନେତୃତ୍ୱରେ ଆଉ କିଛିଦିନ ରହିବା ପାଇଁ ଓ୍ୟାଜିରଙ୍କ ଦ୍ୱାରା ସମ୍ରାଟଙ୍କୁ ପ୍ରବର୍ତ୍ତାଇବା ପାଇଁ, ସେ ଓ୍ୟାଜିରଙ୍କୁ ବହୁତ ସମୟରେ କର୍ମଚାରୀମାନେ ମଦ୍ୟପ, ଆଳସ୍ୟ ପରାୟଣ ଓ ଅବାଞ୍ଛିତ ଧନ ଗ୍ରହଣ କରି ଆମୋଦ ପ୍ରମୋଦରେ ସମୟ ଅତିବାହିତ କରି ଶାସନ କ୍ଷେତ୍ରରେ ଅନେକ କ୍ଷତି କରୁଥିଲେ ।

## ପୋଲିସ୍ ଓ ବିଚାର ବିଭାଗ :

ପୋଲିସ୍ ଓ ବିଚାର ବିଭାଗୀୟ ଶାସନ ଖୁବ୍ ସଙ୍ଗଠିତ ଓ ସୁଚାରୁ ରୂପେ ସମ୍ରାଟଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ ହେଉଥିଲା । ରାଜ୍ୟରେ ଗୁପ୍ତଚର ବ୍ୟବସ୍ଥା ଖୁବ୍ ସୁଦୃଢ଼ ଥିଲା । ଶାହାଜାହାନ ସପ୍ତାହରେ ବୁଧବାର ଦିନ ନିଜେ ସଭା ଗୃହରେ ଉପସ୍ଥିତ ରହି,

କାଜୀମାନଙ୍କ ସାହାଯ୍ୟରେ ପ୍ରଜାମାନଙ୍କର ଦରଖାସ୍ତ ସେମାନଙ୍କର ଉପସ୍ଥିତିରେ ବିଗ୍ଭର କରୁଥିଲେ । ଆଉରଙ୍ଗଜେବ ପ୍ରଜାମାନଙ୍କର ସମସ୍ତ ଆବେଦନପତ୍ର ନିଜେ ପଢ଼ି ବିଗ୍ଭର କରୁଥିଲେ ଏବଂ ନିଜେ ସ୍ୱହସ୍ତରେ ତାଙ୍କର ନିଷ୍ପତ୍ତି ଲେଖୁଥିଲେ କିମ୍ବା ନିଜେ ତାଙ୍କର ନିଷ୍ପତ୍ତିକୁ ଅନ୍ୟଦ୍ୱାରା ଲେଖାଉଥିଲେ । ସେହିପରି ସେ ସାଧାରଣ ଦର୍ଶକମାନଙ୍କ ପ୍ରକୋଷ୍ଠ, ଆମ୍‌ଖାସ୍ (Amkhas) ରେ ଉପସ୍ଥିତ ରହି ପ୍ରଜାମାନଙ୍କର ଦରଖାସ୍ତକୁ ନିଜେ ଶୁଣୁଥିଲେ । ବାଦୀ ଓ ପ୍ରତିବାଦୀମାନଙ୍କୁ ସେ ନିଜେ ପରୀକ୍ଷା କରି ନ୍ୟାୟ ଦେଉଥିଲେ । ଏହାବ୍ୟତୀତ ସପ୍ତାହର ଅନ୍ୟ ଏକ ଦିନ ସେ କେବଳ ମାତ୍ର ଦୁଇ ଘଣ୍ଟା ପାଇଁ ବ୍ୟକ୍ତିଗତ ଭାବରେ ଦଶଟି ଆବେଦନପତ୍ରର ବିଗ୍ଭର କରୁଥିଲେ । ସପ୍ତାହର ଆଉ ଅନ୍ୟ ଦିନେ ବିଗ୍ଭର ଗୃହ-ଅଦାଲତ ଖାନଚ୍ଚ (Adalat Khancha) ରେ ଉପସ୍ଥିତ ରହି ଦୁଇ ଜଣ ପ୍ରଧାନ କାଜୀ କିମ୍ବା ପ୍ରଧାନ ବିଗ୍ଭରପତିଙ୍କ ସହାୟତାରେ ବିଗ୍ଭର କରୁଥିଲେ । କାଜୀମାନେ ଯେପରି ଯଥାରୀତି ସହିତ ବିଗ୍ଭର କାର୍ଯ୍ୟ ନିର୍ବାହ କରିପାରିବେ, ସମ୍ରାଟ ନିଜେ ତା'ର ତତ୍ତ୍ୱ ନେଉଥିଲେ । ୧୬୭୧ ଖ୍ରୀ: ଅ: ରେ ଗୁଜୁରାଟର କାଜୀ ସପ୍ତାହରେ ମାତ୍ର ଦୁଇ ଥର ବିଗ୍ଭର କାର୍ଯ୍ୟ କରୁଥିଲେ ବୋଲି ସେ ତାଙ୍କୁ ସପ୍ତାହରେ ପାଞ୍ଚ ଦିନ ବିଗ୍ଭର କାର୍ଯ୍ୟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

ଆଉରଙ୍ଗଜେବ ୧୭୦୭ ଖ୍ରୀ: ଅ: ରେ ମୃତ୍ୟୁବରଣ କଲାବେଳକୁ ମୋଗଲ ସାମ୍ରାଜ୍ୟ ଏକୋଇଶିଟି ପ୍ରଦେଶ ବା ରାଜ୍ୟରେ ବିଭକ୍ତ ହୋଇଥିଲା । ଏଥିମଧ୍ୟରୁ ଚଉଦଟି ପ୍ରଦେଶ ଉତ୍ତର ଭାରତରେ, ଛଅଟି ଦକ୍ଷିଣ ଭାରତରେ ଏବଂ ଆଉ ଗୋଟିଏ ଆଫଗାନିସ୍ଥାନ ଭାରତର ବାହାରେ ଅବସ୍ଥିତ ଥିଲା । ଏଗୁଡ଼ିକ ହେଲା—ଆଗ୍ରା, ଆଜମୀର, ଏଲାହାବାଦ, ଆଉଧ, ବଙ୍ଗଦେଶ, ବିହାର, ଦିଲ୍ଲୀ, ଗୁଜରାଟ, କାଶ୍ମୀର, ଲାହୋର, ମାଳବ, ମୁଲତାନ, ଓଡ଼ିଶା, ସିନ୍ଧୁ, କାବୁଲ, ଆଉରଙ୍ଗାବାଦ, ବେରାର, ବିଜାପୁର, ହାଇଦ୍ରାବାଦ ଏବଂ ଖାନ୍ଦେଶ । ମୋଗଲ ସାମ୍ରାଜ୍ୟ ହିନ୍ଦୁକୁଶଠାରୁ ତାଞ୍ଜୋର ପର୍ଯ୍ୟନ୍ତ ବିସ୍ତୃତ ଥିଲେ ମଧ୍ୟ ମହାରାଷ୍ଟ୍ର, ମହୀଶୂର ଏବଂ ପୂର୍ବ କର୍ଣ୍ଣାଟକ ରାଜ୍ୟରେ ମୋଗଲମାନେ ସେମାନଙ୍କର ଆଧିପତ୍ୟ ଦୃଢ଼ ଭାବରେ ଅବସ୍ଥାପିତ କରିପାରି ନ ଥିଲେ । ସମ୍ରାଟ ଆକବରଙ୍କ ସମୟରୁ ମୋଗଲ ସମ୍ରାଟମାନେ ପ୍ରାଦେଶିକ ଶାସନର ସୁବିଧା ପାଇଁ ପ୍ରତ୍ୟେକ ପ୍ରଦେଶରେ ଜଣେ ରାଜ୍ୟପାଳ, ଜଣେ ଦେଓ୍ୱାନ ଏବଂ ଅନ୍ୟାନ୍ୟ କେତେକ କର୍ମଗ୍ଭରୀଙ୍କୁ ନିଯୁକ୍ତ କରୁଥିଲେ । ଆଉରଙ୍ଗଜେବ ଜଣେ ସୁଦକ୍ଷ କଡ଼ା ସୁଶାସକ ଥିଲେ ମଧ୍ୟ ପ୍ରାଦେଶିକ ଶାସନ କ୍ରମେ ଖରାପ ଆଡ଼କୁ ଗତି କରିବାର ସୂଚନା ଦେଖାଯାଇଥିଲା । କାରଣ ସେ ଦୀର୍ଘ ପଚିଶି ବର୍ଷ କାଳ ଦାକ୍ଷିଣାତ୍ୟରେ ରହି ବିଜାପୁର, ଗୋଲକୁଣ୍ଡା ଓ ମରହଟ୍ଟାମାନଙ୍କ ସହିତ ଯୁଦ୍ଧରେ ବ୍ୟସ୍ତ ରହିବାରୁ ଉତ୍ତର ଭାରତରେ ପ୍ରାଦେଶିକ ଶାସନକର୍ତ୍ତାମାନେ କେନ୍ଦ୍ର ଶାସନ ପ୍ରତି ଉଦାସୀନତା ଦେଖାଉ ଥିଲେ । ପ୍ରାଦେଶିକ ବା ସ୍ଥାନୀୟ ଶାସକମାନେ ଏବଂ ଜମିଦାରମାନେ ଆଉରଙ୍ଗଜେବଙ୍କର ଅନୁପସ୍ଥିତି ଓ ଧର୍ମାନ୍ଧତା ଯୋଗୁ କେନ୍ଦ୍ରୀୟ ଆଇନ୍ ଓ ଆଦେଶ ପ୍ରତି ଅବମାନନା ପ୍ରଦର୍ଶନ କରୁଥିଲେ ।

**ରାଜସ୍ୱ ବିଭାଗ :**

ଭୂରାଜସ୍ୱରୁ ମୋଗଲମାନେ ବହୁତ ଅର୍ଥ ଆୟ କରୁଥିଲେ । ସାର୍ ଯଦୁନାଥ ସରକାରଙ୍କ ମତରେ ପ୍ରାୟ ୩୩ କୋଟି ୮୫ ଲକ୍ଷ ଟଙ୍କା ସେମାନେ ଭୂରାଜସ୍ୱରୁ ପାଉଥିଲେ । ଏହାଛଡ଼ା ଅନ୍ୟାନ୍ୟ କରରୁ ମୋଗଲମାନେ ବହୁତ ଅର୍ଥ ପାଉଥିଲେ । ଯଥା —ମୁସଲମାନଙ୍କଠାରୁ ଜକତ୍ (Zakat), ହିନ୍ଦୁମାନଙ୍କଠାରୁ ଜିଜିୟା, ଲବଣ କର, ଶୁଳ୍କ ଇତ୍ୟାଦି ଆଦାୟ କରାଯାଉଥିଲା । ଏହା ବ୍ୟତୀତ ଯୁଦ୍ଧ ବିଗ୍ରହରୁ ବହୁତ ଲୁଣ୍ଠନ ଦ୍ରବ୍ୟ ମଧ୍ୟ ମୋଗଲ ରାଜକୋଷକୁ ଆସୁଥିଲା । ଆଉରଙ୍ଗଜେବ ଇସଲାମ ଧର୍ମନୀତି ଭିତ୍ତିରେ ରାଜ୍ୟରୁ କର ଆଦାୟ କରୁଥିଲେ । ଏଣୁ ସେ ମୁସଲମାନମାନଙ୍କ ଉପରୁ ବହୁତ କର ହଟାଇ ଦେଇଥିଲେ ଏବଂ ଏହାର କ୍ଷତିପୂରଣ ପାଇଁ ହିନ୍ଦୁମାନଙ୍କ ଉପରେ ଯାତ୍ରୀକର ଓ ଜିଜିୟା କର ଏବଂ ଅନ୍ୟାନ୍ୟ କରମାନ ବସାଇଲେ । ସମ୍ରାଟ ଅକବର ତୋଡ଼ରମଲ୍ଲଙ୍କ ରୟତଓ୍ୱାରି ପ୍ରଣାଳୀ ଅନୁସରଣ କରି ରାଜସ୍ୱ ନିର୍ଦ୍ଧାରଣ ଓ କର ଆଦାୟ ପ୍ରଥା ସ୍ଥିର କରିଥିଲେ । କିନ୍ତୁ ଆଉରଙ୍ଗଜେବ ତାଙ୍କ ରାଜତ୍ୱ ସମୟରେ ଏହି ପ୍ରଣାଳୀକୁ ଅନୁସରଣ କଲେନାହିଁ । ଏହା ପରିବର୍ତ୍ତେ ସେ ପ୍ରଜାମାନଙ୍କଠାରୁ ଭୂରାଜସ୍ୱ ଓ ଅନ୍ୟାନ୍ୟ କର ଆଦାୟ ପାଇଁ କଣ୍ଟ୍ରାକ୍ଟର ନିଯୁକ୍ତ କଲେ । ଯେଉଁମାନେ ଖଜଣା ଆଦାୟ କରୁଥିଲେ ସେମାନଙ୍କୁ କୋରୀ ବୋଲି କୁହାଯାଉଥିଲା ଏବଂ ସେମାନଙ୍କୁ ସାହାଯ୍ୟ କରିବା ପାଇଁ ଅନ୍ୟାନ୍ୟ କର୍ମଚାରୀମାନେ ନିଯୁକ୍ତ ହେଉଥିଲେ । ଏହି କର୍ମଚାରୀମାନଙ୍କୁ ହକ୍‌ଦାରିକର ବୋଲି କୁହାଯାଉଥିଲା । ଏହି ପ୍ରଥା ଯୋଗୁ ପ୍ରଜାମାନଙ୍କୁ ବହୁତ ଅକଥନୀୟ ଅତ୍ୟାଚାର ସହ୍ୟ କରିବାକୁ ପଡ଼ୁଥିଲା । ସମ୍ରାଟ ଯେତେବେଳେ ଦାକ୍ଷିଣାତ୍ୟକୁ ଯୁଦ୍ଧ ପାଇଁ ଅଗ୍ରସର ହେଲେ ସେତେବେଳେ ଉତ୍ତର ଭାରତରେ ଥିବା ଜାଗିରଦାର ଓ ଫୌଜଦାରମାନଙ୍କ-ଠାରେ ଯଥେଷ୍ଟ ପରିମାଣରେ ସୈନ୍ୟ ଓ ଯୁଦ୍ଧ ସାମଗ୍ରୀ ନ ଥିଲା । ଫଳରେ ସେମାନେ ପ୍ରଜାମାନଙ୍କୁ କ୍ଷମତାପନ୍ନ ସ୍ଥାନୀୟ ଜମିଦାରମାନଙ୍କ ଅତ୍ୟାଚାରରୁ ରକ୍ଷା କରିପାରିଲେ ନାହିଁ ।

**ବାଣିଜ୍ୟ ଓ ବ୍ୟବସାୟ :**

ବୈଦେଶିକ ବାଣିଜ୍ୟ ମୋଗଲ ସାମ୍ରାଜ୍ୟର ଅର୍ଥନୀତିରେ ବିଶେଷ କିଛି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରି ନ ଥିଲା । ରାଜ୍ୟର ବହୁତ ଲୋକ କୃଷି ଓ ଶିଳ୍ପରେ କାମ କରୁଥିଲେ ଏବଂ ବିଦେଶକୁ ତୂଳାଜାତ ଦ୍ରବ୍ୟ ଓ ନୀଳ ରପ୍ତାନି ହେଉଥିଲା । ବିଦେଶରୁ କାଚ, ତମ୍ବା, ସୀସା ଓ ପଶମଲୁଗା ଆମଦାନି କରା ଯାଉଥିଲା । ପାରସ୍ୟରୁ ଅଶ୍ୱ, ଭାରତ୍ ଦ୍ୱୀପପୁଞ୍ଜରୁ ମସଲା, ମଦ, କାଚ ଏବଂ ଆମେରିକାରୁ ଉତ୍କୃଷ୍ଟ ଧରଣର ଧୂଆଁପତ୍ର ଆମଦାନି ହେଉଥିଲା । ସରକାର ଆମଦାନି ଶୁଳ୍କରୁ ପ୍ରାୟ ୩୦ ଲକ୍ଷ ଟଙ୍କା ରାଜସ୍ୱ ପାଉଥିଲେ ।

**ସୈନ୍ୟ ବିଭାଗ :**

ଆଉରଙ୍ଗଜେବ ତାଙ୍କର ଜୀବନକାଳ ମଧ୍ୟରେ ବହୁ ଯୁଦ୍ଧ କରିଥିଲେ ଏବଂ ବହୁ ବିଦ୍ରୋହ ଦମନ କରିଥିଲେ । ସମ୍ରାଟ ହେଲାପରେ ସେ ମୋଗଲ ସୈନ୍ୟ ସଂଖ୍ୟା ଅତ୍ୟଧିକ ଭାବରେ ବୃଦ୍ଧି କରାଇ ଦେଇଥିଲେ । ଏହାଛଡ଼ା ଦାକ୍ଷିଣାତ୍ୟ ଯୁଦ୍ଧ ସମୟରେ ସେ ଆହୁରି ସୈନ୍ୟ ସଂଖ୍ୟା ବୃଦ୍ଧି କରାଇବାକୁ ବାଧ୍ୟ ହୋଇଥିଲେ । ଏହା ଫଳରେ ଶାଜାହାନଙ୍କ ସମୟରେ ମୋଗଲ ସୈନ୍ୟ ବିଭାଗରେ ଯେତେ ଖର୍ଚ୍ଚ ହେଉଥିଲା, ଆଉରଙ୍ଗଜେବଙ୍କ ସମୟରେ ତାହା ଦୁଇ ଗୁଣକୁ ବୃଦ୍ଧି ପାଇଥିଲା । ସାର୍ ଯଦୁନାଥ ସରକାରଙ୍କ ମତରେ ୧୬୪୭ ଖ୍ରୀ: ଅ: ରେ ତାଙ୍କ ସୈନ୍ୟ ବାହିନୀରେ ୨ ଲକ୍ଷ ଅଶ୍ୱାରୋହୀ, ୮୦୦ ମାନସବଦାର, ୭୦୦୦ ଅହଦ୍ ଏବଂ ବାରକ୍ଦାଜ ଓ ରାଜପୁତ ମାନସବଦାରମାନଙ୍କ ଅଧୀନରେ ୧,୮୫,୦୦୦ ସୈନ୍ୟ, ୪୦,୦୦୦ ପଦାତିକ ସୈନ୍ୟ ଥିଲେ ।

ସମ୍ରାଟ ଜମି ଏବଂ ଅର୍ଥ ଦ୍ୱାରା ସୈନ୍ୟ ବିଭାଗ ଓ ପ୍ରଶାସନିକ ବିଭାଗକୁ ଏବଂ ମୋଗଲ ସମ୍ଭ୍ରାନ୍ତମାନଙ୍କୁ ନିୟନ୍ତ୍ରଣ କରୁଥିଲେ । ସାମ୍ରାଜ୍ୟର ସ୍ଥିରଆଡ଼େ ମାନସାବ ଓ ଜାଗିର ପ୍ରଥା ପ୍ରଚଳିତ ଥିଲା । ମାନସବଦାରମାନେ ପ୍ରାଦେଶିକ ଶାସନ କ୍ଷେତ୍ରରେ ନିଯୁକ୍ତ ହେଉଥିଲେ ଏବଂ ରାଜ୍ୟ ଓ ସୈନ୍ୟ ପରିଚାଳନା ପାଇଁ ଜମି ପାଉଥିଲେ । ସେମାନେ ରାଜସ୍ୱର ଏକପଞ୍ଚମାଂଶ ସମ୍ରାଟଙ୍କୁ ଦେଉଥିଲେ । ରାଜ୍ୟରୁ ସେମାନେ ଦୁଷ୍ଟଗୃହୀମାନଙ୍କଠାରୁ ଅତି କଠୋର ଭାବରେ ଖଜଣା ଆଦାୟ କରୁଥିଲେ ।

ସମ୍ରାଟ ଆକବରଙ୍କ ସମୟରେ ମୋଗଲ ସୈନ୍ୟମାନଙ୍କର ଦକ୍ଷତା, ସାହସିକତାର ବହୁ ଦୃଷ୍ଟାନ୍ତ ମିଳେ । କିନ୍ତୁ ଆଉରଙ୍ଗଜେବ ନିଜେ ସୈନ୍ୟବାହିନୀର ଜଣେ ସେନାପତି, ସଂଗଠକ ହୋଇ ମଧ୍ୟ; ସେନାବାହିନୀର ପରିଚାଳନା ଦାୟିତ୍ୱ ନିଜେ ସ୍ୱହସ୍ତରେ ବହନ କରି ମଧ୍ୟ ସର୍ବଦା ସୈନ୍ୟବାହିନୀ ଉପରେ ସତର୍କ ଦୃଷ୍ଟି ରଖିଥିଲେ ମଧ୍ୟ; ମୋଗଲ ସେନା-ବାହିନୀରେ ପୂର୍ବର ଶୃଙ୍ଖଳା ସେ ରକ୍ଷାକରି ପାରି ନ ଥିଲେ । କାରଣ ବହୁଦିନ ଯୁଦ୍ଧକରି ସର୍ବଦା ପରାସ୍ତ ହେଉଥିବାରୁ ସେମାନଙ୍କର ନୈତିକ ଅଧୋଗତି ଘଟିଥିଲା । ଏହା ବ୍ୟତୀତ ସୈନ୍ୟମାନେ ତଥା ସେନାଧ୍ୟକ୍ଷମାନେ ଯୁଦ୍ଧ କ୍ଷେତ୍ରରେ ଶୃଙ୍ଖଳିତ ଭାବରେ ଯୁଦ୍ଧ ନକରି ଆମୋଦ ପ୍ରମୋଦରେ ସମୟ କଟାଉଥିଲେ । ଫଳରେ ଆଉରଙ୍ଗଜେବ ଲକ୍ଷ ଓ ବହୁ ଅର୍ଥ ବ୍ୟୟରେ ଦାକ୍ଷିଣାତ୍ୟ ଦୁର୍ଗ ସବୁ ଅଧିକାର କରିଥିଲେ । ଏଣୁ ମୋଗଲ ରାଜକୋଷ କ୍ରମଶଃ ଶୂନ୍ୟ ହେବାକୁ ଲାଗିଲା ଏବଂ ତାଙ୍କର ମୃତ୍ୟୁ ବେଳକୁ ମୋଗଲ ସାମ୍ରାଜ୍ୟର ଆର୍ଥିକ ଅବସ୍ଥା ଏକ ସଙ୍କଟମୟ ମୁହୂର୍ତ୍ତରେ ଆସି ପହଞ୍ଚିଥିଲା ।

ତାଙ୍କ ରାଜତ୍ୱର ଶେଷ ଅବସ୍ଥାକୁ ମୋଗଲ ଶାସନ ଖୁବ୍ ଶୀଘ୍ର ଶୀଘ୍ର ପତନୋନ୍ମୁଖୀ ହୋଇ ପଡ଼ିଥିଲା । ଶାସନର ଅଧୋଗତି ଯୋଗୁ ଦାକ୍ଷିଣାତ୍ୟରେ ଦୁର୍ଗ ଅଧିକାର ପାଇଁ ବିଶ୍ୱାସଘାତକମାନଙ୍କୁ ବହୁ ଅର୍ଥ ଲାଞ୍ଚ ଦେବାକୁ ପଡ଼ୁଥିଲା । ଫଳରେ ପ୍ରଜାମାନଙ୍କ ଉପରେ

ଅର୍ଥନୈତିକ ସ୍ତର ପଡ଼ିଲା ଏବଂ ରାଜ୍ୟର ମାନଦଣ୍ଡ କମିବାକୁ ଲାଗିଲା; କିନ୍ତୁ ଏହାର କୌଣସି ପ୍ରତିକାର କରାଯାଇ ପାରୁ ନ ଥିଲା । କାଫି ଖାଁ କହନ୍ତି—"ଥରେ ଜଣେ ଫୌଜଦାର ଗୋଟିଏ ବୃଦ୍ଧାଠାରୁ ଅନ୍ୟାୟ ଭାବରେ ଅର୍ଥ ଆଦାୟ କରିବାରୁ, ସେ ସମ୍ରାଟଙ୍କଠାରେ ଆପତ୍ତି ଜଣାଇଲା । ସମ୍ରାଟ ଏହାଶୁଣି ବୃଦ୍ଧାର ଟଙ୍କା ଫେରାଇ ଦେବାପାଇଁ ଆଦେଶ ଦେଲେ । କିନ୍ତୁ ଫୌଜଦାର ଏହା ଜାଣି ବୃଦ୍ଧା ଉପରେ ଆହୁରି ଅତ୍ୟାଚାର ଆରମ୍ଭ କରିବାରୁ ସେ ପୁଣି ଆସି ସମ୍ରାଟଙ୍କୁ ଜଣାଇଲେ । ଫଳରେ ସମ୍ରାଟ ଫୌଜଦାରଙ୍କର ବଦଳି ପାଇଁ ଆଦେଶ ଦେଲେ ମଧ୍ୟ ଅତ୍ୟାଗ୍ରହୀ ଓ କ୍ଷମତାସମ୍ପନ୍ନ ଫୌଜଦାର ତାହା ପାଳନ କଲେ ନାହିଁ । ବରଂ ବୃଦ୍ଧା ପ୍ରତି ସେ ଆହୁରି କଠୋର ହୋଇ ଉଠିଲେ । ଏଥର ବୃଦ୍ଧା ଆସି ତା'ର ଦୁର୍ଦ୍ଦଶା ଜଣାଇବାରୁ ସମ୍ରାଟ ରାଗି ଉଠି କହିଲେ— 'ବୃଦ୍ଧା ତୁମେ ଫେରିଯାଅ ଏବଂ ଆଉଜଣେ ରାଜାଙ୍କୁ ତୁମପାଇଁ ପଠାଇବା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କର' । ଏଣୁ ଏଥିରୁ ଜଣାଯାଏ ଯେ ତାଙ୍କ ରାଜତ୍ୱର ଶେଷ ଆଡ଼କୁ ରାଜ୍ୟର ଶାସନବିଧାନକୁ କୌଣସି ଭୟ ନ କରି ଫୌଜଦାରମାନେ ଅବାଧରେ ପ୍ରଜାମାନଙ୍କ ଉପରେ ଅତ୍ୟାଚାର କରୁଥିଲେ ଏବଂ ସମ୍ରାଟଙ୍କର ଉଚ୍ଚ କର୍ମଚାରୀମାନଙ୍କୁ ଉତ୍କୋଚ ଦେଇ ସେମାନଙ୍କର ଅନୁଗ୍ରହ ଲାଭ କରୁଥିଲେ ।



# ନବମ ଅଧ୍ୟାୟ

## ଆଉରଙ୍ଗଜେବଙ୍କ ପତନ

ଆଉରଙ୍ଗଜେବ ମୋଗଲ ସାମ୍ରାଜ୍ୟର ଶେଷ ସାମ୍ରାଜ୍ୟବାଦୀ ମୋଗଲ ଶାସକମାନଙ୍କ ମଧ୍ୟରେ ଅତ୍ୟନ୍ତ ପରାକ୍ରମୀ ଓ କୂଟନୀତିଜ୍ଞ ଥିଲେ ଏବଂ ଏକ ବିଶାଳ ସାମ୍ରାଜ୍ୟ ଉପରେ ଶାସନ କରୁଥିଲେ । ଏହାଛଡ଼ା ସେ ପ୍ରଜାମାନଙ୍କ ଉପରେ କଠୋର ଶାସନ ଚଳାଉଥିଲେ । ଏହାକୁ ପ୍ରତିରୋଧ କରିବାର କ୍ଷମତା କାହାରି ନ ଥିଲା । ସମ୍ରାଟ ଆକବର ଉଦାରମନା ରାଜନୀତିଜ୍ଞ ଭାବରେ ଏବଂ ଶାଜାହାନ ନିଜର ଆଡ଼ମ୍ବରଶୀଳତା ମାଧ୍ୟମରେ ଯାହା କରିପାରି ନ ଥିଲେ, ଆଉରଙ୍ଗଜେବ ନିଜର ଦୃଢ଼ତା ଏବଂ ଅଦମ୍ୟ ବ୍ୟକ୍ତିଗତ ପ୍ରଚେଷ୍ଟା ଦ୍ୱାରା ତାହା ସମ୍ଭବ କରି ପାରିଥିଲେ । ଶାସନ କ୍ଷେତ୍ରରେ ତାଙ୍କର ଏତେ ଗଭୀର ଅଭିଜ୍ଞତା ଥିଲା ଯେ ତାଙ୍କୁ ସମସ୍ତେ ଏକପ୍ରକାର ଭୟ କରୁଥିଲେ । କିନ୍ତୁ ଏହିସବୁ ସତ୍ତ୍ୱେ ତାଙ୍କ ମୃତ୍ୟୁର ଅବ୍ୟବହିତ ପୂର୍ବରୁ ରାଜ୍ୟରେ ନାନା ବିଶୃଙ୍ଖଳା ଯୋଗୁ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହୋଇଯାଇଥିଲା । ସେ ନିଜେ ଏହି ପତନର ଅସ୍ତ୍ରମାରମ୍ଭ କରିଥିଲେ ।

### କେନ୍ଦ୍ରୀଭୂତ ଶାସନ :

ଆଉରଙ୍ଗଜେବଙ୍କର କେନ୍ଦ୍ରୀଭୂତ ସ୍ୱେଚ୍ଛାଚାରୀ ଶାସନ ଯୋଗୁ ତାଙ୍କ ହାତରେ କ୍ଷମତାର ସମସ୍ତ ଡୋରି ରହିଥିଲା । ସମ୍ରାଟଙ୍କର କ୍ଷମତା ଓ ଦୈହିକ ଶକ୍ତି ଉପରେ ରାଜ୍ୟର ଉନ୍ନତି ନିର୍ଭର କରୁଥିଲା । ଯେ ପର୍ଯ୍ୟନ୍ତ ତାଙ୍କର ଶାରୀରିକ କ୍ଷମତା ଓ ସାମର୍ଥ୍ୟ ଥିଲା ସେ ପର୍ଯ୍ୟନ୍ତ ରାଜ୍ୟର ସମସ୍ତ କାର୍ଯ୍ୟ ଶୃଙ୍ଖଳାର ସହିତ ପରିଚାଳିତ ହେଉଥିଲା । କିନ୍ତୁ ବାର୍ଦ୍ଧକ୍ୟ ସମୟରେ ଦୂରବର୍ତ୍ତୀ ପ୍ରଦେଶମାନଙ୍କରେ ଥିବା ପ୍ରାଦେଶିକ ଶାସନକର୍ତ୍ତାମାନଙ୍କ ଉପରେ ସେ ତାଙ୍କର କର୍ତ୍ତୃତ୍ୱ ହରାଇ ବସିଲେ ଏବଂ ଧୀରେ ଧୀରେ ତାଙ୍କ ହାତରୁ କ୍ଷମତା ଅପସରି ଯିବାକୁ ଲାଗିଲା । ଯେହେତୁ ସେ ରାଜ୍ୟରେ ଯଥେଚ୍ଛାଚାର ଶାସନ ପ୍ରଚଳନ କରିଥିଲେ ଏବଂ ଯେତେବେଳେ ନିଜେ ବାର୍ଦ୍ଧକ୍ୟ ଯୋଗୁ ଦୁର୍ବଳ ହୋଇ ପଡ଼ିଲେ, ସେତେବେଳେ ରାଜ୍ୟରେ ବିଶୃଙ୍ଖଳା ଓ ପତନର ସଙ୍କେତ ଦେଖା ଦେବା ସ୍ୱାଭାବିକ ।

### ସହନଶୀଳତାର ଅଭାବ :

ସେ ଯେତେ ବିଜ୍ଞ ଓ କୂଟନୀତିଜ୍ଞ ହେଲେ ମଧ୍ୟ, ରାଜ୍ୟର ସମସ୍ୟାଗୁଡ଼ିକୁ ସଠିକ୍ ଭାବରେ ହୃଦୟଙ୍ଗମ କରି ବୁଝିବାକୁ ଚେଷ୍ଟା କରୁ ନ ଥିଲେ କିମ୍ବା ଆକସ୍ମିକ ଘଟଣା ବା ସମସ୍ୟା ପାଇଁ କୌଣସି ସତ୍ ଉପାୟ ଚିନ୍ତାକରି କାର୍ଯ୍ୟ କରିପାରୁ ନ ଥିଲେ । ଜୀବନ-

ଧାରଣ ପ୍ରତି ତାଙ୍କର ସୀମିତ ଦୃଷ୍ଟି ଥିବାରୁ ସେ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ନ ଥିଲେ । ଧର୍ମକୁ ଭିତ୍ତି କରି ସେ ଶାସନ ପରିଚାଳନା କରୁଥିବାରୁ ତାଙ୍କର ସମସ୍ତ ଯୋଜନା ବ୍ୟର୍ଥ ହୋଇ-ଥିଲା । ସେ କର୍ତ୍ତବ୍ୟପରାୟଣ ବ୍ୟକ୍ତି ଥିଲେ ସତ; କିନ୍ତୁ ହିନ୍ଦୁବହୁଳ ରାଷ୍ଟ୍ରରେ ଏକ ସଂଖ୍ୟାଲଘୁ ସୁନ୍ନୀ ସମ୍ପ୍ରଦାୟର ସେ ସମ୍ରାଟ ଥିଲେ ବୋଲି ଜଣା ଯାଉଥିଲା । ଭାରତକୁ ସେ ଗୋଟିଏ ମୁସଲମାନ ରାଷ୍ଟ୍ର ଭାବରେ ଚଳାଇବା ଶାସନ କରିଥିଲେ ଏବଂ ଅନେକ କ୍ଷେତ୍ରରେ ଅଣମୁସଲମାନମାନଙ୍କ ଉପରେ ତାହା ଅକଥନୀୟ ଅତ୍ୟାଚାରରେ ପରିଣତ ହୋଇଥିଲା; କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ସେଥିରେ କୃତକାର୍ଯ୍ୟ ହୋଇପାରି ନ ଥିଲେ । ବରଂ ଏହା-ଦ୍ୱାରା ହିନ୍ଦୁମାନଙ୍କଠାରୁ ସହଯୋଗ ପାଇବା ପରିବର୍ତ୍ତେ ସର୍ବଦା ବିରୋଧ ଭାବର ସୂଚନା ପାଇଲେ ଏବଂ ମୋଗଲ ସାମ୍ରାଜ୍ୟ ଧୀରେ ଧୀରେ ଦୁର୍ବଳ ହୋଇ ପଡ଼ିଲା । ଯଦି ସେ ଏହି ବିରୋଧ ଭାବକୁ ଠିକ୍ ଭାବେ ବିଚାର କରି ହୃଦୟଙ୍ଗମ କରିଥାନ୍ତେ, ତାହା ହେଲେ ତାଙ୍କର ପୂର୍ବପୁରୁଷ ସମ୍ରାଟ ଆକବରଙ୍କର ଉଦାର ନୀତିକୁ ସେ ନିଶ୍ଚୟ ଅନୁସରଣ କରିଥାନ୍ତେ । ମୁସଲମାନ ସମ୍ପ୍ରଦାୟର ସିହାମାନଙ୍କୁ ଏବଂ ସେମାନଙ୍କର ଶିକ୍ଷା ଓ ଧର୍ମକୁ ଅତି କଠୋର ଭାବରେ ସେ ଦମନ କରିଥିଲେ । ଯେଉଁ ପାରସ୍ୟର ସିହାମାନେ ରାଜନୀତି, ଭୂରାଜସ୍ୱ ବିଭାଗ ଏବଂ ଶାସନ କ୍ଷେତ୍ରରେ ଦକ୍ଷତା ଦେଖାଇ ସମ୍ରାଟ ଆକବର ଓ ଶାଜାହାନଙ୍କ ରାଜତ୍ୱ କାଳକୁ ଗୌରବମୟ କରିଥିଲେ, ସେମାନଙ୍କୁ ସେ କାର୍ଯ୍ୟରୁ ଅନ୍ତର କରିଦେବା ଫଳରେ ଶାସନ କ୍ଷେତ୍ରରେ ଆଲୋଡ଼ନ ସୃଷ୍ଟି ହୋଇଥିଲା ।

**ବିଶ୍ୱାସର ଅଭାବ :**

ଏହାବ୍ୟତୀତ ଆଉରଙ୍ଗଜେବ ତାଙ୍କ ପୁତ୍ରମାନଙ୍କୁ ଯଥାର୍ଥ ଭାବରେ ତାଲିମ ଦେଇ ପାରି ନ ଥିଲେ । ସେ ଅତ୍ୟନ୍ତ ସନ୍ଦେହୀ ଥିବାରୁ ନିଜର ପୁତ୍ର କନ୍ୟାମାନଙ୍କୁ ସର୍ବଦା ଦୂରରେ ରଖୁଥିଲେ ଏବଂ ସେମାନଙ୍କର କାର୍ଯ୍ୟକଳାପ ବିଷୟରେ ଜାଣିବା ପାଇଁ ସେମାନଙ୍କ ପଛରେ ଗୁପ୍ତଚରମାନ ନିଯୁକ୍ତ କରିଥିଲେ । ସେ ନିଜେ ତାଙ୍କ ପିତାଙ୍କ ପ୍ରତି ଯେପରି ବ୍ୟବହାର ଦେଖାଇ ଥିଲେ, ହୁଏତ ତାଙ୍କର ପୁତ୍ର କନ୍ୟାମାନେ ମଧ୍ୟ ତାଙ୍କ ପ୍ରତି ସେହି ପ୍ରକାର ବ୍ୟବହାର କରିବେ, ଏହା ସେ ଆଶଙ୍କା କରୁଥିଲେ । ପୁତ୍ରମାନଙ୍କୁ ସେ ଆଦୌ ବିଶ୍ୱାସ କରୁ ନ ଥିଲେ । ଏହା ଫଳରେ ରାଜପୁତ୍ରମାନେ ତାଙ୍କୁ ସାହାଯ୍ୟ କରିବା ପରିବର୍ତ୍ତେ ତାଙ୍କର ନୀତିକୁ ସର୍ବଦା ବିରୋଧ କରିବାକୁ ଲାଗିଲେ ଏବଂ ଗୁପ୍ତ ଚକ୍ରାନ୍ତରେ ଲିପ୍ତ ରହି ସମ୍ରାଟଙ୍କଠାରୁ ଦୂରରେ ରହିବାକୁ ଉଚିତ ମନେ କଲେ ।

ନିଜେ ଶାସନ କ୍ଷେତ୍ରରେ ଜଣେ ଅଭିଜ୍ଞ ବ୍ୟକ୍ତି ତଥା ଅତ୍ୟନ୍ତ ପରିଶ୍ରମୀ ଥିବାରୁ ସେ ନିଜର ମନ୍ତ୍ରୀ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ବିଶ୍ୱାସ କରୁ ନଥିଲେ । ସେମାନେ ରାଜ-କାର୍ଯ୍ୟରେ ଆଦୌ ନିପୁଣ ନ ଥିଲେ ବୋଲି ତାଙ୍କର ଦୃଢ଼ ବିଶ୍ୱାସ ଥିଲା । ଏହି କାରଣ ଯୋଗୁ ଆଉରଙ୍ଗଜେବ ନିଜେ ରାଜ୍ୟ ଶାସନର ସମସ୍ତ କାର୍ଯ୍ୟ ଟିକିନିଖି ଭାବରେ ଦେଖୁ-

ଥାଲେ ଏବଂ ମନ୍ତ୍ରୀ ଓ ଅନ୍ୟାନ୍ୟ ରାଜକର୍ମଚାରୀମାନେ ଧାରାବାହିକ ଭାବରେ ନିଜର କାର୍ଯ୍ୟ କରିଯାଉଥିଲେ । ମନ୍ତ୍ରୀମାନେ କେବଳ କିରାଣୀ କାର୍ଯ୍ୟ କରୁଥିବାରୁ ରାଜ୍ୟର ସଙ୍କଟମୟ ମୁହୂର୍ତ୍ତରେ ସେମାନେ ସମସ୍ୟାର ସମୟାନୁବର୍ତ୍ତୀ କୌଣସି ସମାଧାନ କରିପାରୁ ନ ଥିଲେ । ଫଳରେ ଶାସନ କ୍ଷେତ୍ରରେ ନାନା ପ୍ରକାର ବିପର୍ଯ୍ୟୟ ଦେଖାଗଲା । ରାଜ କର୍ମଚାରୀମାନେ ସଙ୍କଟ ମୁହୂର୍ତ୍ତରେ ସର୍ବଦା ସମ୍ରାଟଙ୍କର ନିର୍ଦ୍ଦେଶକୁ ଅପେକ୍ଷା କରି ରହୁଥିଲେ ।

**ବିଦ୍ରୋହ :**

ନିଜର ଧର୍ମାନ୍ଧତା ଯୋଗୁ ସେ ତାଙ୍କ ରାଜତ୍ୱ କାଳରେ ରାଜପୁତ୍ରମାନଙ୍କର ସାହାଯ୍ୟ ପାଇପାରି ନ ଥିଲେ । କିନ୍ତୁ ସେତେବେଳେ ଏହି ରାଜପୁତ୍ରମାନଙ୍କର ସାହାଯ୍ୟ ବିଶେଷ ଭାବରେ ଆବଶ୍ୟକ ପଡ଼ୁଥିଲା । କାରଣ ମରହଟ୍ଟାମାନଙ୍କର ଆକ୍ରମଣରେ ମୋଗଲ ସାମ୍ରାଜ୍ୟ ସେତେବେଳେ କ୍ଷତିଗ୍ରସ୍ତ ହେଉଥିଲା । ସମ୍ରାଟ ଆକବରଙ୍କର ବନ୍ଧୁତା ଏବଂ ଧର୍ମ ସହିଷ୍ଣୁତା ଗୁଣ ଯୋଗୁ ରାଜପୁତ୍ରମାନଙ୍କର ସେ ଅତି ପ୍ରିୟ ହୋଇ ପାରିଥିଲେ ଏବଂ ସେମାନଙ୍କର ସହାୟତାରେ ମୋଗଲ ସାମ୍ରାଜ୍ୟକୁ ବହୁ ବିପଦ ଆପଦରୁ ରକ୍ଷା କରି ସାମ୍ରାଜ୍ୟର ସୀମା ବର୍ଦ୍ଧନ କରିବା ସଙ୍ଗେ ସଙ୍ଗେ ଏହି ଶିଶୁ ମୋଗଲ ସାମ୍ରାଜ୍ୟକୁ ଦୃଢ଼ ଭାବରେ ସଙ୍ଗଠନ କରିପାରି ଥିଲେ । ଏପରିକି ରାଜପୁତ୍ରମାନେ ନିଜର କୁଟୁମ୍ବମାନଙ୍କ ସହିତ ଯୁଦ୍ଧ କରି ମୋଗଲ ସାମ୍ରାଜ୍ୟର ସୀମା ଓ ଗୌରବ ବଢ଼ାଇଥିଲେ । ଔରଙ୍ଗଜେବଙ୍କର ଏହି ଅବିବେକ ନୀତି ଯୋଗୁ ରାଜପୁତ୍ରନାର ସିସୋଦିୟା, ରାଠୋର ଏବଂ ଅନ୍ୟାନ୍ୟ ରାଜପୁତ୍ର ଜାତିମାନେ ତାଙ୍କ ମୃତ୍ୟୁ ପର୍ଯ୍ୟନ୍ତ ସର୍ବଦା ତାଙ୍କର ବିଦ୍ରୋହାଚରଣ କରିଥିଲେ । ଏହା ବ୍ୟତୀତ ଧର୍ମ ସମ୍ପର୍କରେ ତାଙ୍କର ଏହି ଅସହିଷ୍ଣୁତା ଯୋଗୁ ଜାଠ୍, ବୁନ୍ଦେଲା, ଶିଖ୍ ଏବଂ ମରହଟ୍ଟାମାନେ ତାଙ୍କ ପ୍ରତି ବିଦ୍ରୋହ ଭାବାପନ୍ନ ହୋଇ ଶତ୍ରୁତା ଆଚରଣ କଲେ । ଏଣୁ ରାଜ୍ୟରେ ଶାନ୍ତି ପରିବର୍ତ୍ତେ ସର୍ବଦା ଅଶାନ୍ତିର ବହ୍ନି ଜଳି ଉଠିଲା ।

ଔରଙ୍ଗଜେବଙ୍କର ଦାକ୍ଷିଣାତ୍ୟ ଅଭିଯାନ ମୋଗଲ ସାମ୍ରାଜ୍ୟକୁ ସବୁଠାରୁ ଅଧିକ ଦୁର୍ବଳ କରି ଦେଇଥିଲା । ଦାକ୍ଷିଣାତ୍ୟର ମରହଟ୍ଟା ଓ ସିଆ ଶକ୍ତିକୁ ଲୋପ କରିଦେବା ପାଇଁ ସେ ପ୍ରାୟ ପଚିଶି ବର୍ଷକାଳ ଦାକ୍ଷିଣାତ୍ୟରେ କଟାଇଥିଲେ । ଏହି ପଚିଶି ବର୍ଷକାଳ ସେ ଦିଲ୍ଲୀରୁ ବହୁ ଦୂରରେ ରହିଥିବାରୁ କେନ୍ଦ୍ରୀୟ ଶାସନ ଦୁର୍ବଳ ହୋଇ ପଡ଼ିଥିଲା । ଏହାଫଳରେ ଉତ୍ତରଭାରତର ବିଭିନ୍ନ ହିନ୍ଦୁ ଜାତି ତାଙ୍କ ବିରୁଦ୍ଧରେ ବିଦ୍ରୋହ କରିବାର ସୁଯୋଗ ପାଇଲେ ଏବଂ ଏହି ବିଦ୍ରୋହକୁ ସେ ନିଜର ବାର୍ଦ୍ଧକ୍ୟ ଓ ଅକ୍ଷମତା ହେତୁ ଆଦୌ ଦମନ କରିପାରିଲେ ନାହିଁ । ରାଜ୍ୟରେ ସଦା ସର୍ବଦା ଯୁଦ୍ଧ ବିଦ୍ରୋହ ଲାଗି ରହିଥିବାରୁ ଏବଂ ନିଜେ ସର୍ବଦା ଯୁଦ୍ଧରେ ବ୍ୟସ୍ତ ରହୁଥିବାରୁ, ରାଜ୍ୟର ଅର୍ଥନୈତିକ ଓ

ସାଂସ୍କୃତିକ ଉନ୍ନତ ହୋଇ ପାରିନାହିଁ । ତାଙ୍କ ରାଜତ୍ୱରେ ଚିତ୍ରକଳା, ସ୍ଥାପତ୍ୟ, ସଙ୍ଗୀତ କଳାରେ କୌଣସି ଅଗ୍ରଗତି ହୋଇ ନ ଥିଲା । ଏଥିପାଇଁ ସେ କୌଣସି ଆଗ୍ରହ ମଧ୍ୟ ପ୍ରକାଶ କରି ନ ଥିଲେ । ରାଜ୍ୟର ଆର୍ଥିକ ମେରୁଦଣ୍ଡ ସର୍ବଦା ବିଶୃଙ୍ଖଳା ଯୋଗୁ ଭାଙ୍ଗି ପଡ଼ିଥିଲା । ଏହାଫଳରେ ତାଙ୍କ ରାଜତ୍ୱର ପଚାଶ ବର୍ଷ ମଧ୍ୟରେ ଭାରତରେ ସଭ୍ୟତା ଓ ସଂସ୍କୃତି ଅବନତି ଆଡ଼କୁ ଗତି କରିଥିଲା ।

ରାଜତ୍ୱର ପ୍ରଥମ ପଚିଶି ବର୍ଷ ଦାକ୍ଷିଣାତ୍ୟ ଯୁଦ୍ଧରେ ଅତିବାହିତ କରିଥିବାରୁ ଶାସନ କ୍ଷେତ୍ରରେ ମୂଳରୁ ସେ ପ୍ରତ୍ୟକ୍ଷ ଭାବରେ ଦୃଷ୍ଟି ଦେଇ ପାରି ନ ଥିଲେ; ତେଣୁ ପଚିଶି ବର୍ଷ ପରେ ରାଜ୍ୟରେ ଆଇନ ଶୃଙ୍ଖଳା ରକ୍ଷା କରିବାକୁ ମଧ୍ୟ ସେ କ୍ଷମ ହୋଇପାରି ନ ଥିଲେ । ମରହଟ୍ଟାମାନଙ୍କ ଦାଉରୁ ମଧ୍ୟ ଜନସାଧାରଣଙ୍କୁ ସେ ଜୀବନର ନିରାପତ୍ତା ଦେଇ ପାରି ନ ଥିଲେ । ପ୍ରଜାମାନଙ୍କର ଧନ ସମ୍ପତ୍ତି ମଧ୍ୟ ବିପଦମୁକ୍ତ ନ ଥିଲା । ସମ୍ରାଟ ନିଜେ ମଧ୍ୟ ଜୀବନ ସାରା ମରହଟ୍ଟାମାନଙ୍କ ସହିତ ଯୁଦ୍ଧ କରି ନିରାପଦରେ ସମୟ କଟାଇ ପାରି ନ ଥିଲେ । ତାଙ୍କର ବିଶ୍ୱସ୍ତ ଅନୁଚରମାନଙ୍କୁ ମଧ୍ୟ ସେ ବିପଦମୁକ୍ତ କରିପାରି ନ ଥିଲେ । ମରହଟ୍ଟାମାନଙ୍କର ବାରମ୍ବାର ଆକ୍ରମଣ ଫଳରେ, ସେ ସର୍ବଦା ଏକ ଅଶାନ୍ତିପୂର୍ଣ୍ଣ ପରିସ୍ଥିତିରେ ଜୀବନନିର୍ବାହ କରୁଥିଲେ । ଏହି ଆକ୍ରମଣରେ ସେ ଜର୍ଜରିତ, ମ୍ରିୟମାଣ ଓ ହତାଶ ହୋଇ ପରିଶେଷରେ ୧୭୦୭ ଖ୍ରୀ: ଅ: ମାର୍ଚ୍ଚ ମାସ ଗୁରି ତାରିଖରେ ମୃତ୍ୟୁବରଣ କଲେ । ମୃତ୍ୟୁ ବେଳକୁ ତାଙ୍କୁ ଅଶୀନବେ ବର୍ଷ ହୋଇଥିଲା ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ ଯେ ଆଉରଙ୍ଗଜେବ ମୋଗଲ ସାମ୍ରାଜ୍ୟର ପତନ ପାଇଁ ମୁଖ୍ୟତଃ ଦାୟୀ । କାରଣ ତାଙ୍କ ରାଜତ୍ୱର ଆରମ୍ଭରୁ ରାଜ୍ୟରେ ସଦା ସର୍ବଦା ଯୁଦ୍ଧ ଓ ବିଦ୍ରୋହ ଲାଗି ରହିଥିଲା । ଏହା ଫଳରେ ରାଜ୍ୟର ଆର୍ଥିକ ସ୍ୱଚ୍ଛଳତା ଭଲ ନ ରହିବା ସଙ୍ଗେ ସଙ୍ଗେ ଶାସନ ମଧ୍ୟ ଦୁର୍ବଳ ହୋଇ ପଡ଼ିଲା । ତାଙ୍କ ରାଜତ୍ୱ କାଳରେ ମୋଗଲ ସାମ୍ରାଜ୍ୟ ପ୍ରତି ସଦା ସର୍ବଦା ବିପଦ ବିଭିନ୍ନ ଆଡ଼ୁ ଲାଗି ରହିଥିଲା ଏବଂ ଶାନ୍ତ ବାୟୁମଣ୍ଡଳ ପ୍ରାପ୍ତ ନ ଥିଲା । ଏଣୁ ତାଙ୍କ ସମୟରୁ ମୋଗଲ ସାମ୍ରାଜ୍ୟର ପତନ ଆରମ୍ଭ ହୋଇଥିଲା । ବାବର ଯେଉଁ ମୋଗଲ ସାମ୍ରାଜ୍ୟର ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ ଏବଂ ସମ୍ରାଟ ଆକବର ଯେଉଁ ସାମ୍ରାଜ୍ୟକୁ ଏକତ୍ରୀକରଣ କରି ସଙ୍ଗଠନ କରିଥିଲେ, ଆଉରଙ୍ଗଜେବ ସେହି ସାମ୍ରାଜ୍ୟର ପତନକୁ ତ୍ୱରାନ୍ୱିତ କରିଥିଲେ । ଜାହାଙ୍ଗୀର ଓ ଶାଜାହାନଙ୍କ ସମୟରେ ମୋଗଲ ସାମ୍ରାଜ୍ୟ ଇତିହାସରେ ଗୌରବମୟ ସ୍ଥାନ ଅଧିକାର କରିଥିଲା । କିନ୍ତୁ ଆଉରଙ୍ଗଜେବଙ୍କ ସମୟରେ ତାହା ହୋଇପାରି ନ ଥିଲା । ଏହାର କାରଣ ମଧ୍ୟ ଖୁବ୍ ସହଜ । ନିଜ ଧର୍ମପ୍ରତି ଏକାଗ୍ରତା ଏବଂ ଯୁଦ୍ଧ ଓ ବିଦ୍ରୋହ ଯୋଗୁ ବିଶୃଙ୍ଖଳା ହେତୁ ରାଜ୍ୟରେ ସାମାଜିକ, ରାଜନୈତିକ, କଳା, ସ୍ଥାପତ୍ୟ, ଶିକ୍ଷା ପ୍ରଭୃତିରେ ଅଗ୍ରଗତି କରିପାରି ନ ଥିଲା । ବରଂ କଳା ଓ ସ୍ଥାପତ୍ୟରେ ଅଧୋଗତି ଦେଖା ଯାଇଥିଲା । ସମ୍ରାଟ ଆକବରଙ୍କ ସମୟରୁ ଭାରତର ସଂସ୍କୃତିରେ ଯେଉଁ ଉତ୍ତରୋତ୍ତର ଉନ୍ନତି

ହୋଇ ଆସୁଥିଲା, ତାହା ଆଉରଙ୍ଗଜେବଙ୍କ ରାଜତ୍ୱ କାଳରେ ହଠାତ୍ ବନ୍ଦ ହୋଇଗଲା । କାରଣ ତାଙ୍କ ପୂର୍ବପୁରୁଷମାନଙ୍କ ରାଜତ୍ୱ କାଳରେ ରାଜ୍ୟରେ ଶାନ୍ତି ବିରାଜମାନ କରୁଥିଲା । ରାଜ୍ୟରେ ଏହି ଶାନ୍ତି ଯୋଗୁ ଲୋକମାନେ କଳା, ସଂସ୍କୃତି, ସ୍ଥାପତ୍ୟ ଓ ସାହିତ୍ୟ କ୍ଷେତ୍ରରେ ପ୍ରେରଣା ପାଇ ମୋଗଲମାନଙ୍କର ରାଜତ୍ୱକୁ ଛିବଳ କରୁଥିଲେ । କିନ୍ତୁ ଆଉରଙ୍ଗଜେବଙ୍କ ସମୟରେ ରାଜ୍ୟର ଚାରିଆଡ଼େ ଅଶାନ୍ତିର ବହ୍ନି ଜଳି ଉଠିବା ଫଳରେ ଲୋକେ ଅଗତ୍ୟାଶ୍ରାର୍ଥୀ ହୋଇ ପଡ଼ିଲେ ଏବଂ କୌଣସି ପ୍ରକାର ସାଂସ୍କୃତିକ କାର୍ଯ୍ୟ ହୋଇପାରି ନ ଥିଲା । ଏପରିକି ସେ ମୃତ୍ୟୁ ପୂର୍ବରୁ ମୋଗଲ ସାମ୍ରାଜ୍ୟ ପତନର ସଙ୍କେତ ପାଇଥିଲେ ମଧ୍ୟ ସେଥିପାଇଁ ସେ ଦୃଢ଼ ପଦକ୍ଷେପ ନେଇ ନ ଥିଲେ । ତାଙ୍କର ଅବିବେକିତା, ଦୂରଦୃଷ୍ଟିର ଅଭାବ, ଧର୍ମାନ୍ଧତା, ଅସହିଷ୍ଣୁତା ଓ ହିନ୍ଦୁବିଦ୍ୱେଷ ନୀତି ଇତ୍ୟାଦି ମୋଗଲ ସାମ୍ରାଜ୍ୟକୁ ଅତିଶୟ ଦୁର୍ବଳ କରିଦେଇଥିଲା । ଫଳରେ ଠିକ୍ ତାଙ୍କର ମୃତ୍ୟୁ ପରେ ମୋଗଲ ସାମ୍ରାଜ୍ୟ ଖଣ୍ଡ ବିଖଣ୍ଡ ହୋଇଗଲା ।

## ପରବର୍ତ୍ତୀ ମୋଗଲ ସମ୍ରାଟ :

ଏହାଛଡ଼ା ତାଙ୍କ ମୃତ୍ୟୁ ପରେ ତାଙ୍କପରି ଜଣେ କୂଟନୈତିକ, ବିଚକ୍ଷଣ ଓ ଉପଯୁକ୍ତ ଦାୟାଦ ମୋଗଲ ସିଂହାସନ ଆରୋହଣ କରିପାରି ନ ଥିଲେ । ମୃତ୍ୟୁ ବେଳକୁ ଆଉରଙ୍ଗଜେବଙ୍କର ତିନି ପୁଅମାନଙ୍କ ମଧ୍ୟରୁ ଜ୍ୟେଷ୍ଠ ପୁତ୍ର ମୁଆଜାମ କାବୁଲ ଓ ପଞ୍ଜାବର ଶାସନକର୍ତ୍ତା ଥିଲେ । ଦ୍ୱିତୀୟ ପୁତ୍ର ମହମ୍ମଦ ଆଜମ ମାଳବ ଓ ଗୁଜରାଟର ଶାସନକର୍ତ୍ତା ଥିଲେ ଏବଂ ତୃତୀୟ ପୁତ୍ର କାମବକ୍ସ ଦାକ୍ଷିଣାତ୍ୟର ଶାସନକର୍ତ୍ତା ଥିଲେ । ମୋଗଲ ସିଂହାସନ ପାଇଁ ଭାଇମାନଙ୍କ ମଧ୍ୟରେ ଯେପରି ଭ୍ରାତୃ ଯୁଦ୍ଧ ନ ହୁଏ, ଏଣୁ ଆଉରଙ୍ଗଜେବ ତାଙ୍କର ମୃତ୍ୟୁ ପୂର୍ବରୁ ମୋଗଲ ସାମ୍ରାଜ୍ୟ ପାଇଁ ଏକ ଇଚ୍ଛାପତ୍ର କରି, ସାମ୍ରାଜ୍ୟକୁ ତିନି ପୁଅଙ୍କ ମଧ୍ୟରେ ବାଣ୍ଟି ଦେଇ ଯାଇଥିଲେ । କିନ୍ତୁ ଦୁର୍ଭାଗ୍ୟ ଯେ ଏହାସତ୍ତ୍ୱେ ମଧ୍ୟ ପୁଣି ମୋଗଲ ସିଂହାସନ ପାଇଁ ଭ୍ରାତୃ ଯୁଦ୍ଧ, ତାଙ୍କ ମୃତ୍ୟୁ ପରେ ହୋଇଥିଲା । ରାଜପୁତ୍ର ମୁଆଜାମ ତାଙ୍କରଅନ୍ୟ ଦୁଇ ଭାଇ ମହମ୍ମଦ ଆଜମ ଓ କାମବକ୍ସଙ୍କୁ ଭ୍ରାତୃ ଯୁଦ୍ଧରେ ପରାସ୍ତ ଓ ହତ୍ୟା କରି ମୋଗଲ ସିଂହାସନ ୧୭୦୭ ଖ୍ରୀ: ଅ: ରେ ତେଷଠି ବର୍ଷ ବୟସରେ ଆରୋହଣ କରିଥିଲେ । ବାର୍ଦ୍ଧକ୍ୟ ଯୋଗୁ ସେ ଖୁବ୍ ଧୀରସ୍ଥିର ଥିଲେ ଏବଂ ଶାସନ କ୍ଷେତ୍ରରେ ତାଙ୍କର ସ୍ପୃହା ନ ଥିଲା । କାଫି ଖାଁଙ୍କ ମତରେ ସେ ରାଜ୍ୟ ରକ୍ଷା ପାଇଁ ଅବହେଳା ପ୍ରଦର୍ଶନ କରୁ-ଥିଲେ ଏବଂ ସେ କାହାରିକୁ ଅସନ୍ତୁଷ୍ଟ ନ କରିବା ପାଇଁ ସଦା ସର୍ବଦା ମିଳାମିଶା ନୀତି ଅବଲମ୍ବନ କରୁଥିଲେ । ଫଳରେ ରାଜଦରବାରରେ ନାନା ପ୍ରକାର ଚକ୍ରାନ୍ତର ସୂତ୍ରପାତ ହେଲା ଏବଂ ଏହାକୁ ନିଜର ଦୁର୍ବଳତା ଯୋଗୁ ଦମନ କରି ପାରିଲେ ନାହିଁ । ମରହଟ୍ଟା, ରାଜପୁତ୍, ଶିଖ୍ ଓ ଜାଠମାନଙ୍କ ପ୍ରତି, ଆଉରଙ୍ଗଜେବଙ୍କର କଠୋର ନୀତି ପରିବର୍ତ୍ତେ, ସେ କୋହଳ ନୀତି ପ୍ରୟୋଗ କରିଥିଲେ ମଧ୍ୟ ରାଜ୍ୟରେ ବିଦ୍ରୋହ, ଯୁଦ୍ଧ ଓ ଅଶାନ୍ତିର

ପରସମାପ୍ତି ହେଲା ନାହିଁ । ବରଂ ମୋଗଲ ସାମ୍ରାଜ୍ୟ ବିରୁଦ୍ଧରେ ସେମାନଙ୍କର ପ୍ରତିଶୋଧର ବହ୍ନି ଅଧିକ ପ୍ରଖର ହୋଇ ଉଠିଲା । ଏଣୁ ଶାସନ କ୍ଷେତ୍ରରେ ବେଶୀ ବିଶୃଙ୍ଖଳା ଦେଖାଗଲା । ସେ ୧୭୧୨ ଖ୍ରୀ: ଅ: ପର୍ଯ୍ୟନ୍ତ ଶାସନ କରିଥିଲେ ।

ତାଙ୍କ ପରେ ତାଙ୍କର ଅଯୋଗ୍ୟ ଦାୟାଦ ଜାହାନ୍ଦାର ସାହା ମୋଗଲ ସିଂହାସନ ଆରୋହଣ କରିଥିଲେ ଏବଂ ତାଙ୍କର ଦୁର୍ବଳତା ଯୋଗୁ ସେ କେବଳ ଏକ ବର୍ଷ ମାତ୍ର ରାଜତ୍ୱ କରିଥିଲେ । ତାଙ୍କ ପରେ ଫରୁକ୍‌ସିୟାର ୧୭୧୩ ଖ୍ରୀ: ଅ. ରେ ତିରିଶି ବର୍ଷ ବୟସରେ ମୋଗଲ ସିଂହାସନ ଆରୋହଣ କରିଥିଲେ । ସେ ମୋଗଲ ସାମ୍ରାଜ୍ୟର ଏହି ଗୁରୁଭାର ବହନ କରିବାକୁ ଅକ୍ଷମ ଥିଲେ । ତାଙ୍କ ପରେ ଯେତେ ଜଣ ମୋଗଲ ସିଂହାସନ ଅଳଙ୍କୃତ କରିଥିଲେ, ସେମାନଙ୍କ ମଧ୍ୟରୁ କେହି ହେଲେ ଜଣେ ସୁଦକ୍ଷ ଶାସନକର୍ତ୍ତା ନ ଥିଲେ ଏବଂ ମୋଗଲ ସାମ୍ରାଜ୍ୟ ଖୁବ୍ ଦ୍ରୁତ ଗତିରେ ଆଭ୍ୟନ୍ତରୀଣ ବିଦ୍ରୋହ ଓ ବିଦେଶୀମାନଙ୍କର ଘନ ଘନ ଆକ୍ରମଣ ଫଳରେ ଖଣ୍ଡ ଖଣ୍ଡ ହୋଇଗଲା । ମୋଗଲ ସାମ୍ରାଜ୍ୟର ଶେଷ ସମ୍ରାଟ ଥିଲେ ଦ୍ୱିତୀୟ ବାହାଦୁର ସାହା । ସେ ନାମକୁ ମାତ୍ର ମୋଗଲ ସମ୍ରାଟ ଥିଲେ ଏବଂ ୧୮୩୭ ଖ୍ରୀ: ଅ: ରୁ ୧୮୫୭ ଖ୍ରୀ: ଅ: ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । କିନ୍ତୁ ସେ ଏତେ ଦୁର୍ବଳ ଥିଲେ ଯେ ତତ୍କାଳୀନ ବିଦେଶୀମାନଙ୍କର ଆକ୍ରମଣ, ମୋଗଲ ଦରବାରର ଅନ୍ତର୍ବିବାଦ ଓ ଚକ୍ରାନ୍ତକୁ କୌଣସି ପ୍ରକାର ପ୍ରତିହତ କରିପାରିଲେ ନାହିଁ । ସେ ଏତେ ଦୁର୍ବଳ ଥିଲେ ଯେ ତାଙ୍କ ପରେ ମୋଗଲ ସାମ୍ରାଜ୍ୟର ଅସ୍ତିତ୍ୱ ଲୋପ ପାଇଲା ।

ଆଉରଙ୍ଗଜେବ ତାଙ୍କର ଦୀର୍ଘ ରାଜତ୍ୱକାଳ ମଧ୍ୟରେ ଯେଉଁ ପରିସ୍ଥିତି ସୃଷ୍ଟି କରିଥିଲେ ତାହା ଫଳରେ ତାଙ୍କ ରାଜତ୍ୱର ଅପରାହ୍ଣରେ ଏବଂ ପରେ ଭାରତରେ ଶାସନ ସଙ୍କଟ ଉପସ୍ଥିତ ହେଲା । ଏହି ପରିସ୍ଥିତିର ମୁକାବିଲା କରିବା ପାଇଁ ମୋଗଲ ରାଜବଂଶରେ ଉପଯୁକ୍ତ ଦାୟାଦର ଅଭାବ ଦେଖା ଯାଇଥିଲା । ଫଳରେ ଆଉରଙ୍ଗଜେବଙ୍କର ଶତ୍ରୁମାନେ ଏହାର ସୁଯୋଗ ନେଲେ ଏବଂ ରାଜ୍ୟର ଚାରିଆଡ଼େ ବିଦ୍ରୋହ ଓ ଅଶାନ୍ତିର ନିଆଁ ଜଳି ଉଠିଲା । ମୋଗଲ ଦରବାର ନାନା ପ୍ରକାର କୁତ୍ସିତ ଚକ୍ରାନ୍ତର ପୀଠସ୍ଥଳୀ ହେଲା । ଏହି ଅନ୍ତର୍ବିବାଦ ସହିତ ନାଦିର ସାହା ଏବଂ ୟୁରୋପୀୟ ପ୍ରଭୃତି ବୈଦେଶିକମାନଙ୍କର ଆକ୍ରମଣ ହେତୁ ମୋଗଲ ସାମ୍ରାଜ୍ୟ ଚିରଦିନ ପାଇଁ ଭାରତରୁ ଲୋପ ପାଇଲା ।



# ଦଶମ ଅଧ୍ୟାୟ

## ଆଉରଙ୍ଗଜେବଙ୍କ ଚରିତ୍ର

**କୂଟନୀତିଜ୍ଞ :**

ସାର୍ ଯଦୁନାଥ ସରକାରଙ୍କ ମତରେ ଆଉରଙ୍ଗଜେବଙ୍କର ଇତିହାସ ଭାରତର ଷାଠିଏ ବର୍ଷର ଇତିହାସ । ତାଙ୍କର ଅର୍ଦ୍ଧ ଶତାବ୍ଦୀ ବ୍ୟାପୀ ରାଜତ୍ୱ କାଳକୁ (୧୬୫୮ ଖ୍ରୀ: ଅ: ରୁ ୧୭୦୭ ଖ୍ରୀ: ଅ: ) ମୋଗଲ ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଯୁଗ ବୋଲି କୁହାଯାଏ । କାରଣ ରାଜ୍ୟବିସ୍ତାର, ମୁସଲମାନ ଧର୍ମର ଉନ୍ନତି ଓ ରାଜ୍ୟ ସଙ୍ଗଠନ ଦିଗରେ ସେ ଖୁବ୍ ନିଷ୍ଠାର ସହିତ କାର୍ଯ୍ୟ କରିଥିଲେ । ତାଙ୍କ ରାଜତ୍ୱ କାଳରେ ସେ ଯାହା କରିପାରିଥିଲେ, ତାଙ୍କର ପୂର୍ବପୁରୁଷମାନେ ତାହା କରି ପାରି ନ ଥିଲେ । ଉଦାହରଣ-ସ୍ୱରୂପ ତାଙ୍କ ପୂର୍ବପୁରୁଷମାନେ ବହୁ ଚେଷ୍ଟାକରି ଦାକ୍ଷିଣାତ୍ୟକୁ ମୋଗଲ ସାମ୍ରାଜ୍ୟଭୁକ୍ତ କରିପାରି ନ ଥିଲେ । କିନ୍ତୁ ବୀର ମରହଟ୍ଟାମାନଙ୍କର ପ୍ରବଳ ପ୍ରତିରୋଧ ସତ୍ତ୍ୱେ ସେ ନିଜର ଦକ୍ଷତା, ବୁଦ୍ଧି, କୌଶଳ ଓ କୂଟନୀତି ପ୍ରୟୋଗରେ ଦାକ୍ଷିଣାତ୍ୟକୁ ମୋଗଲ ସାମ୍ରାଜ୍ୟଭୁକ୍ତ କରିଥିଲେ । ଅବଶ୍ୟ ଏଥିପାଇଁ ତାଙ୍କୁ ବହୁ କଷ୍ଟ, ଦୁଃଖ ସ୍ୱୀକାର ଓ ଅର୍ଥବ୍ୟୟ କରିବାକୁ ପଡ଼ିଥିଲା । ସେହିପରି ରାଜପୁତ୍ମାନେ ସର୍ବ ପ୍ରଥମରୁ ମୋଗଲ ସାମ୍ରାଜ୍ୟର ମୂଳପିଣ୍ଡ ଥିଲେ । ସେମାନେ ଯୋଦ୍ଧା ଥିବାରୁ ସମ୍ରାଟ ଅକବର ସେମାନଙ୍କ ସହିତ ବୈବାହିକ ସମ୍ପର୍କ ସ୍ଥାପନ କରି ଭାରତରେ ମୋଗଲ ସାମ୍ରାଜ୍ୟ ଗଠନ କରିଥିଲେ । ସେହିସମୟରୁ ରାଜପୁତ୍-ମାନେ ମୋଗଲ ଶାସନ କ୍ଷେତ୍ରରେ ଉଚ୍ଚାସନ ଲାଭ କରି ମୋଗଲ ରାଜତ୍ୱରେ ଗୌରବମୟ ଅଧ୍ୟାୟ ଆରମ୍ଭ କରିଥିଲେ । କିନ୍ତୁ ଆଉରଙ୍ଗଜେବଙ୍କ ସମୟରେ ଏହି ରାଜପୁତ ନୀତିର ପରିବର୍ତ୍ତନ ହୋଇଥିଲା । ଯେ ପର୍ଯ୍ୟନ୍ତ ଜୟସିଂହ ଓ ଯଶୋବନ୍ତ ସିଂହ ଜୀବିତ ଥିଲେ, ସେ ପର୍ଯ୍ୟନ୍ତ ରାଜପୁତମାନଙ୍କୁ ସେ ପରାସ୍ତ କରି ପାରି ନ ଥିଲେ । କିନ୍ତୁ ସେମାନଙ୍କର ମୃତ୍ୟୁ ପରେ ସେ ରାଜପୁତମାନଙ୍କୁ ପରାସ୍ତ କରି ସେମାନଙ୍କର ରାଜ୍ୟ ମୋଗଲ ସାମ୍ରାଜ୍ୟ ସହିତ ମିଶାଇ ଦେଇଥିଲେ । ତାଙ୍କ ରାଜତ୍ୱରେ ମୋଗଲ ସାମ୍ରାଜ୍ୟର ସୀମା ବିରାଟ ଆକାର ଧାରଣ କରିବା ସଙ୍ଗେ ସଙ୍ଗେ ପ୍ରାୟ ସମଗ୍ର ଭାରତବର୍ଷ ଜଣେ ସାର୍ବଭୌମ ସମ୍ରାଟଙ୍କ ଅଧୀନରେ ଶାସିତ ହୋଇଥିଲା । ବ୍ରିଟିଶ ଯୁଗ ଭାରତରେ ଆରମ୍ଭ ହେବା ପୂର୍ବରୁ ଅତୀତରେ କୌଣସି ଶାସକ ଭାରତରେ ଏପରି ବିଶାଳ ସାମ୍ରାଜ୍ୟର ସମ୍ରାଟ ହୋଇ ପାରି ନ ଥିଲେ । ଏପରିକି ଆଉରଙ୍ଗଜେବଙ୍କର ସାମ୍ରାଜ୍ୟର ସୀମା ବିଖ୍ୟାତ ନରପତି ଅଶୋକ, ସମୁଦ୍ରଗୁପ୍ତ ତଥା ହର୍ଷବର୍ଦ୍ଧନଙ୍କ ସାମ୍ରାଜ୍ୟଠାରୁ ମଧ୍ୟ ବିଶାଳ ଥିଲା । ଗଜନୀଠାରୁ

ଚିଟାଗଙ୍ଗ ଓ କାଶ୍ମୀରଠାରୁ କର୍ଣ୍ଣାଟ ପର୍ଯ୍ୟନ୍ତ ବିରାଟ ଭୂଖଣ୍ଡର ସେ ପରାକ୍ରମୀ ମୋଗଲ ସମ୍ରାଟ ଥିଲେ ।

ଆଉରଙ୍ଗଜେବ ଜଣେ ଧାର୍ମିକ, ନୈଷ୍ଠିକ ଓ ନିରାଡ଼ମ୍ବର ପ୍ରକୃତିର ସମ୍ରାଟ ଥିଲେ । ବିଳାସ ଓ ଆମୋଦପ୍ରମୋଦଠାରୁ ସେ ବହୁ ଦୂରରେ ଥିଲେ । ତାଙ୍କ ଚରିତ୍ରର ଏହି ଆଭାସ ଶୈଶବାବସ୍ଥାରୁ ଜଣାପଡ଼ୁଥିଲା । ଯା' ହେଉ ସେ ମୋଗଲ ରାଜବଂଶର ଅତି ପ୍ରତିଭା-ଶାଳୀ ଏବଂ ଶ୍ରେଷ୍ଠ ସମ୍ରାଟ ବୋଲି ବିବେଚିତ ହୁଅନ୍ତି । ଏପରିକି ସମ୍ରାଟ ଶାଜାହାନ ତାଙ୍କର ପ୍ରତିଭା, ନିଷ୍ଠା, କର୍ମଶକ୍ତି, ସାହସିକତା, ରାଜନୀତି ଓ ସମରକୁଶଳ କୂଟନୀତିର ପରିଚୟ ପାଇଥିଲେ । ଉପରୋକ୍ତ ଗୁଣାବଳୀରେ ପରିପକ୍ୱ ଥିବାରୁ ଦାରା ସର୍ବଦା ତାଙ୍କୁ ଭୟ କରୁଥିଲେ ।

ପାର୍ଶୀ, ଆରବୀ ଓ ଉର୍ଦ୍ଦୁ ଭାଷାରେ ସେ ଖୁବ୍ ପାଣ୍ଡିତ୍ୟ ଲାଭ କରିଥିଲେ । ସମସ୍ତ କୋରାନକୁ ସେ ମୁଖସ୍ଥ କରି ଦେଇଥିଲେ ଏବଂ ନିଜେ କୋରାନ ଲେଖୁଥିଲେ । ମୁସଲମାନ ଆଇନର ବ୍ୟବହାର ସମ୍ପର୍କୀୟ ପୁସ୍ତକ ଫାତ-ଓ୍ୟା-ଇ-ଆଲମ୍‌ଗୀରକୁ ସେ ନିଜେ ସଙ୍କଳନ କରିଥିଲେ । ତାଙ୍କର ସ୍ମୃତିଶକ୍ତି ଅତ୍ୟନ୍ତ ପ୍ରଖର ଥିଲା । ସେ ଯାହାକୁ ଥରେ ଦେଖୁଥିଲେ ବା ଯାହାଠାରୁ ଥରେ କୌଣସି କଥା ଶୁଣୁଥିଲେ ତାହା ସେ ଭୁଲିଯାଉ ନ ଥିଲେ । ସୁନ୍ଦର ଲିଖନ କଳା (Calligraphy)ରେ ଖୁବ୍ ଅଭିଜ୍ଞ ଥିବାରୁ, ସେ ସିକସ୍ତା ଓ ନାସ୍ତାଲିକ୍ ନାମକ ପୁସ୍ତକମାନ ରଚନା କରିଥିଲେ ।

ତାଙ୍କର ବ୍ୟକ୍ତିଗତ ଜୀବନ ଖୁବ୍ ଆଦର୍ଶସ୍ଥାନୀୟ ଥିଲା । ବିଳାସବ୍ୟସନରେ ସେ ସମୟ କଟାଉ ନ ଥିଲେ । ଏପରି ନାଚ, ସଙ୍ଗୀତ ପ୍ରଭୃତିକୁ ସେ ବାତିଲ କରିଦେଇ ଅତି ସରଳ ଭାବରେ ଜୀବନନିର୍ବାହ କରୁଥିଲେ । ସେ ସ୍ୱଳ୍ପାହାରୀ ଥିଲେ, ମଦ ପିଉ ନ ଥିଲେ ଏବଂ ୨୪ ଘଣ୍ଟାରେ ମାତ୍ର ୩ ଘଣ୍ଟା ଶୋଉଥିଲେ । ନିଜର ପୋଷାକ ପରିଚ୍ଛଦରେ ବିଳାସିତା ନ ଥିଲା । ସୁନାଜରି ତିଆରି ପୋଷାକ ସେ ବ୍ୟବହାର କରୁ ନ ଥିଲେ ଏବଂ ଟୋପି ସିଲାଇ କରି ନିଜର ବ୍ୟକ୍ତିଗତ ଖର୍ଚ୍ଚ ତୁଲାଉଥିଲେ । କାରଣ ସେ ଜନ-ସାଧାରଣଙ୍କର ସମ୍ପଦକୁ ଅତି ପବିତ୍ର ବୋଲି ଭାବୁଥିଲେ । ଭୋଗ, ଲାଳସା ପ୍ରତି ସେ ଆଦୌ ଆକୃଷ୍ଟ ନ ଥିଲେ ।

ତାଙ୍କର ମାତ୍ର ତିନି ଜଣ ରାଣୀ ଥିଲେ । ଆଉରଙ୍ଗଜେବଙ୍କର ଚରିତ୍ରରେ ତାଙ୍କର ରାଣୀମାନେ କୌଣସି ପ୍ରକାର ପ୍ରଭାବବିସ୍ତାର କରି ନ ଥିଲେ । ତାଙ୍କର ପ୍ରଥମ ରାଣୀ ହେଉଛନ୍ତି ରାଜପୁତନାର ଏକ ରାଜକୁମାରୀ ଏବଂ ରାଜପୁତ୍ର ମୁହାମ୍ମଦ ଓ ମୁଅଜାମ ତାଙ୍କ ଗର୍ଭରୁ ଜନ୍ମ ହୋଇଥିଲେ । ତାଙ୍କର ଦ୍ୱିତୀୟ ରାଣୀ ଜଣେ ପାର୍ଶୀ ମହିଳା ଏବଂ ସେ ରାଜପୁତ୍ର ଆଜାମ୍ ଓ ଆକବରଙ୍କର ଜନ୍ମଦାତ୍ରୀ । ରାଜପୁତ୍ର କାମବକ୍‌ସଙ୍କର ମାତାଙ୍କ ନାମ ହେଉଛି

ଉଦୟପୁରୀ । ସେ ଜର୍ଜିଆର ଜଣେ ଖ୍ରୀଷ୍ଟିଆନ୍ ମହିଳା । ରାଜପୁତ୍ର ଦାରା ତାଙ୍କୁ କିଣିଆଣି ଥିଲେ । ଦାରାଙ୍କ ମୃତ୍ୟୁ ପରେ ଉଦୟପୁରୀ ମୋଗଲ ଅନ୍ତଃପୁରରେ ରହିଥିଲେ ।

## ନିର୍ଭୀକ ସୈନିକ :

ଯୁବକ ସମୟରେ ସେ ଜଣେ ସୁଦକ୍ଷ ସୈନିକର ପରିଚୟ ଦେଇ ପାରିଥିଲେ ଏବଂ ସମ୍ରାଟ ବାବର ଓ ଅକବରଙ୍କ ମଧ୍ୟ ଏ କ୍ଷେତ୍ରରେ ଟପି ଯାଇଥିଲେ । ଯୁଦ୍ଧକ୍ଷେତ୍ରରେ ଶତ୍ରୁ-ମାନଙ୍କର ବ୍ୟୂହ ମଧ୍ୟରେ ରହି ମଧ୍ୟ, ହତୋତ୍ସାହ ନ ହୋଇ ଇସଲାମ ଧର୍ମ ଉପରେ ଦୃଢ଼ ଆସ୍ଥା ଓ ବିଶ୍ୱାସ ରଖି ଅତି ସାହସର ସହିତ ସେ ଶତ୍ରୁମାନଙ୍କର ମୁକାବିଲା କରୁଥିଲେ । ତାଙ୍କର ଏହିଗୁଣ ତାଙ୍କର ସହକର୍ମୀ ଯୋଦ୍ଧା ଓ ସେନାଧକ୍ଷମାନଙ୍କୁ ମୁଗ୍ଧ କରି ଦେଉଥିଲା । ଏହା ବ୍ୟତୀତ ସେ କୂଟନୀତି ଓ ରାଜକାର୍ଯ୍ୟରେ ଖୁବ୍ ନିପୁଣ ଥିଲେ । ଏଣୁ ଅଭିଜ୍ଞ ମନ୍ତ୍ରୀ ଓ ରାଜକର୍ମଚାରୀମାନେ ମଧ୍ୟ ତାଙ୍କୁ ଭୟ କରୁଥିଲେ ଏବଂ ସମ୍ମାନ ଦେଖାଉଥିଲେ । ରାଜ-ନୀତିରେ ସେ ବଦାନ୍ୟତା ଦେଖାଉ ନ ଥିଲେ କିମ୍ବା ସର୍ବଦା ନିର୍ମଳ ଓ ସରଳ ନ ଥିଲେ । ନିଜର ଅଭିଳାଷ ପୂରଣ ପାଇଁ ସେ କୂଟନୀତିର ଆଶ୍ରୟ ନେଉଥିଲେ ଏବଂ ଏଥିପାଇଁ ସମସ୍ତ ସମୟରେ ତାଙ୍କୁ ନୀଚମନା ହେବାକୁ ପଡ଼ୁଥିଲା ।

ସେ ଧୈର୍ଯ୍ୟର ପ୍ରତୀକ ଥିଲେ ବୋଲି କହିଲେ ଅଯୁକ୍ତ ହେବନାହିଁ । ସମ୍ରାଟ ହୋଇ ମଧ୍ୟ ସେ ଧୈର୍ଯ୍ୟର ସହିତ ଦରକାରୀ ତଥା ଅଦରକାରୀ ସମସ୍ତ ଆପତ୍ତିମାନ ପ୍ରଜାମାନଙ୍କ-ଠାରୁ ଶୁଣି ଠିକ୍ ଠିକ୍ ଭାବରେ ତାହାର ବିଚାର କରୁଥିଲେ । ବିଚାର କ୍ଷେତ୍ରରେ ସମସ୍ତଙ୍କୁ ସେ ସମାନ ଚକ୍ଷୁରେ ଦେଖୁଥିଲେ । ସେ କ୍ଷେତ୍ରରେ ଧନୀ ବା ଦରିଦ୍ରର ପାର୍ଥକ୍ୟ ରହୁ ନ ଥିଲା ।

ଆଉରଙ୍ଗଜେବ ବଡ଼ ସନ୍ଦେହ ପ୍ରକୃତିର ଲୋକଥିଲେ । କର୍ମଚାରୀମାନଙ୍କୁ ସେ ଆଦୌ ବିଶ୍ୱାସ କରୁ ନ ଥିଲେ । ଅଧସ୍ତନ କର୍ମଚାରୀମାନଙ୍କ କାର୍ଯ୍ୟରେ ସର୍ବଦା ହସ୍ତକ୍ଷେପ କରି ସବୁ ବିଷୟ ସେ ନିଜେ ଜାଣିବାକୁ ଚେଷ୍ଟା କରୁଥିଲେ । ଏହାଫଳରେ କର୍ମଚାରୀ-ମାନେ ରାଜକାର୍ଯ୍ୟରେ ସମସ୍ତ ପ୍ରକାର ଦାୟିତ୍ୱ ଓ ସ୍ପୃହା ହରାଇ ବସିଲେ । ପାରିବାରିକ ସ୍ନେହଶ୍ରଦ୍ଧା ତାଙ୍କଠାରେ ଦେଖିବାକୁ ମିଳୁ ନ ଥିଲା । ନିଜର ଅଭୀଷ୍ଟ ସିଦ୍ଧ କରିବା ପାଇଁ ସେ ନିଜର ପିତାଙ୍କୁ ମଧ୍ୟ ବନ୍ଦୀ କରିଥିଲେ ଏବଂ ଭାଇମାନଙ୍କୁ ହତ୍ୟା କରିଥିଲେ । ଏପରିକି ନିଜ ଔରସରୁ ଜାତ ପୁତ୍ରମାନଙ୍କୁ ମଧ୍ୟ ସେ ସର୍ବଦା ସନ୍ଦେହ କରୁଥିଲେ । ରାଜପୁତ୍ର ଆକବର ତାଙ୍କ ବିରୁଦ୍ଧରେ ବିଦ୍ରୋହ ଘୋଷଣା କରିବାରୁ ସେ ତାଙ୍କୁ ଭାରତରୁ ତଡ଼ି ଦେଇଥିଲେ । ଆକବର ପାରସ୍ୟକୁ ପଳାଇ ଯାଇଥିଲେ । ଜ୍ୟେଷ୍ଠ ପୁତ୍ର ସୁଲତାନ, ସୁଜାଙ୍କ ପ୍ରତି ଦୟାପରବଶ ହେବାରୁ ଏବଂ ତାଙ୍କର (ସୁଜାଙ୍କ) ଝିଅକୁ ବିବାହ କରିବାରୁ, ଆଉରଙ୍ଗଜେବ ତାଙ୍କୁ ବନ୍ଦୀଭାବରେ ଅଠର ବର୍ଷ ପର୍ଯ୍ୟନ୍ତ କାରାଗାରରେ ରଖିଥିଲେ ।

ରାଜପୁତ୍ର ମୁଆଜାମ, ଗୋଲକୁଣ୍ଡା ଓ ବିଜାପୁର ଶାସକମାନଙ୍କ ପ୍ରତି ଅନୁକମ୍ପା ଦେଖାଇବାରୁ ଆଉରଙ୍ଗଜେବ ତାଙ୍କୁ ୧୬୮୭ ଖ୍ରୀ: ଅ: ରେ ବନ୍ଦୀ କରିଥିଲେ । କିନ୍ତୁ ୧୬୯୫ ଖ୍ରୀ: ଅ: ରେ ତାଙ୍କୁ ମୁକ୍ତ ଦିଆଗଲା । ଅତି ପ୍ରିୟ କନିଷ୍ଠ ପୁତ୍ର କାମବକ୍ସଙ୍କୁ ମଧ୍ଯ ଜିଞ୍ଜି ଦୁର୍ଗ ଅବରୋଧ ସମୟରେ ସନ୍ଦେହ କରି ସେ ତାଙ୍କୁ ବନ୍ଦୀ କରିଥିଲେ । ଏଣୁ ସେ ପୁତ୍ରମାନଙ୍କୁ ସର୍ବଦା ଦୂରରେ ରଖି ତାଙ୍କ ଉପରେ ସର୍ବଦା କଡ଼ା ଦୃଷ୍ଟି ରଖୁଥିଲେ । ନିଜର କନ୍ୟା କବି ଜେବୁନ୍ନିସା ରାଜପୁତ୍ର ଆକବରଙ୍କ ପ୍ରତି ଅନ୍ତରଙ୍ଗତା ଦେଖାଇଥିବାରୁ, ଆଉରଙ୍ଗଜେବ ତାଙ୍କୁ ସାଲିମଗଡ଼ ଦୁର୍ଗରେ ବନ୍ଦୀ କରି କାରାଗାରରେ ରଖିଥିଲେ ।

**ଧର୍ମନିଷ୍ଠା :**

ମୋଗଲବଂଶରେ ଆଉରଙ୍ଗଜେବ ସର୍ବାପେକ୍ଷା ନୈଷ୍ଠିକ ମୁସଲମାନ ଥିଲେ । ସେ ମୁଖ୍ୟତଃ ଧର୍ମକୁ ଭିତ୍ତିକରି ଶାସନ ପରିଚାଳନା କରୁଥିଲେ । ପ୍ରାର୍ଥନା, ଉପବାସ, ହଜ୍, ଜକାତ୍ ଓ ତାଉହିଦ୍—ଏହି ପାଞ୍ଚୋଟି ବିଷୟରେ କେବେହେଲେ ସେ ଅବହେଳା କରୁ ନ ଥିଲେ । ରମଜାନ୍ ମାସ ସାରା ସେ ଉପବାସରେ କଟାଉଥିଲେ ଏବଂ ସେହି ମାସର ଶେଷ ଦଶ ଦିନ ସଦା ସର୍ବଦା ମସଜିଦ୍‌ରେ ରହି ଈଶ୍ୱରଙ୍କୁ ପ୍ରାର୍ଥନା କରୁଥିଲେ । ସେ ହଜ୍‌ରେ ଯିବା ପାଇଁ ଇଚ୍ଛା କରିଥିଲେ ମଧ୍ଯ ଶାସନଗତ ଅସୁବିଧା ଯୋଗୁ ଯାଇପାରି ନ ଥିଲେ । ଯେଉଁମାନେ ହଜ୍ ଯାତ୍ରା କରୁଥିଲେ, ସେମାନଙ୍କୁ ସେ ଅର୍ଥ ସାହାଯ୍ୟ ଦେଉଥିଲେ ଏବଂ ମକ୍‌କାକୁ ଅତି ମୂଲ୍ୟବାନ ପଦାର୍ଥମାନ ଦାନ କରୁଥିଲେ ।

ଧର୍ମକୁ ଭିତ୍ତିକରି ଶାସନ ପରିଚାଳନା କରୁଥିବାରୁ ତାଙ୍କୁ ବହୁ ସମୟରେ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଅତିରିକ୍ତ କେନ୍ଦ୍ରୀଭୂତ ଶାସନ, ଗୋଇନ୍ଦା ବ୍ୟବସ୍ଥା ଏବଂ କର୍କଶ ଦମନନୀତି ଯୋଗୁ ସେ ନିଜର ବହୁ ଶତ୍ରୁ ସୃଷ୍ଟି କରିଥିଲେ । ସେ ଅତିଶୟ ନିଷ୍ଠୁର ଥିବାରୁ ମନୁଷ୍ୟତା ତାଙ୍କଠାରେ ଆଦୌ ନ ଥିଲା । ଶାସନୋଚିତ କ୍ଷମା, ଦୟା ଓ ସାର୍ବଭୌମ ଗୁଣ ତାଙ୍କଠାରେ ନ ଥିଲା । ଏଣୁ ସେ ଖୁବ୍ ଶୀଘ୍ର ସମସ୍ତଙ୍କ ନିକଟରେ ଅପ୍ରିୟ ହୋଇ ପଡ଼ିଲେ । ସେ ଅଣମୁସଲମାନଙ୍କ ପ୍ରତି ଅତି ନିର୍ଦ୍ଦୟ ଓ କଠୋର ହୋଇ ପଡ଼ିବାରୁ ତାଙ୍କୁ ବହୁ ଦୁଃଖ, ନିର୍ଯ୍ୟାତନା ଓ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଗୋଟିଏ ମୁସଲମାନ ରାଷ୍ଟ୍ରର ସେ ଯଦି ସମ୍ରାଟ ହୋଇଥାନ୍ତେ ତାହାହେଲେ ସେ ଜଣେ ଅତି ଉଚ୍ଚକୋଟୀର ଆଦର୍ଶ ସମ୍ରାଟ ହୋଇ ପାରିଥାନ୍ତେ । କିନ୍ତୁ ହିନ୍ଦୁବହୁଳ ଭାରତରେ ତାହା ସମ୍ଭବ ହୋଇ ପାରିଲା ନାହିଁ । ସାମରିକ କ୍ଷେତ୍ରରେ ସେ ଜଣେ ସୁଦକ୍ଷ ତଥା ଅଭିଜ୍ଞ ସେନାଧ୍ୟକ୍ଷ ଥିଲେ ସୁଦ୍ଧା, ସିଂହାସନ ଆରୋହଣ ପରେ ଶାସନ ପରିଚାଳନାରେ ଜଣେ ଅଭିଜ୍ଞ ସେନାପତି ଭାବେ କାର୍ଯ୍ୟ କରିପାରିଲେ ନାହିଁ । ତଥାପି ମୁସଲମାନ ଧର୍ମର ଜଣେ ଅତି ସମ୍ମାନୀୟ ଆଦର୍ଶ ସମ୍ରାଟ ଭାବରେ ସେ ବିବେଚିତ ହୁଅନ୍ତି । କାରଣ ସେ

କୋରାନରେ ଥିବା ନୀତିଗୁଡ଼ିକୁ ଶାସନ କ୍ଷେତ୍ରରେ ଯଥାସମ୍ଭବ ପ୍ରୟୋଗ କରୁଥିଲେ ଏବଂ ହିନ୍ଦୁବହୁଳ ଭାରତକୁ ଏକ ମୁସଲମାନ ରାଷ୍ଟ୍ରରେ ପରିଣତ କରିବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ଏଣୁ ସେ ମୁସଲମାନମାନଙ୍କ ମଧ୍ୟରେ ଜଣେ ଆଦର୍ଶ ସମ୍ରାଟ ଥିଲେ ବୋଲି କୁହାଯାଇପାରେ । ତାଙ୍କର ପୂର୍ବପୁରୁଷମାନେ ରାଜ୍ୟ ଶାସନରେ କୋରାନର ନୀତି ଅନୁସରଣ ନ କରି, ଭାରତରେ ଏକ ଧର୍ମନିରପେକ୍ଷ ଶାସନ ପ୍ରଚଳନ କରିଥିବାରୁ ସେମାନେ ଏକ ମସ୍ତବଡ଼ ଭୁଲ୍ କରିଥିଲେ ବୋଲି ସେ ଭାବୁଥିଲେ । ସମ୍ରାଟ ଆକବର ମୁସଲମାନ ଧର୍ମନୀତିକୁ ଶାସନ କ୍ଷେତ୍ରରେ ପ୍ରୟୋଗ ନ କରି, ହିନ୍ଦୁ ନୀତିରେ ଶାସନ ପରିଚାଳନା କରୁଥିଲେ । ଆଓରଙ୍ଗଜେବ କିନ୍ତୁ ତାଙ୍କ ରାଜତ୍ୱର ପ୍ରଥମରୁ ଭାରତରେ ନୈଷ୍ଠିକ ସୁନ୍ନୀ ଧର୍ମ ସ୍ଥାପନ ପାଇଁ ସମସ୍ତ ପ୍ରକାର ପଦକ୍ଷେପ ନେଇଥିଲେ । ସେ ମୁସଲମାନ ଧର୍ମକୁ ରାଜ୍ୟର ଏକମାତ୍ର ଧର୍ମ ବୋଲି ଘୋଷଣା କରି ଏବଂ ଏହି ଧର୍ମକୁ ପ୍ରସାରିତ ତଥା ଶକ୍ତିଶାଳୀ କରିବା ପାଇଁ ସାମ୍ରାଜ୍ୟର ସମସ୍ତ ସମ୍ପଦ ଏବଂ ଶକ୍ତି ନିୟୋଜିତ କରିଥିଲେ । ଏକେଶ୍ୱରବାଦ ସପକ୍ଷରେ ଧର୍ମ ଯୁଦ୍ଧ କରି ଭାରତକୁ ଏକ ମୁସଲମାନ ରାଷ୍ଟ୍ରରେ ପରିଣତ କରିବା ତାଙ୍କ ଜୀବନର ଏକ ପରମ ଲକ୍ଷ୍ୟ ଥିଲା । ଏଣୁ ମୁସଲମାନମାନେ ତାଙ୍କୁ ଆଲମଗୀର ବା ଜିନ୍ଦାପୀର ବୋଲି କହୁଥିଲେ । ଅନ୍ୟ ମୋଗଲ ସମ୍ରାଟମାନଙ୍କ ପରି ସେ ରାଜ୍ୟର ସଙ୍ଗୀତ, କଳା, ସ୍ଥାପତ୍ୟ ପ୍ରତି କୌଣସି ସ୍ପୃହା ଦେଖାଇ ନ ଥିଲେ । ଧାର୍ମିକ ଭାବରେ ମୁସଲମାନମାନଙ୍କ ମଧ୍ୟରେ ସେ ଖୁବ୍ ଲୋକପ୍ରିୟ ଥିଲେ ମଧ୍ୟ, ରାଜନୀତିରେ ସେ ହାରି ଯାଇଥିଲେ । ଜୀବନରେ ତାଙ୍କୁ ବହୁ ସମସ୍ୟାର ମୁକାବିଲା କରିବାକୁ ପଡ଼ିଥିଲା । ତାଙ୍କର ବ୍ୟକ୍ତିଗତ ଚରିତ୍ର ହିଁ ମୋଗଲ ସାମ୍ରାଜ୍ୟର ପତନ ପାଇଁ କେତେକାଂଶରେ ଦାୟୀ କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । କାରଣ ତାଙ୍କର ବ୍ୟକ୍ତିଗତ ଚରିତ୍ର ଯୋଗୁ ହିଁ ମୋଗଲସାମ୍ରାଜ୍ୟର ଶତ୍ରୁମାନେ ଅତିଶୟ ପ୍ରବଳ ହୋଇ ଉଠିଥିଲେ ଏବଂ ଶାସନ କ୍ଷେତ୍ରରେ ଶୃଙ୍ଖଳାର ଅଭାବ ଦେଖାଗଲା । ତାଙ୍କ ରାଜତ୍ୱର ଶେଷ ଆଡ଼କୁ ଶାସନ କ୍ଷେତ୍ରରେ ମଧ୍ୟ ଆଭ୍ୟନ୍ତରୀଣ ଶିଥିଳତା ଆସି ଯାଇଥିଲା ଏବଂ ମୃତ୍ୟୁ ପରେ ପରେ ମୋଗଲ ସାମ୍ରାଜ୍ୟର ପତନ ଘଟିଥିଲା ।

